# ଜୀବନର ମୂଲ୍ୟ ଓ ମୂଲ୍ୟବୋଧ

ଲେଖକ
ଡକ୍ଟର ଶରତ ଚନ୍ଦ୍ର ରଥ
ଏମ୍.ଏ, ଏମ୍.ଫିଲ, ପିଏଚ.ଡି

ପ୍ରକାଶକ
କାବ୍ୟଲୋକ
୨୯୭୪-ଗ୍ୟାରେଜ ଛକ
ଲୁଇସ୍‌ରୋଡ୍, ଭୁବନେଶ୍ୱର-୨
ନିଜିଗଡ଼ କୁରୁଣ୍ଡି, ହରିରାଜପୁର
ଜଟଣୀ, ପୁରୀ-୭୫୨୦୫୦
ମୋ:- ୯୪୩୭୨୮୩୯୦୭

ପ୍ରଥମ ପ୍ରକାଶନ- ୨୦୧୯

ମୂଲ୍ୟ-୨୫୦/-



---

**Jeebanara Mulya O Mulyabodha**

by
**Dr.Sarat Chandra Rath**
**M.A, M.Phil, Ph.D**
**Mob.: 9437756240**

Publisher
**Kavyaloka**

1st Edition-2019

Cover : Internet



**Price-Rs. 250/-**

ISBN 978-81-944198-5-3

ପରମାରାଧ୍ୟ ଶ୍ରୀମାଶ୍ରୀଅରବିନ୍ଦଙ୍କୁ ସମର୍ପିତ
ଏହି ପୁସ୍ତକଟିକୁ ମୋର ନନା
ଶ୍ରୀଯୁକ୍ତ ନୀଳାଦ୍ରି ବିହାରୀ ରଥ ଓ
ବୋଉ ଶ୍ରୀମତୀ ମନୋରମା ରଥଙ୍କୁ
ଅର୍ପଣ କରୁଛି...

-ସ୍ନେହର ଶରତ

# ଆଗରୁ ପଦେ...

ମନେପଡ଼େ ମାକସିମ୍‌ଗର୍କୀଙ୍କ କଥା ଯିଏ କହିଥିଲେ ଯେ ମଣିଷ ଉଡ଼ିପାରୁଛି ପକ୍ଷୀପରି ଆକାଶରେ, ବୁଡ଼ିପାରୁଛି ମାଛପରି ଜଳରେ ମାତ୍ର ମାଟିରେ କିପରି ରହିବାକୁ ହୁଏ ଶିଖିପାରିନି । ଏକଥା କହିବାର ଅର୍ଥ ଘରେ ବାହାରେ କିପରି ଚଳିବାକୁ ହୁଏ ମଣିଷ ଶିଖିପାରିନି । ପରିବାରରେ ପୁଣି ସମାଜରେ କିପରି ଚଳିବାକୁ ହୁଏ ସେ ଶିଖି ପାରିନି । ତେଣୁ ଚଳିବା କ୍ଷେତ୍ରରେ ଅଧିକାଂଶ ସମୟରେ ସମସ୍ୟାମାନ ଉପୁଜୁଛି । ଖାଲି ଉପୁଜୁନାହିଁ ଜଟିଳରୁ ଜଟିଳତର ହୋଇଯାଉଛି । ତାକୁ ସମାଧାନ କରିବା କଷ୍ଟସାଧ୍ୟ ହୋଇପଡୁଛି । ସେତେବେଳେ ବ୍ୟସ୍ତ ଲାଗୁଛି । ମନେପଡୁଛି ପ୍ରତିଷେଧକ କିଛି ଗ୍ରହଣ କରିଥିଲେ ହୁଏତ ଏତେ ଅସୁବିଧା ହୋଇନଥାନ୍ତା । ସମସ୍ୟା ରୂପକ ଅସୁସ୍ଥତାର ପ୍ରତିରୋଧ ନିମନ୍ତେ ବୋଧହୁଏ ପ୍ରତିଷେଧକର ଅଭାବ ହେଲା ଯାହା ଫଳରେ କି ଅସୁସ୍ଥତା ଜଟିଳ ଆକାର ଧାରଣ କଲା ।

ସେହି ଅଭାବକୁ କେତେକାଂଶରେ ପୂରଣ କରିବା ଏହି ପୁସ୍ତକର ଲକ୍ଷ୍ୟ । ବିଦ୍ୟାଳୟ, ମହାବିଦ୍ୟାଳୟ ପୁଣି ବିଶ୍ୱବିଦ୍ୟାଳୟ ପାଠ୍ୟଖସଡ଼ାରୁ ଯାହା ମିଳିବ ନାହିଁ, ତାହା ଏହି ପୁସ୍ତକରୁ ମିଳିପାରିବ । ତାହା ହେଉଛି ବଞ୍ଚିବାର କଳାର ପାଠ । ବ୍ୟକ୍ତିଗତ ଜୀବନରେ, ସାମାଜିକ ଜୀବନରେ, ରାଷ୍ଟ୍ରୀୟ ଜୀବନରେ କିପରି ଚଳିବା, ବିଭିନ୍ନ ସମସ୍ୟାରୁ ମୁକ୍ତି ପାଇବାର ମାର୍ଗ ଦର୍ଶନ ସହିତ ଆତ୍ମଶକ୍ତି ପ୍ରାପ୍ତିର ମାର୍ଗ ନିରୂପଣ ପର୍ଯ୍ୟନ୍ତ ଏଥିରେ ଉପସ୍ଥାପିତ । ପ୍ରାୟ ପ୍ରତ୍ୟେକ ଲେଖା ଜୀବନ, ସମାଜ ଓ ଜଗତକୁ କେନ୍ଦ୍ର କରି ରଚିତ । ସରଳ ଶବ୍ଦରେ ଗଭୀର ଭାବସହ ଅନୁଭବର କଥାମାନ ଏଥିରେ ସଂଯୋଜିତ । ଗୁରୁପରି ଉପଦେଶ, ବନ୍ଧୁପରି ସହଗମନ, ମାଆ ପରି ଆଦର ଯତ୍ନର କଥା ଏଥିରେ ସୁଲଭ । ମୋର ଏହିପର ଜୀବନଧର୍ମୀ ଅନ୍ୟ ଏକ ପୁସ୍ତକ ଏହା ପୂର୍ବରୁ ପ୍ରକାଶିତ । ତାହାର ନାମ ହେଉଛି 'ବଞ୍ଚିବାର କଳା' ଯାହା ଅଗ୍ରଦୂତ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ ହୋଇ ଆଦୃତ ହୋଇଛି ।

ବର୍ତ୍ତମାନର ଉକ୍ତ ପୁସ୍ତକଟିର ନାମ ରହିଛି 'ଜୀବନର ମୂଲ୍ୟ ଓ ମୂଲ୍ୟବୋଧ' । ଏଥିରେ ସ୍ଥାନିତ ପ୍ରାୟ ପ୍ରତ୍ୟେକ ରଚନା ବିଭିନ୍ନ ଦୈନିକ ସମ୍ବାଦପତ୍ରରେ ପୂର୍ବରୁ ପ୍ରକାଶିତ ହୋଇଛି । ସେହି ସମ୍ବାଦପତ୍ର ହେଉଛି ଦୈନିକ 'ସମାଜ', ଦୈନିକ ଧରିତ୍ରୀ ଓ ଦୈନିକ 'ପ୍ରମେୟ' । ଏହି ଅବକାଶରେ ଏହି ସମ୍ବାଦପତ୍ରର ସଂପାଦକ, ସହସଂପାଦକମାନଙ୍କୁ ମୋର ସାଧୁବାଦ ଜଣାଇବା ସହିତ କୃତଜ୍ଞତା ଜଣାଉଛି । ଲେଖାଟିଏ ପ୍ରକାଶ ପାଇଲେ ଫୋନ୍ ମାଧ୍ୟମରେ ଶୁଭେଚ୍ଛା ଓ ପ୍ରେରଣା ଯେଉଁମାନଙ୍କଠାରୁ ମିଳେ, ସେହି ପାଠକମାନଙ୍କୁ ମୋର ଅସୀମ କୃତଜ୍ଞତା ।

ପୁସ୍ତକଟିର ପ୍ରକାଶନ କାର୍ଯ୍ୟରେ ସହଯୋଗ କରିଥିବାରୁ କବି ସାହିତ୍ୟିକ ପ୍ରକାଶକ ବନ୍ଧୁ ଭିକାରୀ ଧଳଙ୍କୁ ଏହି ଅବକାଶରେ ସାଧୁବାଦ ଜଣାଉଛି । ମୋର ବଡ଼ଭାଇ ଶ୍ରୀ ସଚ୍ଚିଦାନନ୍ଦ ରଥଙ୍କ ପ୍ରେରଣା ନିମନ୍ତେ ଏହି ଅବକାଶରେ ତାଙ୍କୁ କୃତଜ୍ଞତା ଜଣାଉଛି । ମୋର ସାନଭାଇ କୌଶଲ୍ୟାଗଙ୍ଗସ୍ଥିତ ମଧୁର ଜଳଜୀବ ଗବେଷଣା ସଂସ୍ଥାନର ବରିଷ୍ଠ ବୈଜ୍ଞାନିକ ଡକ୍ଟର ସୁରେଶ ଚନ୍ଦ୍ର ରଥ ଏବଂ ମୋର ସବା ସାନଭାଇ ପଣ୍ଡିଚେରୀ ସ୍ଥିତ ଶ୍ରୀଅରବିନ୍ଦ ଆଶ୍ରମର ଅନ୍ତେବାସୀ ବିଶିଷ୍ଟ ସାଧକ ସନ୍ତୋଷ କୁମାର ରଥଙ୍କୁ ପ୍ରେରଣା ନିମନ୍ତେ ସାଧୁବାଦ ଜଣାଉଛି ।

ପୁସ୍ତକଟି ସବୁବର୍ଗର ପାଠକଙ୍କ ନିମନ୍ତେ ଉପଯୋଗୀ ହେବ ବୋଲି ବିଶ୍ୱାସ ରହିଛି । ପୁସ୍ତକଟିର ରୂପାୟନ କ୍ଷେତ୍ରରେ ସହଯୋଗ ନିମନ୍ତେ ମୋର ସହଧର୍ମିଣୀ ଶ୍ରୀମତୀ କନକଲତା ତ୍ରିପାଠୀଙ୍କୁ ଧନ୍ୟବାଦ ଜଣାଉଛି ।

ବାହାର ଜୀବନ ସହିତ ଭିତର ଜୀବନର ସମନ୍ୱୟ, ମୂଲ୍ୟ ଓ ମୂଲ୍ୟବୋଧର ସମନ୍ୱୟ, ବୁଦ୍ଧି ଓ ହୃଦୟର ସମନ୍ୱୟ, ବସ୍ତୁ ଓ ଚେତନାର ସମନ୍ୱୟର କଥା ଉପରେ ଉକ୍ତ ପୁସ୍ତକରେ ଗୁରୁତ୍ୱ ଆରୋପିତ ହୋଇଛି । ମତେ ଉକ୍ତ ପୁସ୍ତକ ନିମିତ୍ତ ଯଥାଯଥ ଲେଖକୀୟ ସମ୍ମାନ ମିଳୁ କି ନ ମିଳୁ, ପାଠକୀୟ ଶ୍ରଦ୍ଧା ମିଳିଲେ ଶ୍ରମ ସାର୍ଥକ ହେବ ।

– **ଶରତ ଚନ୍ଦ୍ର ରଥ**

# ବିଷୟକ୍ରମ...

# ଚିନ୍ତାମୁକ୍ତ ହେବା କିପରି ?

ରାତି ଅଧରେ ନିଦ ଭାଙ୍ଗିଗଲେ କାହୁଁ କେତେ ଚିନ୍ତା ଧସେଇ ପଶିଆସନ୍ତି । ମୁଣ୍ଡ ଭିତରେ ଏମିତି କୋଳାହଳ ସୃଷ୍ଟି କରନ୍ତି ଯେ, ସେ କୋଳାହଳରେ ମୁଣ୍ଡ ଓ ମନ ଭାରି ହୋଇଯାଏ । ଦୁଶ୍ଚିନ୍ତାର ଅଡୁଆ ସୂତାକୁ ଏପଟୁ ଫିଟାଇଲେ ତାହା ସେ ପାଖରୁ ଗଣ୍ଠି ପଡ଼ିଯାଏ । ସେପଟୁ ଫିଟାଇଲେ ତାହା ଏପଟୁ ଗଣ୍ଠି ପଡ଼ିଯାଏ । ଗଣ୍ଠିପରେ ଗଣ୍ଠି ପଡ଼ିଯାଉଥାଏ, ଚାହିଁଚାହିଁ ବେଳଯାଏ, କାଉରାବେ, ମେଲା ଆଖିରେ ରାତିପାହେ । ଦିନସାରା କ'ଣ ନା କ'ଣ କାର୍ଯ୍ୟରେ ସମୟ ଯାଏ ଆଉ ରାତିରେ ସବୁଯାକ ଚିନ୍ତା କାହୁଁ କାହୁଁ ମାଡ଼ି ଆସେ ।

କଥାଟିକୁ ଟିକିଏ ତଳେଇ ଦେଖିବା । ସୂତାରେ ଗଣ୍ଠି ପଡ଼ିଗଲେ ତାହା ଆଉ ସରଳ ହୋଇ ରହେ ନାହିଁ, ଜଟିଳ ହୋଇଯାଏ । ଘଟଣା ଟିକିଏ ଅସଜଡ଼ା ହୋଇଗଲେ ଜଟିଳତା ଆସେ । ତେବେ ଅନ୍ତଃଦ୍ୱନ୍ଦ୍ୱର ଆକ୍ରମଣ ଅଧିକ କଷ୍ଟଦାୟକ ହୋଇଥାଏ । ସେତେବେଳେ ମାନସିକତାରେ ଆଗକୁ ଯାଇ ହୁଏ ନାହିଁ କିମ୍ବା ପଛକୁ ଫେରିହୁଏ ନାହିଁ । ନିଜର ସ୍ଥିତିରେ ସ୍ୱାଭାବିକ ଭାବରେ ମଧ୍ୟ ରହିହୁଏ ନାହିଁ । ଖାଣ୍ଟି ଓଡ଼ିଆରେ ଯାହାକୁ କୁହାଯାଏ "ଗାଈକି ମାଇଲେ ମଲି, ଗାଈ ମାଇଲେ ମଲି" । ସେପରି ଅବସ୍ଥାରେ ପଡ଼ିଲେ ମାନସିକ ଯନ୍ତ୍ରଣା ବଢ଼ିବଢ଼ି ଚାଲେ, କମେ ନାହିଁ । ଏ ଯନ୍ତ୍ରଣା ମନକୁ ଆକ୍ରାନ୍ତ କରି ବିବ୍ରତ କରେ, ମନ ବାଟ ଦେଇ ଶରୀରକୁ ଆକ୍ରାନ୍ତ କରି ରୋଗଗ୍ରସ୍ତ କରେ । ଅତ୍ୟଧିକ ଚିନ୍ତାଫଳରେ ରକ୍ତଚାପ ବଢ଼େ ଏବଂ ଅସୁସ୍ଥତା ଦେଖାଦିଏ । ରକ୍ତରେ ଶର୍କରା ଅଂଶ ବଢ଼ିବାର କେତେ କାରଣ ଭିତରୁ ଦୁଶ୍ଚିନ୍ତା ଗୋଟିଏ ବଡ଼ କାରଣ ବୋଲି ଜଣାଯାଏ ।

ଡାକ୍ତରୀ ପରୀକ୍ଷାର ରିପୋର୍ଟ ଅନୁସାରେ ପୃଥିବୀରେ ଭାରତବର୍ଷରେ ଉଚ୍ଚରକ୍ତଚାପ ଓ ରକ୍ତ ଶର୍କରାର ପ୍ରାଦୁର୍ଭାବ ଅଧିକ ବୋଲି ଜଣାଯାଏ ।

କିପରି ମନରୁ ଦୁଶ୍ଚିନ୍ତା ଦୂର ହେବ, ଏ ପ୍ରଶ୍ନ ଜଣକର ନୁହେଁ, ବହୁ ଲୋକଙ୍କର ଅନ୍ତରକୁ ଆନ୍ଦୋଳିତ କରୁଛି । ଏ ପ୍ରଶ୍ନର ଉତ୍ତର ବର୍ତ୍ତମାନ ଖୋଜିବାକୁ ଚେଷ୍ଟା କରିବା, ଏ ସମସ୍ୟାର ସମାଧାନ କ'ଣ ହୋଇପାରେ ବର୍ତ୍ତମାନ ବିଚାର କରିବା ।

ସମସ୍ୟାଟିର ଯଥାର୍ଥ ସମାଧାନ ମନରେ ସମ୍ଭବ ହେଉ ନାହିଁ ଅର୍ଥାତ୍ ସମସ୍ୟାର ଜଟିଳତା, ଗମ୍ଭୀରତା ଓ ତୀବ୍ରତା ମନର ଶକ୍ତି ଓ ସାମର୍ଥ୍ୟଠାରୁ ବଳେଇ ଯାଉଛି । ଅନ୍ୟଭାବରେ କୁହାଯିବ ଯେ ସମସ୍ୟା ବଳେଇଯାଉଛି, ମନ ତାକୁ ପାରୁ ନାହିଁ । ମନ ହାରି ଯାଉଛି, ସମସ୍ୟା ଜିଣି ଯାଉଛି । ସେ କ୍ଷେତ୍ରରେ ସମସ୍ୟାଟିକୁ ବେଶୀ ଫେଣାଇବା ଉଚିତ ନୁହେଁ । ଯେତେ ଫେଣାଇଲେ ତାହା ସେତେ ବଢ଼ିଯାଏ, କମେ ନାହିଁ । ସେତେବେଳେ ସମସ୍ୟାଟିକୁ ନିଜ ଭିତରୁ କାଢ଼ି ଟିକିଏ ଦୂରରେ ରଖି ତାକୁ ଦୂରରୁ ଦେଖିବାକୁ ପଡ଼ିବ । ଏପରି ଦେଖିବାକୁ କୂଳରେ ଥାଇ ନଦୀକୁ ଦେଖିବାର ଧାରା ବୋଲି କୁହାଯାଏ । ବଢ଼ି ପାଣିରେ ଭାସିଯିବା ନୁହେଁ କୂଳରେ ରହି ନଈବଢ଼ିକୁ ଦେଖିବା ହିଁ ଯଥାର୍ଥ ଦେଖିବା । ଅର୍ଥାତ ମନକୁ ଟିକିଏ ନୀରବ କରି ଘଟଣା ବା ସମସ୍ୟାର ବାସ୍ତବତାକୁ ଅନୁଭବ କରିବାକୁ ହେବ । ସମସ୍ୟାରେ ମଜ୍ଜିନଯାଇ, ହଜିନଯାଇ ନିରପେକ୍ଷ ରହି କଥାଟିକୁ ବିଚାର କରିବାକୁ ପଡ଼ିବ । ସେତେବେଳେ ଯେଉଁ କଥାଟି ଅଧିକ ଯୁକ୍ତିଯୁକ୍ତ ବା ଯଥାଯଥ ଲାଗିବ, ସେହି କଥାଟିକୁ ନିଷ୍ପତ୍ତି ଭାବରେ ଗ୍ରହଣ କରିବାକୁ ହେବ । ଉଭୟ ପକ୍ଷରେ କିଛିକିଛି ସୁବିଧା ଓ ଅସୁବିଧା ରହିବ ହିଁ ରହିବ । ତେବେ ଯେଉଁ ଦିଗଟି ନିରପେକ୍ଷ ଭାବରେ ଅଧିକ ସୁବିଧା ଲାଗିବ, ତାକୁ ଗ୍ରହଣ କରିବାକୁ ପଡ଼ିବ । ସେଥି ନିମନ୍ତେ ଯେଉଁ ଅଳ୍ପ ଅସୁବିଧା ଭୋଗ କରିବାକୁ ପଡ଼ିବ ସେ ଦିଗରେ ବିବ୍ରତ ହେବାକୁ ପଡ଼ିବ ନାହିଁ । ଆଗକୁ ପଛକୁ ଆଉ ବିଶେଷ ନହେବା ଭଲ ।

ଦୁଶ୍ଚିନ୍ତା ଆସେ ମନର ଭୟରୁ, କ୍ଷତି ଚିନ୍ତାରୁ । ମନକୁ ଭୟ ମୁକ୍ତ ନ କଲେ କ୍ଷତିଚିନ୍ତା ଯିବ ନାହିଁ । ଭୟରୁ ଆସେ ଅବସାଦ ଏବଂ ଅବସାଦରୁ ଆସେ କ୍ଳାନ୍ତି । କ୍ଳାନ୍ତିରୁ ଆସେ ବିରକ୍ତି ଇତ୍ୟାଦି ଇତ୍ୟାଦି । ଏଥିରୁ ମୁକ୍ତ ରହିବାକୁ ହେଲେ ମନର ବଳକୁ ବଢ଼ାଇବାକୁ ପଡ଼ିବ । ସଂସାରରେ ଯେତେ ବଳ ଅଛି, ସେଥିରୁ ମନୋବଳ ହେଉଛି ସବୁଠାରୁ ବଡ଼ । ତା'ର ଏତେ ଶକ୍ତି ଯେ ତା' ଯୋଗୁଁ ଦେହରେ ବଳ ଆସେ, ପ୍ରାଣରେ ଉତ୍ସାହ ଆସେ, ମନରେ ସାହସ ଆସେ । ମନୋବଳ ବଢ଼ାଇବାର ଦାୟିତ୍ୱ ନିଜର, ଆଉ କାହାର ନୁହେଁ । ଅନ୍ୟମାନେ ଏ ଦିଗରେ ସହଯୋଗ କରିପାରନ୍ତି ବା ନକରିପାରନ୍ତି । ସହଯୋଗ ମିଳିଲେ ଭଲ, ନମିଳିଲେ ଦୁଃଖ ନ କରି ନିଜ ଭିତରୁ ବଳ

ସଂଗ୍ରହ କରିବାକୁ ହେବ । ସତରେ ବଳ ବାହାରେ ନଥାଏ, ଭିତରେ ଥାଏ, ଏକଥା ଭଲ କରି ବୁଝିବାକୁ ହେବ । ମନୋବଳ ପାଖରେ ହାରିଯାଏ ଧନବଳ, କ୍ଷମତାର ବଳ ପୁଣି ମାଂସପେଶୀର ବଳ । ମନୋବଳରେ ଥରିଯାଏ ପରିବେଶ, ଭରିଯାଏ ଦିବ୍ୟଶକ୍ତି, ଶତ୍ରୁ ହାତରୁ ଅସ୍ତ୍ର ଖସିପଡ଼େ । ବିପଦ, ଦୁଃଖ, ଦୁଶ୍ଚିନ୍ତା ଡରିଯାଏ ମନୋବଳକୁ । ହାରିଯାଏ ସମସ୍ତ ପ୍ରକାର ବିରୋଧିଶକ୍ତି ମନୋବଳ ଆଗରେ । ମନୋବଳ ନିଜ ଭିତରେ ରହିଛି, ତାହାକୁ କାଢ଼ି ବ୍ୟବହାର କରିବାକୁ ପଡ଼ିବ । ସଂଗ୍ରାମରେ ଧୈର୍ଯ୍ୟଦିଏ ମନୋବଳ, ସାହସ ଦିଏ ମନୋବଳ । ଯୁଦ୍ଧକ୍ଷେତ୍ରରେ ଦମ୍ଭ ଧରି ଠିଆ ହେବାକୁ ପାଦରେ ଶକ୍ତିଦିଏ ମନୋବଳ । ଏଇ ମନୋବଳ ମାଧ୍ୟମରେ ବିପଦର ଲହଡ଼ି ଭାଙ୍ଗି ଆଗକୁ ଯିବାକୁ ହୁଏ ।

ଆଉ ଗୋଟିଏ ବାଟ ହେଉଛି ମନକୁ ହାଲକା ରଖିବା । ହାଲକା ରଖିବା ପାଇଁ ମନକୁ ଖାଲି କରିବାକୁ ହେବ । ଏଥିପାଇଁ ଏକ ପଦ୍ଧତି ଅଛି । ପଦ୍ଧତିଟି ହେଉଛି ଦୁଶ୍ଚିନ୍ତା ଆସିଲେ ତାକୁ କାଢ଼ି ଫୋପାଡ଼ି ଦେବା, ସେଥିରେ ମନୋନିବେଶ ନ କରିବା । ମନରେ ପ୍ରଶ୍ନ ଆସିବ ଯେ ଏହା କ'ଣ ସମ୍ଭବ ? ଉତ୍ତରରେ କୁହାଯିବ ଯେ ଏହା ସମ୍ଭବ ହୋଇପାରେ ଯଦି ଅଭ୍ୟାସ କରାଯାଏ । ଆମ ଭିତରେ ଶକ୍ତି ରହିଛି ମନକୁ ଖାଲି କରିଦେବା ପାଇଁ । ସେହି ଶକ୍ତିକୁ ପ୍ରୟୋଗ କରିବାକୁ ହେବ । ଦୁଶ୍ଚିନ୍ତା ଆସିଲେ-'ନା, ମୁଁ କିଛି ଭାବିବି ନାହିଁ' କହିଲେ ଦୁଶ୍ଚିନ୍ତା ଅନ୍ତତଃ କିଛି ସମୟ ପାଇଁ ଆସିବ ନାହିଁ, ପୁଣି ଆସିବ କାରଣ ସେ ସହଜରେ ଛାଡ଼ିବ ନାହିଁ । ବାରମ୍ବାର ଆସିଲେ ତାକୁ ବାରମ୍ବାର ବାହାରକୁ ଫିଙ୍ଗି ଦେବାକୁ ହେବ । ଏହିପରି ଅଭ୍ୟାସ କଲେ ଗୋଟିଏ ସମୟ ଆସିବ, ଦୁଶ୍ଚିନ୍ତା ଆଉ ସେତେବେଳେ ଆଗଭଳି ଆକ୍ରାନ୍ତ କରିପାରିବ ନାହିଁ । ଏହି ପରିପ୍ରେକ୍ଷୀରେ ଶ୍ରୀମାଙ୍କର ଗୋଟିଏ କଥା ମନେପଡ଼େ । ସେ କହିଛନ୍ତି ଯେ ଗୋଟିଏ ବିରାଡ଼ି ଆସି ବାରମ୍ବାର ଗୋଡ଼ରେ ଘଷି ହେଲାବେଳେ ତାକୁ ଯଦି ଗ୍ରହଣ କରାନଯାଏ ଅଥବା ଉତ୍ସାହ ଦେଖାନଯାଏ ତେବେ ତା'ର ଘଷିହେବା କମିଯାଏ ।

ଆଉ ଏକ ବାଟ ହେଉଛି ଦୁଶ୍ଚିନ୍ତା ଆସିଲାବେଳେ ଦୁଶ୍ଚିନ୍ତା ଆଡ଼କୁ ମନ ନ ଦେଇ ନିଜର ଆଗ୍ରହ ଥିବା କାର୍ଯ୍ୟରେ ମନଦେବା । ଫଳରେ ଦୁଶ୍ଚିନ୍ତା ଆଉ ସ୍ଥାନ ପାଇବ ନାହିଁ ଓହ୍ଲାଇବା ପାଇଁ । ମନ ଶାନ୍ତ ରହିବ, କ୍ଷତାକ୍ତ ହେବ ନାହିଁ ।

ଏଥିସହିତ ଆଉ ଯେଉଁ କଥାଟି ପ୍ରୟୋଜନ ତାହା ହେଉଛି ବିଶ୍ୱାସ । ଏ ବିଶ୍ୱାସ ହେଉଛି ଅଦୃଶ୍ୟଶକ୍ତି ଉପରେ ବିଶ୍ୱାସ, ଭଗବାନଙ୍କ ଉପରେ ବିଶ୍ୱାସ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଭଗବାନ ଏକ, ନାମ ତାଙ୍କର ଅନେକ । ଯେଉଁ ନାମରେ ଡାକିଲେ ମଧ୍ୟ ସେହି ଡାକ ଏକ ହିଁ ଭଗବାନଙ୍କ ନିକଟରେ ପହଞ୍ଚେ । ତାଙ୍କର ଶକ୍ତି ଅସୀମ, ତାଙ୍କର ଦୟା ଅନନ୍ତ । ସେ ହେଉଛନ୍ତି ପିତା, ମାତା, ଗୁରୁ, ଗୁରୁଜନ ସବୁକିଛି । ଦୁଃଖ ସେ

ହରଣ କରି ନେଇପାରନ୍ତି ବୋଲି ନାମ ତାଙ୍କ ଦୁଃଖହାରୀ, ବିପଦବେଳେ ବନ୍ଧୁ ଯଥାର୍ଥରେ ହୋଇପାରନ୍ତି ବୋଲି ନାମ ତାଙ୍କର ବିପଦବନ୍ଧୁ । ତାଙ୍କୁ କହିଲେ ସେ ଶୁଣନ୍ତି, ଶକ୍ତି ମାଗିଲେ ସେ ଦିଅନ୍ତି । ଦୁଃଖ, ଦୁର୍ଦ୍ଦଶାରୁ ମୁକ୍ତ କରିଦିଅନ୍ତି । ସେ ଆମ ମୁହଁରେ ହସ ଦେଖିଲେ ଭାରି ଖୁସି ହୁଅନ୍ତି, ଆମ ମନରେ କଷ୍ଟ ହେଲେ ସେ ମର୍ମାହତ ହୁଅନ୍ତି । ବିବ୍ରତ ନହେବା ପାଇଁ ବାରମ୍ବାର ସେ ଆମକୁ କହନ୍ତି, ବିଷଣ୍ଣ ନହେବା ପାଇଁ କେତେ ଉପଦେଶ ଦିଅନ୍ତି । ଆମେ ଯେତେ ତାଙ୍କୁ ଭଲପାଉ, ସେ ଆମକୁ ତା'ଠାରୁ ଶହଶହ ଗୁଣରେ ଅଧିକ ଭଲପାଆନ୍ତି । ତାଙ୍କୁ ଦୁଃଖସୁଖ ଜଣାଇବା ଆମର କାମ । ଆଲୁଅକୁ ଅନ୍ଧାର ଡରିଲାପରି ଦୁଃଖ ଦୁଷ୍ଟିନ୍ତା ଭଗବାନଙ୍କୁ ଡରେ । ଭଗବାନଙ୍କ ଶରଣରେ ରହିଲେ ଦୁଃଖ ପାଖ ପଶିପାରେ ନାହିଁ । ଅଶାନ୍ତିରେ ଶାନ୍ତି ଦେଇପାରନ୍ତି କେବଳ ଭଗବାନ, ବିପଦରେ ସାନ୍ତ୍ୱନା ଓ ଧୈର୍ଯ୍ୟ ଦେଇପାରନ୍ତି କେବଳ ଭଗବାନ । ମନକୁ ଭଗବତ ଅଭିମୁଖୀ କରିବାକୁ ଅହଂକାର ବିରୋଧ କରେ । ସେହି ବିରୋଧକୁ ଦୂରେଇ ଦେବାକୁ ସଂକଳ୍ପ ଓ ଅଭ୍ୟାସର ଆବଶ୍ୟକତା ରହିଛି । ଅହଂକାର ନୁହେଁ ଆତ୍ମବିଶ୍ୱାସସହ ଭଗବତ ବିଶ୍ୱାସକୁ ମିଶାଇଲେ ତାହାର ପ୍ରଭାବରେ ପଥର ପରି ଆସିଥିବା ବିପଦ, ଦୁଃଖ ପତର ହୋଇ ଉଡ଼ିଯାଏ । ଅସମ୍ଭବ ଯେ ସମ୍ଭବ ହୋଇଯାଏ, ଏହା କଳ୍ପନାର କଥା ନୁହେଁ, ଏକ ଜୀବନ୍ତ ବାସ୍ତବତା ।



# ବିଷର୍ଣ୍ଣଭାବ କମିବ କିପରି !

ଚଳିବାର ସୁବିଧା ଗାଁଠାରୁ ସହର ପର୍ଯ୍ୟନ୍ତ ସର୍ବତ୍ର ବଢ଼ିଛି । ରାସ୍ତାଘାଟ, ଯାନବାହନ, ସମ୍ବାଦ ପ୍ରେରଣ, ଘରେ ବସି ଫେସ୍‌ବୁକ୍, ହ୍ୱାଟ୍ସଆପ ଜରିଆରେ ସମ୍ବାଦ ସଂଗ୍ରହ ଓ ଅନ୍ୟ ସହ ସମ୍ବନ୍ଧସ୍ଥାପନ, ନେଟ ମାଧ୍ୟମରେ ଜ୍ଞାନ ଅର୍ଜନର କେତେ ସୁବିଧା ଅଧିକରୁ ଅଧିକ ଉପଲବ୍ଧ ହେଲାଣି । ଯେଉଁ କାମଟି ପାଇଁ ବାହାରକୁ ଯାଇ ଘଣ୍ଟାଘଣ୍ଟା ସମୟ ଦେବାକୁ ପଡୁଥିଲା ସେ କାମ ବର୍ତ୍ତମାନ ଘରେ ବସି କ୍ଷଣକରେ କରି ହେଉଛି । ଟ୍ରେନ ଟିକେଟ୍ ହେଉ ଅଥବା ପ୍ଲେନଟିକେଟ ହେଉ ସହଜରେ କମ୍ ସମୟ ମଧ୍ୟରେ ମିଳିପାରୁଛି । ଘର କାମ କଥା ନ କହିଲେ ଚଳେ । କଟାଠାରୁ ବଟା ପର୍ଯ୍ୟନ୍ତ, ଭାତଠାରୁ ରୁଟି ପର୍ଯ୍ୟନ୍ତ ସବୁକାମ ଆମ ପାଇଁ ଯନ୍ତ୍ରପାତି କରି ଦେଉଛନ୍ତି । ଓଳିଏ ରୋଷେଇ କଲେ ଆର ଓଳି ପାଇଁ ଖାଦ୍ୟ ସୁବିଧାରେ ରହିପାରୁଛି । ହାଟକୁ ବା ଦୋକାନକୁ ପ୍ରାୟ ପ୍ରତିଦିନ ନ ଗଲେ ଚଳୁଛି କାରଣ ପରିବା ପତ୍ର ଘରେ ଫ୍ରିଜରେ ସତେଜ ରହୁଛି । ଦେହକୁ ବହୁଲୋକଙ୍କର ଗରମ ବାଧିଲା ପର୍ଯ୍ୟନ୍ତ କଥା ଯାଉନାହିଁ, ଘରେ, ଗାଡ଼ିରେ ପୁଣି ଅଫିସରେ ଏ.ସି ଖଞ୍ଜା ହୋଇଛି । ଫଳରେ ବହୁ ଲୋକଙ୍କୁ ଖରାଦିନ ଲାଗୁନାହିଁ ଖରାଦିନ ପରି । ସେଦିନ ଜଣେ ବନ୍ଧୁ କହିଲେ ଯେ ଖରାଦିନେ କମ୍ବଳଟିଏ ପାଖରେ ରଖି ସେ ବିଶ୍ରାମ ନେଉଛନ୍ତି ।

ଜୀବନ ଏତେ ସହଜ ହୋଇଛି ସତ, ମାତ୍ର ମନ ଯେତେ ସତେଜ ହେବା କଥା ହେଉ ନାହିଁ, ମଉଳି ଯାଉଛି । ମଳିନ ମନର ଚିହ୍ନ ମୁହଁରେ ଓ କଥାରେ ଫୁଟିଯାଉଛି । ଆଜିକାଲି ପ୍ରାୟ ଲୋକ ଚିଡ଼ିଚିଡ଼ି, ଶୂନ୍ୟରେ ତରତର, ଟିକିଏ ସୁବିଧା ପାଇଲେ ଅନ୍ୟକୁ ଠକି ଦେବାକୁ ତତ୍ପର, ଯାନବାହନର ଗତିରେ ଅତି ପ୍ରଖର । ଆଉ କାହାର କଥା ପଦେ

ଶୁଣିବା ପାଇଁ କାହାର ସମୟ ନାହିଁ କି ଧୈର୍ଯ୍ୟ ନାହିଁ କି ଆଗ୍ରହ ନାହିଁ । ଯେଉଁମାନେ ଅନ୍ୟ ଉପରେ ଚିଡିଚିଡି ହୁଅନ୍ତି, ସେମାନେ ଜାଣିପାରନ୍ତି ନାହିଁ ଯେ ନିଜ ଉପରେ ହିଁ ଚିଡିଚିଡି ହେଉଛନ୍ତି ବୋଲି । ଯେତେ ଖାଇଲେ ମନ ଊଣା, ଯେତେ ପିନ୍ଧିଲେ ମନ ଊଣା, ଯେତେ ପାଇଲେ ମନ ଊଣା, ମନଟି ସବୁ ବେଳେ ଊଣା ଯାହାକୁ କୁହାଯାଏ ବିଷର୍ଣ୍ଣ ଭାବ ।

ଏଇ ବିଷର୍ଣ୍ଣ ଭାବର କେତେ କାରଣ ରହିଛି । ସେଥିରୁ ଗୋଟିଏ କାରଣ ହେଉଛି ଅନ୍ୟଠାରୁ ଶ୍ରଦ୍ଧା, ଆଦର ବା ସମ୍ମାନ ଦାବି କରିବା । ଦାବି କଲେ ଏହା ମିଳେ ନାହିଁ । ଅନ୍ୟପକ୍ଷରେ ଅନ୍ୟକୁ ଶ୍ରଦ୍ଧା, ଆଦର ବା ସମ୍ମାନ ଜଣାଇଲେ ବିଷର୍ଣ୍ଣ ଭାବ ପରିବର୍ତ୍ତେ ପ୍ରସନ୍ନ ଭାବ ମିଳେ । ଏଇ ପରିପ୍ରେକ୍ଷୀରେ ଶ୍ରୀମାଙ୍କର ଗୋଟିଏ ବାଣୀ ବିଚାରକୁ ନେବା । ସେ କହନ୍ତି-''ତୁମକୁ ଏକୁଟିଆ ଲାଗୁଛି କାରଣ ତୁମେ ଅନ୍ୟଠାରୁ ଶ୍ରଦ୍ଧା ବା ଆଦର ଚାହୁଁଛ । ବିନା ସର୍ତ୍ତରେ ଅନ୍ୟକୁ ଶ୍ରଦ୍ଧା ବା ଆଦର କରି ଶିଖ, ତୁମକୁ ଅବର୍ଣ୍ଣନୀୟ ଆନନ୍ଦ ମିଳିବ ।'' ବିଷର୍ଣ୍ଣତାର ଅନ୍ୟ ଏକ କାରଣ ହେଉଛି ହୀନମନ୍ୟତା । ଏହା ଏହି ଭାବ ଆଣେ ଯେ ମତେ ସମସ୍ତେ ହଇରାଣ କରୁଛନ୍ତି, ସମସ୍ତେ ମୋ ବିରୁଦ୍ଧରେ କଥାବାର୍ତ୍ତା ହେଉଛନ୍ତି, ମତେ କେହି ଖାତିର କରୁନାହାନ୍ତି ଇତ୍ୟାଦି ଇତ୍ୟାଦି । ଅନ୍ୟପକ୍ଷରେ ନିଜକୁ ଅତି ବଡ ଭାବିବାର ମାନସିକତା ବେଳେ ବେଳେ ବିଷର୍ଣ୍ଣ ଭାବ ଆଣେ । ଏଇ ଯେମିତି 'ମୁଁ ଏତେ ଭଲ ମଣିଷ, ଜ୍ଞାନୀ ମଣିଷ, ମତେ କେହି ବୁଝି ପାରୁନାହାନ୍ତି, ମତେ ଉପଯୁକ୍ତ ସମ୍ମାନ ମିଳୁନାହିଁ, ଇତ୍ୟାଦି ଇତ୍ୟାଦି ।

ବିଷର୍ଣ୍ଣତାର ଆଉ ଏକ କାରଣ ହେଉଛି ଅତୀତକୁ ଝୁରିହେବା ଅଥବା ଘାରି ହେବା । ଅତୀତ ଆଉ ଆମ ଆୟତ୍ତରେ ନାହିଁ । ତାକୁ ଘାରି ହେଲେ ଦୁଃଖ ବଢ଼ିବ ହିଁ ବଢ଼ିବ । ଏଥିରେ ସନ୍ଦେହ ନାହିଁ । ଅନ୍ୟ ଏକ କାରଣ ହେଉଛି ଅତ୍ୟଧିକ ଭବିଷ୍ୟତ ଚିନ୍ତା, ପ୍ରବଳ ଦୁଃଖ ମାଡ଼ି ଆସିବାର ଅତ୍ୟନ୍ତ ଭୟ । ଭବିଷ୍ୟତ ଅନାଗତ, ସେ ଭାବନାରେ ଅତ୍ୟଧିକ ମଜ୍ଜି ରହିଲେ ବହୁ ଅଯଥା ପ୍ରଶ୍ନ ଗୁରାଇ ତୁରାଇ ହୋଇ ମନ ଭିତରକୁ ପଶେ ଓ ମନକୁ ଭାରାକ୍ରାନ୍ତ କରିଦିଏ । ଆଖିରୁ ନିଦ ହଜେଇ ଦିଏ, ପାଟିରୁ ଖାଦ୍ୟ ଛଡ଼ାଇ ନିଏ ।

ବଞ୍ଚିବାର କଳାର ଦୁଇଦିଗ-ଭାବବାଦ ଓ ହେତୁବାଦ ଭିତରୁ ହେତୁବାଦ ପ୍ରାୟତଃ ଅଧିକ ବିଷର୍ଣ୍ଣ ଭାବ ଆଣିଦିଏ, ଯେତେବେଳେ କି ଯୁକ୍ତି ମାଧ୍ୟମରେ ସବୁ ସମସ୍ୟାର ସମାଧାନ କରିହୁଏ ନାହିଁ । ପ୍ରକୃତରେ ହେତୁବାଦ ମାଧ୍ୟମରେ ସବୁ ସମସ୍ୟାର ସମାଧାନ ହୁଏ ନାହିଁ, ଭାବବାଦର ଲୋଡ଼ା ପଡ଼େ । ଭାବର ସହିତ ପଦେ କଥାରେ ବହୁ ସମସ୍ୟା ତୁଟି ଯାଏ, ମାତ୍ର ଯୁକ୍ତିରେ କଥା ବଢ଼େ ତେଣୁ ତ କୁହାଯାଏ, 'କଥା ମାଜିଲେ ମୋଟ, ସୂତା ମାଜିଲେ ସରୁ ।'

ସନ୍ତୋଷଭାବ ବସ୍ତୁର ପରିମାଣରେ ନଥାଏ, ମନରେ ଥାଏ । ସନ୍ତୋଷ ଭାବ ଆସିଲେ ବିଷର୍ଣ୍ଣଭାବ ଚାଲିଯାଏ କାରଣ ଦୁଇଟିଯାକ କଥା ଏକାଠି ରହିପାରନ୍ତି ନାହିଁ । ଅସନ୍ତୁଷ୍ଟ ହେବାର ପ୍ରକୃତି ବହୁଲୋକଙ୍କ ପାଖରେ ଥାଏ । ସେମାନେ ଯାହା ଚାହାନ୍ତି ତାହା ଭୁଲ ହେଉ କି ଠିକ୍ ହେଉ ପାଆନ୍ତି ନାହିଁ ବୋଲି ବିଷର୍ଣ୍ଣ ହୁଅନ୍ତି ପୁଣି ଯାହା ପାଇଥାନ୍ତି ତାକୁ ଠିକ୍ ଭାବରେ ବୁଝିପାରନ୍ତି ନାହଁ ବୋଲି ବିଷର୍ଣ୍ଣ ହୁଅନ୍ତି । ନିରାକରଣ ନିମନ୍ତେ କେତେଗୋଟି ନୀତିନିୟମ ମାନିବା ଲୋଡା । ଏଇ ଯେମିତି ନିଜକୁ ସାନ ବା ବଡ଼ ନ ଭାବିବା, ନିଜେ ଯାହା ନିଜକୁ ତାହା ବୋଲି ଭାବିବା, ଅନ୍ୟର ନିନ୍ଦାରେ ଭାଙ୍ଗି ନ ପଡ଼ିବା,ଯାହା ଘଟିଛି ତାହା ଘଟିବାର ଥିଲା ବୋଲି ବିଚାରିବା, ଅତୀତକୁ ଘାରି ନହୋଇ ଅତୀତରୁ ଅଭିଜ୍ଞତା ସଂଗ୍ରହ କରିବା, ଅନାଗତ ଭବିଷ୍ୟତ ପାଇଁ ଏତେ ବିବ୍ରତ ବା ବିଚଳିତ ନ ହେବା, ବର୍ତ୍ତମାନରେ ବଞ୍ଚିବାପାଇଁ ଅଧିକା ମନଯୋଗ ଦେବା, ହତାଶା ଆସୁଥିଲେ ଇଛା କରି ଆଶାବାଦୀ ହେବା, କାହାକୁ ନିଜ ଛାଞ୍ଚରେ ନ ପକାଇବା, ସ୍ଥାନକାଳ ପାତ୍ର ଦେଖି କଥା କହିବା, କିଛି ନିଷତ୍ତି ନେବା ପୂର୍ବରୁ ଆଉଥରେ ଭାବି ନେବା, ଆଉ କାହା ସହିତ ଧନଜନ ମାନ ଯଶରେ ନିଜକୁ ତୁଳନା ନ କରିବା, ବେଶୀ କିଛି ନ ଜାଣି ହଠାତ୍ କାହା ନିମନ୍ତେ କିଛି ମନ୍ତବ୍ୟ ନ ଦେବା, ଇତ୍ୟାଦି ଇତ୍ୟାଦି । ଏସବୁ ସହିତ ଆଉ ଏକ ବିରାଟ ଭଗବତ ଶକ୍ତିକୁ ଯେଉଁ ନାମରେ ହେଉ ପଛକେ ମାନି ତାଙ୍କଠାରେ ବିଶ୍ୱାସ ରଖିବା ଦ୍ୱାରା ବିଷର୍ଣ୍ଣଭାବ ବହୁ ପରିମାଣରେ ଦୂର ହୋଇଯିବା ସ୍ୱାଭାବିକ, ଏଥିରେ ସନ୍ଦେହ ନାହିଁ ।

❑❑

# ସମସ୍ୟା କମିବ କିପରି ?

ଧନ ଏକ ଆବଶ୍ୟକତା ମାତ୍ର ଧନ ହିଁ ଜୀବନ ନୁହେଁ । ଯଶ ଏକ ଆବଶ୍ୟକତା ମାତ୍ର ଯଶ ହିଁ ଜୀବନ ନୁହେଁ । କ୍ଷମତା ଏକ ଆବଶ୍ୟକତା ମାତ୍ର କ୍ଷମତା ହିଁ ଜୀବନ ନୁହେଁ । ଯେଉଁମାନେ ଧନକୁ, ଯଶକୁ ପୁଣି କ୍ଷମତାକୁ ଜୀବନ ବୋଲି ବୁଝିଥାନ୍ତି ସେମାନେ ପ୍ରକୃତରେ ଜୀବନକୁ ବୁଝିନଥାନ୍ତି ଅଥବା ଜୀବନର ସ୍ୱାଦକୁ ଅନୁଭବ କରିନଥାନ୍ତି । ଏତିକିରେ ସୀମିତ ହୋଇ ଗ୍ଲୋବକୁ ଦେଖି ଦେଖି ପୃଥିବୀକୁ ପରିକ୍ରମା କରୁଥାନ୍ତି ମାତ୍ର ସତ ପୃଥିବୀକୁ ନୁହେଁ । ପାନରୁ ଚୂନ ଖସିଲେ ବିଚଳିତ ଓ ବିଭ୍ରମିତ ହୋଇପଡନ୍ତି । ଚାରିଦିଗ ଅନ୍ଧାରିଆ ଦିଶେ, ଘରବାହାର ବିଷପିତା ଲାଗେ । ଘାରି ହୋଇହୋଇ ବାଉଳତା ଆସେ, ଫଳସ୍ୱରୂପ ନିଜ ଭିତରେ ଓ ବାହାରେ ଅଶାନ୍ତିର ଅଗ୍ନି ଲାଗିଯାଏ । ସେ ଅଗ୍ନି ପାଣିରେ ଲିଭେ ନାହିଁ କିମ୍ବା କୌଣସି ରାସାୟନିକ ବାଷ୍ପରେ ଲିଭେ ନାହିଁ । ସେ ଅଗ୍ନି ଜଳେ, ଜଳାଏ ଓ ଜାଳିଦିଏ । ସତର୍କ ନରହିଲେ, ସଚେତନ ନ ରହିଲେ ସର୍ବନାଶର ସମ୍ଭାବନା ଅଧିକ ଥାଏ ।

ବାସ୍ତବିକ ଜୀବନ ଏକ ଅନୁଭବ । ହେତୁ ହେବାଠାରୁ ସଚେତନ ମୃତ୍ୟୁ ପର୍ଯ୍ୟନ୍ତ ଏହା ଏକ ରସାପ୍ଲୁତ ଅନୁଭବ । ନବାଧିକ ରସର ଏକ ମହାମିଳନ ପୀଠ । କିଛିକଥାକୁ ଜୀବନ ବୋଲି ଭାବିଦେଲେ ସର୍ବନାଶ ହୋଇଯାଏ, ଜୀବନରେ ସବୁକିଛି ଅଛି ବୋଲି ଭାବି ଦେଲେ ଜୀବନକୁ ବଞ୍ଚି ହୁଏ । ଜୀବନରେ ବଞ୍ଚି ରହିବାଠାରୁ ଜୀବନକୁ ବଞ୍ଚିବା ବଡ଼ କଥା ବୋଲି ସେତେବେଳେ ବୁଝି ହୁଏ । ସମୁଦ୍ରରେ ଲହରୀ ଅଛି ମାତ୍ର ଲହରୀକୁ ସମୁଦ୍ର ବୋଲି ଭାବି ଦେଲେ ସୂତା ଅଡୁଆ ହୋଇଯାଏ, ଗଣ୍ଠି ପଡ଼ିଯାଏ, ଆଖିରୁଲୁହ ବାହାରିପଡ଼େ ମାତ୍ର ସେ ଗଣ୍ଠି ଫିଟେ ନାହିଁ । ଘର ଭିତରେ ଆଲମାରୀ, ଟେବୁଲ, ଚୌକି ଇତ୍ୟାଦି

ଇତ୍ୟାଦି ଆସବାବପତ୍ର ଅଛି, ମାତ୍ର ଏମାନେ ଘର ନୁହନ୍ତି, ଘର ଏମାନଙ୍କଠାରୁ ଆଉ ଅଧିକ କିଛି କଥା ଉଭୟ ଆୟତନରେ ଓ ଭାବମୟତାରେ । ଅର୍ଥାତ ଆଲମାରୀ ଟେବୁଲ ଭିତରେ ଘର ବନ୍ଧା ପଡ଼ିବାକୁ ଆସି ନାହିଁ, ଏମାନଙ୍କୁ ନେଇ ଆଉ କିଛି ମିଶାଇ ସମୃଦ୍ଧ ହେବାକୁ ଆସିଛି । ଖାଲି ଲହରୀମାନଙ୍କୁ ନେଇ ସମୁଦ୍ର ରତ୍ନାକର ହୋଇ ନାହିଁ । ଆଉ କିଛି କଥା ମିଶି ତାକୁ ରତ୍ନାକର କରିଛି । କିଛି କଥା ନୁହେଁ, ବହୁ କଥା ମିଶିଛି । ଲହରୀ ତ ବାହାରେ ରହିଛି, ଏହା ବ୍ୟତୀତ ବହୁ କଥା ଭିତରେ ଅଛି । ଉଭୟ ଭିତର ଓ ବାହାର ମିଶି ସମୁଦ୍ର ହୋଇଛି । ଜୀବନ ସେପରି ଖାଲି ଖାଦ୍ୟ, ବସ୍ତ୍ର ବାସଗୃହ, ଶିକ୍ଷା, ସମ୍ମାନ, ପ୍ରଶଂସାର ମାନଦଣ୍ଡରେ ମପା ହେବାକୁ ଆସି ନାହିଁ; ଦୁଃଖସୁଖର କଷଟିପଥରେ ଖାଲି କଷା ହେବାକୁ ଆସି ନାହିଁ । ଜିଣିଯିବା ହାରିଯିବାରେ ବାନ୍ଧି ହୋଇ ଯିବାପାଇଁ ଆସି ନାହିଁ । ସବୁଠୁଁ ସବୁ ନେଇ ଯାଇ କୁଦଟିଏ ତିଆରି କରି ତା'ଉପରେ ଠିଆ ହୋଇ ବାହାସ୍ଫୋଟ ମାରିବାକୁ ଆସି ନାହିଁ । ଚେତନାର ପାହାଡ଼ ଉପରେ ଠିଆ ହୋଇ ମାଟି ଆକାଶ ଓ ଦିଗ୍‌ବଳୟକୁ ତନ୍ନତନ୍ନ କରି ଦେଖିବାକୁ ଆସିଛି । ତାକୁ କେବଳ ଦେଖିବାକୁ ନୁହେଁ, ବୁଝିବାକୁ ଆସିଛି । ସେଇ ପାହାଡ ଶିଖକୁ ଛାତ ବୋଲି ବିଚାର କଲେ ସେହି ଛାତକୁ ଯିବା ପାଇଁ ଧନ, ମାନ, ଯଶ, ପ୍ରଶଂସା, କ୍ଷମତା, ପ୍ରତିଭା ସବୁକିଛି ଏକ ଏକ ସିଡ଼ି ହେବା ଆବଶ୍ୟକ । ଛାତଟିଏ ସିଡି ନୁହେଁ, ସିଡି ମଧ୍ୟ ଛାତ ନୁହେଁ । ଏହା ବୁଝିବା ସହିତ ଏହା ମଧ୍ୟ ବୁଝିବା ଉଚିତ ଯେ ଛାତକୁ ଯିବା ପାଇଁ ସିଡି ଆବଶ୍ୟକ । ଅନ୍ୟପ୍ରକାରେ କୁହାଯାଇପାରେ ଯେ କେବଳ ଭଲ ମନ୍ଦ ଖାଇବା ପାଇଁ ମଣିଷ ଆସି ନାହିଁ; ମାତ୍ର ଖାଦ୍ୟତା'ର ଦରକାର । କେବଳ ଅଧିକ ଧନ ପଛରେ ବିକଳିଆ ହୋଇ ଦଉଡ଼ିବାକୁ ମଣିଷ ଆସି ନାହିଁ ମାତ୍ର ତା'ର ଧନ ଦରକାର । ନିଜତ୍ୱ ହରାଇ ଦେଇ ଯଶ ପାଇବାକୁ ମଣିଷ ଆସିନାହିଁ ମାତ୍ର ତା'ର ଯଶ ଦରକାର ଇତ୍ୟାଦି ଇତ୍ୟାଦି ।

ଏସବୁ ପଢ଼ିଲା ପରେ ଆମେ ଅଡୁଆରେ ପଡ଼ିବା ନାହିଁ । ଏତିକି ବୁଝିବା ଯେ ଜୀବନ ଜୀଇଁବା ନୁହେଁ ଜୀବନ ବଞ୍ଚିବା ପାଇଁ ଆମେ ଆସିଛୁ । କେବଳ ବାହାରେ ବାହାରେ ଜୀବନ ଜୀଇଁବା ପ୍ରକୃତ ଜୀବନ ପଦାବାଚ୍ୟ ନୁହେଁ, ଏହା ସହିତ ଭିତରେ ଭିତରେ ଜୀବନ ବଞ୍ଚିବାକୁ ମିଶାଇବାକୁ ହେବ । ବାହାର ରହିବ, ଏବଂ ତା ସହିତ ଭିତର ରହିବ । ବାହାରୁ ଭିତରକୁ ଯିବାକୁ ହେବ । ବାହାରେ ବାନ୍ଧି ହୋଇ ରହିଗଲେ ଚଳିବ ନାହିଁ । ଭିତର ଜୀବନରେ ଅଛି ସନ୍ତୋଷ, ଶାନ୍ତି, ଆନନ୍ଦ, ସମତାର ଭାବ, ଶ୍ରଦ୍ଧା, ସ୍ନେହ, କ୍ଷମା, ଦୟା, ତ୍ୟାଗ, ଅନୁରାଗ, କୃତଜ୍ଞତା, ଶୁଭେଚ୍ଛା, ସହାନୁଭୂତି କର୍ତ୍ତବ୍ୟବୋଧ ସମେତ କେତେ ଦିବ୍ୟସଦ୍‌ଗୁଣ, ଯାହାକୁ ଦିବ୍ୟଜ୍ଞାନ ବୋଲି ଶାସ୍ତ୍ରମାନଙ୍କରେ କୁହାଯାଇଛି । ଏସବୁ କଥାର ମୂଳଦୁଆ ହେଉଛି ମଣିଷପଣିଆ । ମନକୁ ନେଇ ବାହାର ଜୀବନ ଗଢ଼ି ଉଠେ ଏବଂ

ବିବେକକୁ ନେଇ ଭିତରର ଜୀବନ ଗଢ଼ି ଉଠେ। ମନ ଓ ବିବେକର ସମନ୍ୱୟରେ ଜୀବନ ପୂର୍ଣ୍ଣ ହୋଇଯାଏ। ସମନ୍ୱୟର ଅର୍ଥ ଫେଣ୍ଟାଫେଣ୍ଟି ନୁହେଁ। ସମନ୍ୱୟର ଅର୍ଥ ହେଉଛି, ବାହାରୁ ଭିତରକୁ ଯିବା ଓ ଭିତରୁ ବାହାରକୁ ଆସିବା, ଉଭୟ ଭିତରେ ଏକ ଭାରସାମ୍ୟ ରଖିବା। ଏହି ଭାରସାମ୍ୟ ହିଁ ପୂର୍ଣ୍ଣ ଜୀବନର ଭାରକେନ୍ଦ୍ର, ମୂଳଦୁଆ। ମୂଳଦୁଆଟି ଦମ୍ଭ ହେଲେ ଘରଟି ଦମ୍ଭ ରହିବ।

ଅତଏବ କଥାଟିଏ କହିଲା ବେଳେ ଖାଲି ମନକୁ ନେଇ କଥା କହିଲେ ଚଳିବ ନାହିଁ, ଏଥି ସହିତ ବିବେକକୁ ମିଶାଇବାକୁ ପଡିବ। ଫଳରେ ଅନେକ ମାନସିକ ଯନ୍ତ୍ରଣାରୁ ମୁକ୍ତି ମିଳିବ। କାମଟିଏ କଲାବେଳେ ମନ ସହିତ ବିବେକର ପରାମର୍ଶକୁ ଯୋଡ଼ିବାକୁ ପଡ଼ିବ। ଫଳରେ ଅନେକ ସମସ୍ୟାରୁ ମୁକ୍ତି ମିଳିବ। ବୁଝିବାକୁ ହେବ ଯେ ବିବେକହିଁ ଈଶ୍ୱରଙ୍କର ପ୍ରତିନିଧି। ବିବେକଟି ମଞ୍ଜିହେଲେ ମନ ତାହାର ବେଢ଼ଣ। ବିବେକର ନିର୍ଦ୍ଦେଶ ହିଁ ଈଶ୍ୱରଙ୍କ ନିର୍ଦ୍ଦେଶ। ବିବେକର ସ୍ୱର ହିଁ ଈଶ୍ୱରଙ୍କ ସ୍ୱର। ଅବଶ୍ୟ ସେ ସ୍ୱର ଅତ୍ୟନ୍ତ ଧୀର, ପୁଙ୍ଖାନୁପୁଙ୍ଖଦର୍ଶୀ, ଅନ୍ତରଙ୍ଗ ଓ ଆନ୍ତରିକ। ତାହା ନିଜକୁ ଜାହିର କରେ ନାହିଁ। ବାଟ ଦେଖାଏ ଏବଂ ସେ ଦେଖାଉଥିବା ବାଟରେ ଚାଲିଲେ ହାତ ଧରି ଖାଲଖମା, ବିଲବନ ପାରି କରାଇ ଦିଏ। ଆମ ଭିତରେ କି ଦିନ କି ରାତି, କି ଖରା କି ବର୍ଷା ସବୁବେଳେ ସେ ରହିଛନ୍ତି। ତାଙ୍କର କାର୍ଯ୍ୟ ହେଉଛି ଆମକୁ ଠିକ୍ ବାଟରେ ଚଳାଇବା। ଆମକୁ ଜୀବନର ଅସଲ ସ୍ୱାଦ ଚଖାଇବା।

ଆମେ ସେଇ ସ୍ୱାଦ ଚାଖିବାକୁ ଆଗ୍ରହୀ ହେବା ଆବଶ୍ୟକ। ପ୍ରଥମ ସର୍ତ୍ତଟି ଆମ ପାଖରେ ଯେ ଆମେ ଇଚ୍ଛା କରିବା ବିବେକକୁ ମନ ସହିତ ଯୋଡ଼ିବାକୁ। ତେବେ ସବୁକିଛି ଠିକ ହୋଇ ଚାଲିବ। ଦୁଃଖ, ଯନ୍ତ୍ରଣା, ଅଶାନ୍ତି, ବହୁପରିମାଣରେ କମିଯିବ। ସେତେବେଳେ ବୁଝିହେବ ଯେ ବିବେକର ପ୍ରଭାବ କେତେବେଶୀ। ସେତେବେଳେ ବୁଝିହେବ ସେ ମର୍ତ୍ତ୍ୟର ନଦୀ ନୁହେଁ, ସ୍ୱର୍ଗର ଗଙ୍ଗାଧାରା, ସେ ମର୍ତ୍ତ୍ୟର ଫୁଲ ନୁହେଁ, ଗଗନର ତାରା। ତାଙ୍କ ସ୍ପର୍ଶରେ ମାଟି ହୋଇଯାଏ ସୁନା, ଲୁହା ହୋଇଯାଏ ଚୁମ୍ବକ। ସେ ଦିବ୍ୟଧାମରୁ ଆସି ମର୍ତ୍ତ୍ୟରେ ଆମ ଭିତରେ ରହିଛନ୍ତି। ସେ ସର୍ବ ସଦ୍‌ଗୁଣସଂପନ୍ନ ଓ ସର୍ବଶକ୍ତି ସଂପନ୍ନ। ଆମର ସେ ଶୁଭଚିନ୍ତକ ଓ ପଥପ୍ରଦର୍ଶକ। ସେ ଆମକୁ ପ୍ରାଣଭରି ଭଲ ପାଆନ୍ତି, ଆମେ ଥରେ ସେଇ ବିବେକ ଆଡ଼କୁ ଫେରି ଚାହିଁବା ନାହିଁକି ?

❑❑



# ପ୍ରବଳ କୁହୁଡ଼ି ହୋଇଛି

କୁହୁଡ଼ି ଏତେ ପ୍ରବଳ ହୋଇଛି ଯେ ବାଟଘାଟ ଦିଶୁନାହିଁ, ଖାଲଖମା ଦିଶୁନାହିଁ । ଏତେବେଳେ ବାଟଚାଲିବା ବଡ଼ ବିପଦଜନକ ହୋଇପଡୁଛି । ଅଧାବାଟରେ ତ ଅଟକି ହେବ ନାହିଁ, ପଛରୁ ଗାଡ଼ିମଟର ଆସି ବାଡ଼େଇ ଦେବ । ଅତଏବ ଚାଲିବାକୁ ପଡ଼ିବ । ତେବେ ଏତେ କୁହୁଡ଼ିରେ ଜଣେ ଚାଲିବ କିପରି ? ମୁହଁକୁ ମୁହଁତ ଦିଶୁ ନାହିଁ, ଆଗପଛ କିଛି ଦିଶୁନାହିଁ । କୁହୁଡ଼ିର ସମୁଦ୍ର ଭିତରେ ବୁଡ଼ିଗଲା ପରି ଲାଗୁଛି । ଏକଥା ଶୁଣି ବନ୍ଧୁ ଜଣକ କହିଲେ-'ଠିକ୍ କଥା, କୁହୁଡ଼ି ଥିବା ସମୟରେ ବାହାରକୁ ବାହାରିବା ଆଦୌ ଉଚିତ ନୁହେଁ, ଥଣ୍ଡା, ସର୍ଦ୍ଦି, କାଶ ସେତିକବେଳେ ଧରିପକାଏ । ସେତେବେଳେ ଘର ଭିତରେ ରହିବା ଉଚିତ ।'

ଏକଥା ଶୁଣି ମନକୁ ଆସିଲା ଯେ କେତେ କୁହୁଡିକୁ ଅଣଦେଖା କରିବା, କୁହୁଡ଼ିତ ସଦାବେଳେ ରହିଛି, କି ସକାଳ, କି ଦ୍ୱିପହର, କି ସଂଧ୍ୟା କି ରାତି ଇତ୍ୟାଦି ଇତ୍ୟାଦି । ଏ କୁହୁଡ଼ି ଅଚେତନାର କୁହୁଡ଼ି । ମାଓବାଦ, ଉଗ୍ରବାଦ, ଆତଙ୍କବାଦ ମଞ୍ଚ ଥରାଇ ଦେଉଛି । ସମୟର ଗତି କେଉଁ ଆଡ଼କୁ ଜାଣି ହେଉନି । କେତେବେଳେ ପବନ କେଉଁ ଦିଗରୁ ବହୁଛି, ଜାଣି ହେଉ ନାହିଁ, ଜାଣିଲା ବେଳକୁ ପବନ ତା'ର ଗତିପଥ ବଦଳାଇ ଦେଉଛି । ଭାବି ନଥିବା କଥା ସବୁ ଘଟୁଛି । ଏସବୁକୁ ଘଟଣା କୁହାଯିବ କି ଅଘଟଣ କୁହାଯିବ, ବୁଝି ହେଉ ନାହିଁ-କାରଣ ଘଟଣା ଓ ଅଘଟଣ ଭିତରେ ଆଉ ଭେଦଭାବ ନାହିଁ । ବର୍ତ୍ତମାନ ଘଟଣାମାନ ହୋଇଛି ଅଘଟଣା ଏବଂ ଅଘଟଣା ମାନ ହୋଇଛି ଘଟଣା । ଗତକାଲି ଯାହା ଘଟଣା ଥିଲା ଆଜି ସକାଳକୁ ତାହା ଅଘଟଣରେ ପରିଣତ ହୋଇଯାଉଛି । ଏକଥା ସାରା

ପୃଥିବୀରେ ଦେଖିବାକୁ ମିଳୁଛି । ସେ ଆୟଲନର କଥା ହେଉ ଅଥବା ନିରୀହ ନିଷ୍ପାପ ଶିଶୁଙ୍କର ହତ୍ୟା ହେଉ, ସେ ଗଣଧର୍ଷଣର ବିଭୀଷିକା ହେଉ ଅଥବା ଡକାୟତି ସହ ହତ୍ୟାକାଣ୍ଡ ହେଉ, ପ୍ରେମୀଯୁଗଳଙ୍କ ଆତ୍ମହତ୍ୟା ହେଉ ଅଥବା ଯୁବତୀ ଚାଲାଣ ବ୍ୟବସ୍ଥା ହେଉ-ସବୁ ମିଶି ଏମିତି ଅଦିନ କୁହୁଡ଼ି ସୃଷ୍ଟି କରିଛନ୍ତି ଯେ କିପରି ଘନ କୁହୁଡ଼ିର ଘେରକୁ ପାରି ହେବାକୁ ହେବ ଜାଣି ହେଉ ନାହିଁ ।

ଅବଶ୍ୟ ଏସବୁକୁ କେବଳ ସମୟର ଦୋଷ କହି ଏଡ଼ାଇ ଦେଲେ ଚଳିବ ନାହିଁ । ଠକାମି, ଜାଲିଆତି, ନିଷ୍ଠୁରତା, ବର୍ବରତା ଓ ହିଂସ୍ରତା ପ୍ରଭୃତିକୁ ସମୟର ଦୋଷ କହି ଖସି ଗଲେ ହେବ ନାହିଁ । ସମୟ ଥିଲା ଅତୀତରେ, ବର୍ତ୍ତମାନ ମଧ୍ୟ ଅଛି । ପାଣି ପବନ ସୂର୍ଯ୍ୟ ଚନ୍ଦ୍ର ତାରା ଥିଲେ, ଆଉ ବର୍ତ୍ତମାନ ମଧ ଅଛନ୍ତି । ଏତିକି ହୋଇଛି ଯେ ମଣିଷ ମନରୁ ନୈତିକତା, ସୁକୁମାରତା, ଶିଷ୍ଟତା ସର୍ବୋପରି ମାନବିକତା ଚାଲିଯାଇଛି, ସେଇ ସ୍ଥାନ ଖାଲି ହେବାରୁ ସେ ସ୍ଥାନରେ ସ୍ୱାର୍ଥପରତା, ଜଟିଳତା, କ୍ରୋଧ, କଳହ ସର୍ବୋପରି ହିଂସ୍ରତା କାୟା ବିସ୍ତାର କରି ରହିଛି । ଏଇମାନଙ୍କ ପ୍ରଭାବରେ ମଣିଷ ଆଉ ମଣିଷ ହୋଇ ନ ରହି ରାକ୍ଷସ ସ୍ତରକୁ ଖସି ଆସୁଛି । ନାରକୀୟ କାଣ୍ଡ କରି ବସିଲା ବେଳେ ମଣିଷ ପଣିଆ ତାକୁ ପଛରୁ ଭିଡ଼ି ଧରୁନାହିଁ । ଲୋଭ, ଈର୍ଷା ଓ ହିଂସା ପ୍ରଥମ ଭାବନାରୁ କାର୍ଯ୍ୟକାରୀ ହୋଇଯାଉଛନ୍ତି, ଦ୍ୱିତୀୟ ଭାବନା ପର୍ଯ୍ୟନ୍ତ କଥାଯାଉନାହିଁ । ଚିଟଫଣ୍ଡ ଦୁର୍ନୀତିଠାରୁ ରଙ୍ଗିଲାବାବାଙ୍କ ପର୍ଯ୍ୟନ୍ତ ଅଘଟଣର ଚେର ଲମ୍ବିଯାଉଛି । ଜନସାଧାରଣ ସବୁଥିରେ କ୍ଷତିଗ୍ରସ୍ତ ହେଉଛନ୍ତି ।

ସମାଜରେ ଏମିତି ଚୋରି, ଡକାୟତି, ଧର୍ଷଣ, ଦୁର୍ନୀତି ପ୍ରଭୃତି ଆଉ ବେଶୀଦିନ ଚାଲିବ ନାହିଁ । ନିଶ୍ଚୟ ଏହାର ପରିବର୍ତ୍ତନ ଘଟିବ । ସେତେବେଳେ ସମାଜ ହେବ ଅଧିକ ଗୌରବ ଦୀପ୍ତ ଓ ସୌରଭଯୁକ୍ତ । ବ୍ୟକ୍ତି ବଦଳିଲେ ସମାଜ ବଦଳିବ । ବର୍ତ୍ତମାନ ପ୍ରଶ୍ନ ଆସୁଛି ମନରେ ଯେ ବ୍ୟକ୍ତିକୁ କିଏ ବଦଳାଇବ ? ଉତ୍ତରରେ କୁହାଯାଇପାରେ ଯେ ବ୍ୟକ୍ତିକୁ ଶିକ୍ଷା, ସଂସ୍କାର, ଆଇନ ବଦଳାଇବ । ଶିକ୍ଷା କହିଲେ ପାରିବାରିକ ଶିକ୍ଷା, ଆନୁଷ୍ଠାନିକ ଶିକ୍ଷା ଏବଂ ଅଣ ଆନୁଷ୍ଠାନିକ ଶିକ୍ଷାକୁ ବୁଝାଏ । ଏତେ ଶିକ୍ଷା ଭିତରେ ପାରିବାରିକ ଶିକ୍ଷା ସର୍ବୋତ୍ତମ । ପିତାମାତା ଓ ଅଭିଭାବକ ଯେଉଁଠି ମାର୍ଜିତ, ଶୃଙ୍ଖଳିତ ଓ ରୁଚିସଂପନ୍ନ ନୁହନ୍ତି, ସେ ଘରର ପିଲାମାନେ ଦୁର୍ଦ୍ଦାନ୍ତ, ବିଶୃଙ୍ଖଳିତ ଓ ରୁଚିହୀନ ହେବା ସ୍ୱାଭାବିକ । ତେଣୁ ତ କୁହାଯାଏ 'ପଲମ ଗୁଣେ ଚକୁଳି ।' କୁଣ୍ଡର ଗୋଲାପ ଗଛଟିର ଠିକ୍ ଭାବରେ ଯତ୍ନ ନ ନେଲେ, ତାହା ଅଲରା ବଲରା ହୋଇ ବଢ଼ିଯାଏ, ଜମିବାଡ଼ିର ହିଡ଼ବାଡ଼ କତି ନ କଲେ ତାହା ବେଢଙ୍ଗିଆ ହୋଇଯାଏ, ଛୋଟ ପିଲାର ଦାନ୍ତର ଯତ୍ନ ନ ନେଲେ ଦାନ୍ତ ବାହାଡ଼ା ହୋଇଯାଏ ଇତ୍ୟାଦି ଇତ୍ୟାଦି । ମଣିଷ ପିଲାଟିର ମାନସିକ

ସ୍ୱାସ୍ଥ୍ୟର ଯତ୍ନ ନ ନେଲେ ପିଲାଟି ଅସାମାଜିକ ତଥା ଅମାନବିକ ହୋଇଯିବା ସ୍ୱାଭାବିକ । ଗୋଟିଏ ଗଛପାଇଁ ତା'ମୂଳରେ ପାଣି ଦେବା ଯାହା, ଗୋଟିଏ ପିଲା ପାଇଁ ପାରିବାରିକ ଶିକ୍ଷା ତାହା । ଏଥିପାଇଁ ଅବଶ୍ୟ ପିତାମାତା ତଥା ଅଭିଭାବକଙ୍କୁ ବହୁ ସମୟ, ଶକ୍ତି ଓ ମନୋଯୋଗ ଦେବାକୁ ପଡ଼ିବ । ବେଳାରେ ହେଳା କରି ଦେଲେ ଚଳିବ ନାହିଁ । ପିଲାଟି ଆୟତ୍ତରେ ଥିବାବେଳେ ତାକୁ କେତେ ମୂଲ୍ୟବାନ କଥା କହିବାକୁ ପଡ଼ିବ, କେତେ ବୁଝାଇବାକୁ ପଡ଼ିବ, କେତେ ସହ୍ୟ କରିବାକୁ ପଡ଼ିବ, ତା'ର ହିସାବ ନାହିଁ । ନିଜେ ଭଲ କଥା ଶିଖି ପିଲାମାନଙ୍କୁ ଭଲ କଥା ଶିଖାଇବା ହିଁ ଅସଲ ପିତୃତ୍ୱ, ମାତୃତ୍ୱ ତଥା ଅଭିଭାବକତ୍ୱ ।

ଆନୁଷ୍ଠାନିକ ଶିକ୍ଷାର ପ୍ରଭାବ ବ୍ୟକ୍ତି ଉପରେ ରହିଛି । ଶିକ୍ଷାର ମାନ, ପାଠ୍ୟକ୍ରମର ରୂପରେଖ, ଶିକ୍ଷାର ଲକ୍ଷ୍ୟ ସର୍ବୋପରି ଶିକ୍ଷକମାନଙ୍କ ପ୍ରଭାବ ବହୁ ଭାବରେ ଜଣେ ଛାତ୍ରର ଜୀବନକୁ ସମୃଦ୍ଧ କରିଥାଏ । ଶିକ୍ଷାର ଲକ୍ଷ୍ୟ କେବଳ ଡିଗ୍ରୀ ହାସଲ ବା ଚାକିରୀ କରିବା ନୁହେଁ, ଶିକ୍ଷାମାଧ୍ୟମରେ ଜୀବନକୁ ଓ ଜଗତକୁ ଜାଣିବା ହେଉଛି ଶିକ୍ଷାର ଅସଲ ଲକ୍ଷ୍ୟ । ପାଠ୍ୟକ୍ରମରେ ଏମିତି ପାଠ୍ୟ ରହିବା ଉଚିତ ଯାହା ଛାତ୍ରଟିର ମାନସିକତାରେ ଉଦାରତା ଆଣିଦେବ । ମନକୁ ପ୍ରଶସ୍ତ କରିବ ଏବଂ ଜୀବନକୁ ତଥା ଜଗତକୁ ଜାଣିବାକୁ ବହୁ ସୁଯୋଗ ସୃଷ୍ଟି କରିବ । ବିଶ୍ୱ ପରିବାରଗଠନର ମାନସିକତା ଗୋଟିଏ ଛାତ୍ର ଭିତରେ ଆସିପାରେ ଏହି ଶିକ୍ଷା ଯୋଗୁଁ । ଶିକ୍ଷା ଏକ ଚୁମ୍ବକ ଯାହା ସାଧାରଣ ବ୍ୟକ୍ତି ରୂପକ ଲୁହାଟିକୁ ଚୁମ୍ବକରେ ରୂପାନ୍ତରିତ କରିପାରେ । ତେଣୁ ତ କୁହାଯାଇଛି 'ସା ବିଦ୍ୟା ଯା ବିମୁକ୍ତୟେ ।' ଛାତ୍ରର ଜୀବନ ଗଠନରେ ଶିକ୍ଷକଙ୍କର ଭୂମିକା ବହୁଳ ଭାବରେ ରହିଛି । ସେମାନେ କେବଳ ପାଠପଢ଼ାଇଲେ ଯଥେଷ୍ଟ ନୁହେଁ, ଆଚରଣରେ ମଧ୍ୟ ସିଦ୍ଧ ହେବା ଉଚିତ । ଛାତ୍ରମାନେ ଉତ୍ତମ ଶିକ୍ଷକମାନଙ୍କଠାରୁ ଭଲ ଭଲ ଗୁଣ ଓ ଆଚରଣ ଶିକ୍ଷା କରିଥାନ୍ତି । ତେଣୁ ଶିକ୍ଷକଙ୍କୁ ଛାତ୍ରମାନଙ୍କ ନିକଟରେ ଉଦାହରଣ ହୋଇ ରହିବାକୁ ହେବ । ତେବେ ଯାଇ ପିଲାମାନେ ବହୁତ ଭଲ ଭଲ କଥା ଓ ଗୁଣର ଆପେ ଆପେ ଅଧିକାରୀ ହୋଇଯିବେ । ଶିକ୍ଷକମାନଙ୍କର ଶ୍ରଦ୍ଧା ଓ ଛାତ୍ରମାନଙ୍କର ଭକ୍ତି ମିଶି ଶିକ୍ଷାନୁଷ୍ଠାନକୁ ଆଣିଦେବ ଭବ୍ୟ ସମ୍ମାନ ଓ ଦିବ୍ୟ ଲାବଣ୍ୟ । ଅଣ ଆନୁଷ୍ଠାନିକ ଶିକ୍ଷା ମଧ୍ୟ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ । ସଭାସମିତି, ଘରେ ଓ ବାହାରେ ପାଳିତ ପୂଜାପର୍ବ, ସତସଙ୍ଗ, ଆଧ୍ୟାତ୍ମିକ ଅନୁଷ୍ଠାନ, ଶିକ୍ଷଣୀୟ ପୁସ୍ତକ, ମହାପୁରୁଷମାନଙ୍କ ଆଦର୍ଶମୟ ଜୀବନ ପ୍ରଭୃତି ଏହି ଅଣ ଆନୁଷ୍ଠାନିକ ଶିକ୍ଷାର ଅନ୍ତର୍ଭୁକ୍ତ । ଏହା ଦ୍ୱାରା ଜଣେ ବ୍ୟକ୍ତି ପ୍ରଭାବିତ ହୋଇପାରେ । ନୈତିକତା, ସାମାଜିକତା, ଧୈର୍ଯ୍ୟ, ସାହସ, ଅଧ୍ୟବସାୟ, ମିଳିମିଶି ଚଳିବା ପ୍ରଭୃତି ସଦ୍‌ଗୁଣର ବିକାଶ ଘଟିଥାଏ ।

ଆଇନ ତଥା କଠୋର ଆଇନର ଆବଶ୍ୟକତା ରହିଛି । ଆଇନ କାନୁନ ହେଉଛି ବ୍ୟାଧିର ଔଷଧ ଭଳି । ଶିକ୍ଷା ଦେଇପାରେ ପ୍ରତିଷେଧକ ବ୍ୟବସ୍ଥା ମାତ୍ର ପ୍ରତିଷେଧକକୁ

ନ ମାନି ଯଦି ବ୍ୟାଧି ଆସେ, ତେବେ ଆଇନ ରୂପକ ଔଷଧର ବ୍ୟବସ୍ଥା ଏକାନ୍ତ ଜରୁରୀ ।

ବ୍ୟକ୍ତି ବ୍ୟକ୍ତି ଭିତରେ, ଜାତିଜାତି ଭିତରେ ଓ ସଂପ୍ରଦାୟ ସଂପ୍ରଦାୟ ଭିତରେ ଅସହନଶୀଳତା ଏକ ଅବାନ୍ତର କଥା । ବ୍ୟକ୍ତିର ପ୍ରକୃତି, ଜାତିର ଚଳଣି ଓ ସଂପ୍ରଦାୟର ଆଦର୍ଶ ଏକ ଏକ ପଥ ସଦୃଶ । ପଥ ପଥ ଭିତରେ ପ୍ରତିଯୋଗିତା ଓ ମନୋମାଳିନ୍ୟ ଆଦୌ ସ୍ପୃହଣୀୟ ନୁହେଁ । ମନୁଷ୍ୟ ଏକ ପ୍ରଜାତିର ଅନ୍ତର୍ଭୁକ୍ତ । ଏହି ପ୍ରଜାତିର ଅନ୍ତର୍ଭୁକ୍ତ ପ୍ରତ୍ୟେକ ବ୍ୟକ୍ତି କ୍ଷେତ୍ରରେ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଜନ୍ମମୃତ୍ୟୁ, ଭୋକଶୋଷ ଏବଂ ସୁଖଦୁଃଖ ଚରମସତ୍ୟ । ଏହି ଦିଗରୁ ବିଚାର କଲେ ପରସ୍ପର ଭିତରେ ଏକତ୍ୱ ଓ ଆନ୍ତରିକତା ରହିବା ଯୁକ୍ତିଯୁକ୍ତ । ଏହି ଏକତ୍ୱକୁ ଭୁଲିଯାଇ କିଛି ଲୋକ ସଇତାନୀ ବୁଦ୍ଧିର ପ୍ରଭାବରେ ପ୍ରଭାବିତ ହୋଇ ବହୁ ଅଘଟଣ ଘଟାଉଛନ୍ତି ଏବଂ ସାମାଜିକ ପରିବେଶକୁ କୁହୁଡ଼ିଆ କରି ଦେଉଛନ୍ତି ।

ଗଭୀର ଆଶା ଓ ବିଶ୍ୱାସ ଯେ ନୂଆ ପୀଢ଼ି ଆସିବେ ଏବଂ ସେମାନଙ୍କ ମାନବିକ ସଦ୍‌ଗୁଣର ପ୍ରଭାବରେ କୁହୁଡ଼ି ଅପସାରିତ ହୋଇଯିବା ସଙ୍ଗେ ସଙ୍ଗେ ମଣିଷ ପଣିଆର ସୂର୍ଯ୍ୟ କିରଣରେ ଦିଗଦିଗନ୍ତ ଝଲସି ଉଠିବ ।



# ଭାବିଲେ ମନରେ ଅନେକ ବ୍ୟଥା

ଲେଖାଟିଏ ଦୈନିକ ସମ୍ବାଦପତ୍ରରେ ପ୍ରକାଶିତ ହେଲେ ଫୋନ ପରେ ଫୋନ ଆସେ । ଫୋନର ମୂଳ କଥାଟି ହେଉଛି-''ଆଜ୍ଞା, ଏହିପରି ଲେଖାଦ୍ୱାରା ଆଜିର ସାମାଜିକ ଜୀବନ ପ୍ରଭାବିତ ହେବ । ଚତୁର୍ଦ୍ଦିଗରେ ଶାନ୍ତି ଫେରି ଆସିବ ଇତ୍ୟାଦି ଇତ୍ୟାଦି ।'' ଶ୍ରଦ୍ଧାରେ ସମ୍ମତି ଜଣାଇବାକୁ ପଡ଼େ । ମନରେ ଭାବାନ୍ତର ଆସେ, ସତେ ଶାନ୍ତି କେତେ ଅମୂଲ୍ୟ ଜିନିଷ ଯାହାର ତୁଳନା ନାହିଁ । ଧନ, ମାନ, ଯଶ ଓ କ୍ଷମତା କେହି ତା'ର ସମସରି ନୁହଁନ୍ତି । ଶାନ୍ତି ବଚନର ବିଷୟ ନୁହେଁ, ଅନୁଭବର ବିଷୟ । ଅର୍ଥାତ ଶାନ୍ତି ଏକ ମାନସିକ ଅବସ୍ଥା । ଧନଜନ ଗୋପ ଲକ୍ଷ୍ମୀ କେତେ ମିଳିଲେ ଯାଇ ଶାନ୍ତି ମିଳିବ, ଏପରି ଗାଣିତିକ ସୂତ୍ର ନାହିଁ । ପ୍ରଚୁର ସମ୍ପଦ ଥାଇ ମଧ୍ୟ ଜଣେ ଶାନ୍ତି ନପାଇପାରେ, ମାତ୍ର ଆବଶ୍ୟକ ମୁତାବକ ସଂପଦ ଥାଇ ଜଣେ ଶାନ୍ତିରେ ରହିପାରେ । ଅତଏବ ଶାନ୍ତି ଏକ ମାନସିକତା, ଏହା କିଣାବିକା ହୁଏ ନାହିଁ । ଏହା ପ୍ରତ୍ୟେକଙ୍କ ଭିତରେ ଥାଏ, ତାକୁ ଶ୍ରଦ୍ଧାର ସହିତ ଆମନ୍ତ୍ରଣ କଲେ ସେ ବାହାରକୁ ଆସେ । ଶାନ୍ତି ଆଣିଦିଏ ଉଦାରତା, ପ୍ରସାରତା ଓ ଶୀତଳତା ।

ସୁଖ ଓ ଶାନ୍ତି ଏକା କଥା ନୁହେଁ । ଅନେକ ଲୋକ ସୁଖ ଓ ଶାନ୍ତିକୁ ଏକା କଥା ବୋଲି ଭାବନ୍ତି । ବାସ୍ତବରେ ସୁଖ ମିଳେ ଇନ୍ଦ୍ରିୟ ତୃପ୍ତିରୁ । ଏଇ ଯେମିତି ଭୋକବେଳେ ଖାଇ ସାରିଲା ପରେ ଯେଉଁ ତୃପ୍ତିମିଳେ ତାହା ହେଉଛି ସୁଖ । ଶୋଷବେଳେ ଥଣ୍ଡାପାଣି ପିଇଲା ପରେ ଯେଉଁ ତୃପ୍ତି ମିଳେ ତାହା ହେଉଛି ସୁଖ । ସୁଖ ଥାଏ ମନର ଉପରି ଭାଗରେ, ଶାନ୍ତି ଥାଏ ମନର ଗଭୀରତମ ଗଭୀରତାରେ । ନୀତି ଅନୀତି, ନ୍ୟାୟ ଅନ୍ୟାୟ ବିଚାର ବୋଧରୁ ଅର୍ଥାତ ବିବେକଶୀଳତାରୁ ଶାନ୍ତି ମିଳିଥାଏ ।

ଏଇ ବିଚାରବୋଧ ବହୁ ଲୋକଙ୍କ ପାଖରେ ନାହିଁ । ଏପରି ବହୁଲୋକ ଅଛନ୍ତି ଯେଉଁମାନେ କଥା କହି ଜାଣନ୍ତି ନାହିଁ ମାତ୍ର ସେମାନେ ଖନା ନୁହଁନ୍ତି । ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ କଥା ଶୁଣନ୍ତି ନାହିଁ ମାତ୍ର ସେମାନେ କାଲା ନୁହଁନ୍ତି । କହିବାର ଅର୍ଥ ହେଉଛି ସେମାନଙ୍କ ପାଖରେ କଥା କହିବାର କଳା ନାହିଁ । କଥା କହିଲା ବେଳେ ସ୍ଥାନ କାଳ ପାତ୍ରର ହିତାହିତ ଜ୍ଞାନ ସେମାନଙ୍କ ପାଖରେ ନଥାଏ । ଯେଉଁ ଅଳ୍ପଲୋକଙ୍କ ଭିତରେ ହିତାହିତ ଜ୍ଞାନ, ଭୁଲି ଠିକ୍‌ର ବିଚାରବୋଧ ରହିଛି, ସେମାନେ ବର୍ତ୍ତମାନ ସମୟରେ ଯଥାଯୋଗ୍ୟ ସମ୍ମାନ ପାଉ ନାହାନ୍ତି । ଯଦି କାହା ପାଖରେ ବିବେକ ଟିକିଏ କାର୍ଯ୍ୟକାରୀ ହେଲା ତେବେ ସେ 'ପୁରୁଣା କାଳିଆ', 'ଓଲଡମଡେଲ', 'କେଉଁ କାମକୁ ନୁହେଁ' ଇତ୍ୟାଦି ଇତ୍ୟାଦି ବିଶେଷଣରେ ବିଭୂଷିତ ହେବାକୁ ବାଧ୍ୟ । ଅନ୍ୟ ପ୍ରକାରେ କୁହାଯାଇପାରେ ଯେ ବଙ୍କା ବୁଦ୍ଧି ନଥିଲେ ସେ ବ୍ୟକ୍ତି ବିଶେଷ ଉନ୍ନତି କରିପାରନ୍ତି ନାହିଁ । ପ୍ରକୃତରେ ସଚେତନତା, ସହୃଦୟତା ଓ ପ୍ରକୃତଜ୍ଞାନ ଆଣି ଦିଏ ଶାନ୍ତି । ଆଜିକାଲି ଲୋକ ଶାନ୍ତି ଅପେକ୍ଷା ସୁଖ ପାଇଁ ଅଧିକ ଆଗ୍ରହୀ । ବିଚାରବୋଧ ମନରୁ ବହୁ ପରିମାଣରେ ଅପସରି ଗଲାଣି । ଫଳତଃ ବିଚିତ୍ର ବିଚିତ୍ର ଘଟଣାମାନ ସମାଜ-ଜୀବନରେ ଘଟୁଛି । ବଡ଼ଠାରୁ ସାନ କେହି ହୋସରେ ଥିଲା ପରି ଜଣାପଡୁ ନାହାନ୍ତି । ନିଜ ପଦବୀର ପଦମର୍ଯ୍ୟାଦାକୁ ବଳି ଦେଇ ଅମାନବିକତାର ପରିଚୟ ଦେଉଛନ୍ତି । ସଚ୍ଚୋଟତା, ନିରପେକ୍ଷତା, ନୀତିନିଷ୍ଠତା ଇତ୍ୟାଦି ସୁଗୁଣମାନ କମି କମି ବହୁତ ପରିମାଣରେ କମିଗଲାଣି ।

ସଂପ୍ରତି ଅଘଟଣମାନ ଘଟଣାରେ, ଅକଥାମାନ କଥାରେ ପରିଣତ ହେଉଛି । ଗଣମାଧ୍ୟମରେ ପ୍ରଚାରିତ ଓ ପ୍ରକାଶିତ ସମ୍ବାଦମାନଙ୍କରୁ ଜାଣିବାକୁ ହେଉଛି ବର୍ତ୍ତମାନର ସାମାଜିକ ଅବସ୍ଥା ଓ ବ୍ୟବସ୍ଥାର କଥା । ଏଇ ଯେମିତି ହଇଗୋଳରେ ସଂସଦ ଅଚଳ, ସଂସଦର ଘଣ୍ଟାଘଣ୍ଟା ମୂଲ୍ୟବାନ ସମୟର ଅପବ୍ୟବହାର, ଲୁଟେରା ଲୁଟି ନେଲେ ବ୍ୟାଙ୍କରୁ କୋଟି କୋଟି ଟଙ୍କା, ଆତଙ୍କବାଦୀଙ୍କ ଲ୍ୟାଣ୍ଡମାଇନ ବିସ୍ଫୋରଣରେ କେତେ ସୈନିକ ମୃତ, ନାବାଳିକା ଧର୍ଷଣର ଶିକାର, ପୁଲିସର ଲାଞ୍ଚ କାରବାର, ସରପଞ୍ଚଙ୍କର ପେଞ୍ଚପାଞ୍ଚନୀତି, ଚବିଶ ଘଣ୍ଟାରେ ଦୁଇଥର ଏନକାଉଣ୍ଟର, ଚବିଶ ବର୍ଷ ହେଲା ତଦନ୍ତ ସରୁନି ଇତ୍ୟାଦି ଇତ୍ୟାଦି । ଏସବୁ ଶୁଣିଲେ ଓ ଜାଣିଲେ ବହୁ ସହୃଦୟ ବ୍ୟକ୍ତିଙ୍କ ମନରେ ଅନେକ ବ୍ୟଥା ଯାହା କହି ହେଉନି କି ସହି ହେଉନି ।

ସବୁଦେଶ ସମାନ ନୁହେଁ କି ସବୁ ପରିବେଶ ସମାନ ନୁହେଁ ଏପରି କେତେକ ଦେଶ ଅଛି ଯେଉଁଠାରେ ଯଥାବିଧି ଦଣ୍ଡନୀତି ଏବଂ ଯଥାଯଥ ଶୃଙ୍ଖଳା ଜ୍ଞାନ ରହିଛି । ରାସ୍ତାଘାଟର ଶୃଙ୍ଖଳା ବ୍ୟବସ୍ଥା ଏବଂ ପରିବେଶର ପରିଷ୍କାର ପରିଚ୍ଛନ୍ନତା, ଅସାଧାରଣ ।

ଜିନିଷଟିଏ ହଜିଗଲେ ମିଳିବାର ସୁବ୍ୟବସ୍ଥା ଏବଂ ଚୋରି ନହେବା ମଧ୍ୟ ଜାଣିବାକୁ ମିଳେ । ଏସବୁ ସହିତ ସେଠାରେ ନିଜ ଦେଶ ପ୍ରତି ଆତ୍ମୀୟତାବୋଧ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଦେଶକୁ ଗୁରୁତ୍ୱ ଦେବା ସହିତ ରାଷ୍ଟ୍ରୀୟ ସମ୍ପତ୍ତିକୁ ଗୁରୁତ୍ୱ ଦେବାର ମନୋବୃତ୍ତି ସେଠାରେ ଦେଖିବାକୁ ମିଳେ । ଏସବୁ ଶୁଣିଲେ ମନରେ ଭାବାନ୍ତର ଆସେ । ଜୀବନ ସେଠାରେ ଏତେ ଦୁଷ୍ଚିନ୍ତା ଗ୍ରସ୍ତ ନୁହେଁ, ଯେତେ ପରିମାଣରେ ଆମ ଦେଶରେ । ସର୍ବେକ୍ଷଣରୁ ଜଣାଯାଇଛି ଯେ ସମଗ୍ରପୃଥିବୀରେ ଭାରତବର୍ଷରେ ଦୁର୍ନୀତି, ହତାଶା, ଦୁଃଖ, ଦୁଃଷ୍ଚିନ୍ତା ବହୁପ୍ରକାରେ ଅଧିକ ।

ଭାରତ ବର୍ଷରେ ଏସବୁର କାରଣ କ'ଣ ପ୍ରାୟ କେହି ଖୋଜନ୍ତି ନାହିଁ ଅଥବା ଖୋଜିବାକୁ ଚାହାନ୍ତି ନାହିଁ । ଖୋଜିବାପାଇଁ ଆଗ୍ରହ ନାହିଁ । ବୁଦ୍ଧିଜୀବୀମାନେ ପ୍ରାୟତଃ ଏଠାରେ ମୂକ ଯେମିତି ବେଙ୍ଗ ରଡ଼ିରେ ପିକମୂକ । ମୂକତ୍ୱର ଅନ୍ୟତମ କାରଣ ହେଉଛି ତାଙ୍କୁ ଶୁଣିବ କିଏ ? ପ୍ରୟୋଗ କଲା ଲୋକ ଶୁଣନ୍ତି ନାହିଁ, ଶୁଣିବା ଲୋକଙ୍କ ପାଖରେ ପ୍ରୟୋଗର କ୍ଷମତା ନାହିଁ । ଟିକିଏ ଅଧିକ ବୁଦ୍ଧିଥିବା ଲୋକଟି ସେହି ବୁଦ୍ଧିକୁ ଆମ ଦେଶରେ ନାସ୍ତି ଦିଗରେ ଲଗାଏ । ଆଉ କାହାକୁ ଠକି ଦେଲେ, ବିନା ପରିଶ୍ରମରେ ଧନୀ ହୋଇଗଲେ ବୁଦ୍ଧିମାନ ବୋଲି ଅଲେଖା ପ୍ରମାଣପତ୍ର ମିଳେ । ଦୁର୍ନୀତିକୁ ନୀତିରେ ପରିଣତ କରିବା ଏଇ ବୁଦ୍ଧିର ପରିଣାମ । ଏପରି ବ୍ୟକ୍ତିଙ୍କୁ ସମାଜରେ ପ୍ରଶଂସା ମିଳେ ଓ ସମ୍ମାନ ମିଳେ । ଅନ୍ତରରୁ ପ୍ରକୃତ ଶ୍ରଦ୍ଧା ମିଳେ କି ନାହିଁ ଜଣା ନାହିଁ । ଏମାନଙ୍କୁ ମିଶାଇ ଅନ୍ୟମାନଙ୍କ ପାଖରେ ଦେଶାତ୍ମବୋଧର କଥା ପଚାରେ କିଏ ? ପିଲାଦିନରୁ ଘରୁକି ବାହାରୁ ଦେଶାତ୍ମବୋଧର କଥା ଶୁଣିବାକୁ ମିଳେ ନାହିଁ । ପିଲାଟିର ଚିନ୍ତାଧାରା ସହିତ ଦେଶ ଏଠାରେ ଯୋଡ଼ା ଯାଇନଥାଏ । ଯୋଡିବାର ମନୋବୃତ୍ତି ନଥାଏ ପୁଣି ଯୋଡ଼ିବାପାଇଁ ଉଦ୍ଦିଷ୍ଟ ଥିବା ବ୍ୟକ୍ତିମାନେ ଜାଣନ୍ତି ନାହିଁ ଦେଶାତ୍ମବୋଧ କ'ଣ ?

ପିତାମାତା ହୁଅନ୍ତୁ ଅଥବା ଶିକ୍ଷକ ହୁଅନ୍ତୁ ସେମାନେ ଜାଣନ୍ତି କେବଳ ବ୍ୟକ୍ତିଗତ ଜୀବନର କଥା । ବ୍ୟକ୍ତିଗତ ସମୃଦ୍ଧି ହିଁ ସମସ୍ତ ସମୃଦ୍ଧି । ଜାତୀୟତାବୋଧ ସଂପର୍କରେ ଧାରଣା ସେମାନଙ୍କ ଭିତରେ ପ୍ରାୟତଃ ନଥାଏ ହୁଅନ୍ତୁ ଫଳତଃ 'ଆମଦେଶ'-ଏଇ ଭାବଟି ପିଲାଟି ଭିତରେ ନଥାଏ । ସେ ରାଷ୍ଟ୍ରର ମହତ୍ତ୍ୱ ଜାଣିନଥାଏ, ତେଣୁ ରାଷ୍ଟ୍ରୀୟ ସଂପତ୍ତିର ମହତ୍ତ୍ୱ ବୁଝି ନଥାଏ । ଟିକିଏ ଟିକିଏ କଥାରେ ରାସ୍ତାରୋକ, ରେଳରୋକ ସହିତ ଶିକ୍ଷାନୁଷ୍ଠାନର ଜିନିଷପତ୍ର, କାର୍ଯ୍ୟାଳୟର ଜିନିଷପତ୍ର ଭଙ୍ଗାରୁଜା କରେ । ଏଥିରେ ଦୋଷ କାହାର, ତାହା ବିଚାର କରିବାର କଥା । ଏପରି ମାନସିକତା ଆସିଲା କେଉଁଠୁ, ତାହା ଭାବିବାର କଥା । ନା ଅଛି ଏଥିପାଇଁ ପ୍ରତିଷେଧକ ବ୍ୟବସ୍ଥା, ନା ଅଛି ଏଥିପାଇଁ ଉପଯୁକ୍ତ ଦଣ୍ଡଜନିତ ଔଷଧ ବ୍ୟବସ୍ଥା । ଭାବିଲେ ମନରେ ଅନେକ ବ୍ୟଥା, ଛାଡ଼ ସେ କଥା ।

ଆଉ ଗୋଟିଏ କଥା ଆମେ ଚେଷ୍ଟା କଲେ ଲକ୍ଷ୍ୟ କରି ପାରିବା ଯେ ମନରେ ସନ୍ତୋଷ ଓ ମୁହଁରେ ମଧୁର ହସଟିକିଏ ଥିବା ଲୋକଙ୍କର ସଂଖ୍ୟା ବହୁତ ପରିମାଣରେ କମିଗଲାଣି । ଯେଉଁ ହସ ଅଛି ତାହା କୁଟିଳ ହସ ଅଥବା କୃତ୍ରିମ ହସ । ସେ ହସରେ ନା ଅଛି ଆତ୍ମୀୟତା ଅଥବା ଆନ୍ତରିକତା । ପୁଣି ବହୁତ ସଂଖ୍ୟାର ଲୋକଙ୍କର ମନ ଊଣା ଯେ ଆହୁରି ବହୁ ଧନ, ବହୁ ଯଶ, ବହୁ କ୍ଷମତା, ବହୁ ସମ୍ମାନ ସେମାନଙ୍କୁ ମିଳିବା ଉଚିତ ଥିଲା, ମାତ୍ର ମିଳିଲା ନାହିଁ, ଯାହା ମିଳିଲା ତାହା ସାମାନ୍ୟ ମାତ୍ର । ପ୍ରକୃତରେ ଯାହା ମିଳିଛି ତାହାର ତାଲିକା କରିବାକୁ ସେମାନଙ୍କର ସମୟ ନାହିଁ, ଯାହା ନ ମିଳିଛି ତାହାର ତାଲିକା କରିବାକୁ ସେମାନଙ୍କ ହାତରେ ଯଥେଷ୍ଟ ସମୟ ଅଛି । ଏଇ ତାଲିକା ସେମାନଙ୍କୁ ଭାରାକ୍ରାନ୍ତ କରୁଛି, ଏକଥା ସେମାନେ ଜାଣନ୍ତି ନାହିଁ ।

❑❑

# ଆଉ ବେଳ ଗଡ଼ି ନଯାଉ

ଆତ୍ମଶାନ୍ତିରୁ ବଳି ଶାନ୍ତି ନାହିଁ, ଆତ୍ମସନ୍ତୋଷରୁ ବଳି ସନ୍ତୋଷ ନାହିଁ, ଆତ୍ମବିଶ୍ଳେଷଣରୁ ବଳି ବିଶ୍ଳେଷଣ ନାହିଁ, ଆତ୍ମସନ୍ଧାନରୁ ବଳି ସନ୍ଧାନ ନାହିଁ, ଆତ୍ମସାକ୍ଷାତରୁ ବଳି ସାକ୍ଷାତ ନାହିଁ ସର୍ବୋପରି ଆତ୍ମଆନନ୍ଦରୁ ବଳି ଆନନ୍ଦ ନାହିଁ । ଏହାର ଅର୍ଥ ଏପରି ନୁହେଁ ଯେ ଏଥିପାଇଁ ଘରଦ୍ୱାର ଛାଡି ଚିତାଚିମୁଟା ଧରି ବାବାଜୀ ହେବାକୁ ପଡ଼ିବ । ଦୁଃଖର ବିଷୟ ଏହି ଯେ ଆଜିକାଲି ଆତ୍ମା ବା ଆତ୍ମ ଶବ୍ଦ ଶୁଣିଲେ ଯୁବପୀଢିର କାନକୁ ବଡ ଅଡୁଆ ଲାଗୁଛି, ମନକୁ ଡର ଆସୁଛି, ପ୍ରବଳଭୟ ଲାଗୁଛି ଯେ କାଳେ ଆମକୁ କିଏ ସନ୍ନ୍ୟାସୀ କରି ଦେବେ । ତେଣୁ ଆତ୍ମା ଶବ୍ଦ ଆମ କାନରେ କେହି ନ ପକାନ୍ତୁ । ଆମ କାନରେ କେବଳ ପଡୁଥାଉ ଫେସ୍‌ବୁକ, ମେଲଆଇଡି, ଜିମେଲ ଡଟ୍‌କମ୍, ହ୍ୱାଟସଆପ୍, ସ୍କାଇପ, ସାଇବରକେଫ ଇତ୍ୟାଦି ଇତ୍ୟାଦି ଶବ୍ଦ । ଏକଥା ରହୁ, ଏହା ତ ବିଜ୍ଞାନର ଅବଦାନ । ଏଥିସହିତ ଆତ୍ମବିଶ୍ଳେଷଣ ରହୁ । ଭୁଲ୍‌ଠିକ୍, ଭଲ ମନ୍ଦ, କର୍ତ୍ତବ୍ୟ ଅକର୍ତ୍ତବ୍ୟ, ରୁଚିଅରୁଚି ଇତ୍ୟାଦି ଶବ୍ଦ ମାନେ ରହନ୍ତୁ ।

ଆତ୍ମ ଶବ୍ଦର ଅର୍ଥ ହେଉଛି ନିଜ । ଅର୍ଥାତ ନିଜ ଭିତରର ସନ୍ତୋଷ, ନିଜ ଭିତରର ଶାନ୍ତି, ନିଜ ଭାବନା ଓ କର୍ମର ବିଶ୍ଳେଷଣ, ନିଜକୁ ଜାଣିବା ପାଇଁ ଅନ୍ୱେଷଣ, ନିଜକୁ ଦେଖିବା କଥା ଏଠାରେ କୁହାଯାଉଛି । ଗୋଟିଏ ବାକ୍ୟରେ କୁହାଯାଇପାରେ ଯେ ଅନ୍ତର୍ମୁଖୀ ହେବା । ବାହାରେ ବୁଲିବୁଲି ଶେଷରେ କ୍ଳାନ୍ତ ହୋଇ ଜୀବନ ସରି ଯାଉଛି । ଭିତର କଥା ଭାବିବା ପାଇଁ ଆଗ୍ରହ ନାହିଁ କି ସମୟ ନାହିଁ । ଆଗ୍ରହ ଥିଲେ ସମୟ ମିଳନ୍ତା । ବାହାରେ ଯିଏ ଯେତେ ଭ୍ରମିଲା ସେ ସେତେ ସ୍ମାର୍ଟ ହେଲା । ପଞ୍ଚଇନ୍ଦ୍ରିୟର ସଦ୍ ବ୍ୟବହାର ଅପେକ୍ଷା

ଅସଦ୍‌ବ୍ୟବହାର ଯିଏ ଯେତେ ବେଶୀ କରିପାରିଲା ସେ ସେତେ ଯୁଗୋପଯୋଗୀ ବୋଲି ନିଜକୁ ମନେ କଲା । ନିଜର ଲାଭ ପାଇଁ ଅନ୍ୟର କ୍ଷତି ଘଟାଇବା, ଅନ୍ୟକୁ କଥା କଥାରେ ସମାଲୋଚନା କରିବା, ଜୀବନର ପ୍ରତିକଥାକୁ ଯୁକ୍ତିରେ ଗ୍ରହଣ କରିବା, ଅନ୍ୟ ସହିତ ଯୁକ୍ତି କରି ନିଜକୁ ଜାହିର କରିବା, ପିତାମାତାଙ୍କୁ ଅକଥା କହି ତାଙ୍କ ମନରେ କଷ୍ଟ ଦେବା, ବଡ଼ମାନଙ୍କୁ ଈର୍ଷା କରିବା, ସାନମାନଙ୍କୁ ହେୟ ମନେ କରିବା, ଟିକିଏ ସୁବିଧା ପାଇଲେ ଅନ୍ୟକୁ ଠକି ଦେବା, ଚଉଦଣାର ମଣିଷ ହୋଇ ଷୋଳଣାର କଥା କହିବା, ନିଜ ଢୋଲ ନିଜେ ପିଟିବା, ସୁବିଧା ଥିଲେ ଦେଶକୁ ଖୋଳ କରିବା, ସବୁ କଥାରେ ନିୟମ ଭାଙ୍ଗିବା । ସ୍ମାର୍ଟ ହେବା ନାଆଁରେ ଅକଥା କହିବା, ଅକାର୍ଯ୍ୟ କରିବା ଆଜିକାଲି ଦେଖିବାକୁ ମିଳୁଛି । ଟିକିଏ ବିଶ୍ଳେଷଣ କଲେ ଜଣାଯିବ ଯେ ଏସବୁ କଥା ତ ପାଶ୍ଚାତ୍ୟରୁ ଆସି ନାହିଁ । ପାଶ୍ଚାତ୍ୟର ପ୍ରଭାବରୁ ବହୁ କଥା ଆସିଛି, ମାତ୍ର ଆଉ କିଛି କଥା କେଉଁଠୁ ଆସିଛି, ଭାବିବାର କଥା । ପାଶ୍ଚାତ୍ୟ ଜଗତର ଜୀବନ ବାହାରେ ବଞ୍ଚେ, ଭିତରକୁ ଯାଏ ନାହିଁ । ଭିତର ଜୀବନ ସମ୍ବନ୍ଧରେ ତା'ର ବିଶେଷ ଧାରଣା ନାହିଁ । ଯାହା ବା ଅଛି ସେ ତା' ଉପରେ ଗୁରୁତ୍ୱ ଦିଏ ନାହିଁ । ଆମେ ସେହି ମାନସିକତାର ଶିକାର ଦିନକୁ ଦିନ ଅଧିକରୁ ଅଧିକ ହୋଇଯାଉଛୁ । ତେବେ ପାଶ୍ଚାତ୍ୟ ଜଗତରେ ଥିବା ଭଲ କଥା ତ ଆମ ଦୃଷ୍ଟିରୁ ପଡୁନାହିଁ । ତାଙ୍କ ସମୟାନୁବର୍ତ୍ତିତା, ଦେଶାତ୍ମବୋଧ, ନିୟମାନୁବର୍ତ୍ତିତା, ଗବେଷଣାମୂଳକ ଦୃଷ୍ଟିଭଂଗୀ, ଶୃଙ୍ଖଳାବୋଧ, ଆମ ଉପରେ କିଛି ପ୍ରଭାବ ବିସ୍ତାର କରୁନାହିଁ । ଆମେ ଏତେ ଅନିୟମିତ ଅନିୟନ୍ତ୍ରିତ ହେଲୁ କିପରି ? ଭଦ୍ର ବ୍ୟବହାର ଶିଖିଲୁ ନାହିଁ, କଥା ଦିପଦ କହି ଶିଖିଲୁ ନାହିଁ, ଶ୍ରଦ୍ଧାକଲୁ ନାହିଁ କି ଅନ୍ୟଠାରୁ ଶ୍ରଦ୍ଧା ଗ୍ରହଣ କଲୁ ନାହିଁ ଅନ୍ୟର ଭଦ୍ରତାକୁ ଦୁର୍ବଳତା ବୋଲି ସହଜରେ ବୁଝିଗଲୁ । 'କ'ଣ ଭାଇ ଭଲ ଅଛ'- ଏହି ପ୍ରଶ୍ନର ଉତ୍ତର ବାହାରେ ନ ହେଉ ପଛେ ଭିତରେ ଦେଲୁ 'ଆଉ କ'ଣ ଖରାପ ଥାଆନ୍ତି ।' ମନରେ ରହୁଛି ଯେ ଭୋଗ କରିବାକୁ ମୁଁ ଆସିଛି, ସବୁ କିଛି ଭୋଗ କରିଯିବି । ଏତେମହିମାମୟ ଦେଶ ଭାରତବର୍ଷର ପ୍ରଭାବ କିପରି ଆମ ଉପରେ ପଡୁନାହିଁ, ଆଶ୍ଚର୍ଯ୍ୟ ଲାଗୁଛି । ଯେଉଁ ଦେଶରେ ଭୋଗ, ତ୍ୟାଗ, ଯୋଗ ସବୁ କିଛି ଥିଲା, ଜୀବନକୁ ଏକପାଖିଆ ନ କରି ପରିପୂର୍ଣ୍ଣ କରିବାପାଇଁ ବ୍ୟବସ୍ଥା ଥିଲା, ବାହାର ଓ ଭିତର ଉଭୟ ଜୀବନ ପାଇଁ ଶାସ୍ତ୍ରମାନ ରଚିତ ହୋଇଥିଲା । ଧର୍ମ, ଅର୍ଥ, କାମ, ମୋକ୍ଷ-ଏଇ ଚାରିକଥାର ଗୁରୁତ୍ୱକୁ ଉପଲବ୍ଧି କରାଯାଉଥିଲା, ସେ କଥାର ପ୍ରଭାବ ଗଲା କେଉଁଆଡେ ? ଏସବୁ କଥାର ମୂଳ ହେଉଛି ନିଜ ସଂସ୍କୃତିକୁ ସାନ କରି ଦେଖିବା ସହିତ ଅନ୍ୟକୁ ବଡ଼ କରି ଦେଖିବାର ମାନସିକତା । ସବୁଥାଇ ଆମେ ମନରେ ଦରିଦ୍ର । ଆମ ପାଦ ଆମ ମାଟିରେ ନାହିଁ, ଛିନ୍ନ ମୂଳ ହୋଇ ଆମେ ଭାସୁଛୁ । ମନେ ପଡୁଛି ସ୍ୱାମୀ ବିବେକାନନ୍ଦଙ୍କ କଥା-''ପିଲାଟିଏ ବିଦ୍ୟାଳୟକୁ ଯାଇ ଶିଖୁଛି ଯେ

ତା'ର ପିତା ଜଣେ ମୂର୍ଖ, ତାର ପିତାମହ ଜଣେ ପାଗଳ, ତ'ର ଶାସ୍ତ୍ର ସବୁ ମିଥ୍ୟାଗଳ୍ପରେ ପରିପୂର୍ଣ୍ଣ ।'' ବାସ୍ତବରେ ସେଦିନ ଏକଥାର ଅର୍ଥ ଯେତିକି ବାସ୍ତବ ଥିଲା, ଆଜି ଏକଥାର ଅର୍ଥ ତା' ଅପେକ୍ଷା ବହୁ ଗୁଣରେ ଅଧିକ ବାସ୍ତବ ବୋଲି ଅନୁଭୂତ ହେଉଛି, ଯୁବଶକ୍ତିର କଡ଼ା କଥା, ଅମାର୍ଜିତ ବ୍ୟବହାରରେ ପିତାମାତା ମର୍ମାହତ । ଅଜାଗା ଘା' ଦେଖି ହେଉନି କି ଦେଖାଇ ହେଉନି । ସମସ୍ତେ ଯେ ଏହିପରି, ଏକଥା ନୁହେଁ, ମାତ୍ର ବହୁକ୍ଷେତ୍ରରେ ଏହା ଘଟୁଛି । 'ପିତୃଦେବୋଭବ, ମାତୃଦେବୋଭବ'-ବିଘ୍ନର କେବଳ ନୁହେଁ ବ୍ୟବହାରର ଏ ଦେଶରେ ଏ ଶବ୍ଦମାନେ ଏତେ ଶକ୍ତି ହରାଇ ବସିଲେ କିପରି-ଭାବିଲେ ବିସ୍ମିତ ହେବାକୁ ପଡ଼େ ।

ସମୟ ଆସିଛି ଚିନ୍ତା କରିବା ପାଇଁ କି ଯେ ଆମର ଅର୍ଥାତ ଅଭିଭାବକମାନଙ୍କର କେଉଁଠି କିଛି ଅଭାବ ରହିଗଲା କି? ଜୀବନର ବାସ୍ତବତା ଆମେ କ'ଣ ପିଲାମାନଙ୍କୁ ଜାଣିବାପାଇଁ କିଛି ଉପଦେଶ ଦେଲୁନାହିଁ କି ? ସବୁ ପରିସ୍ଥିତିର କିପରି ସମ୍ମୁଖୀନ ହେବାକୁ ହୁଏ ଆମେ କ'ଣ ତାଙ୍କୁ ବୁଝାଇଲୁ ନାହିଁ କି ? ବଡ଼ମାନଙ୍କୁ, ଗୁରୁଜନମାନଙ୍କୁ ଓ ସାନମାନଙ୍କୁ କିପରି ଚଳାଇବାକୁ ହୁଏ, ବତାଇଲୁ ନାହିଁ କି? ଆମ ଗୁରୁଜନ, ଆମପିତାମାତାଙ୍କ ସହ ଚଳିବାରେ ଆମର କିଛି ତ୍ରୁଟି ରହିଗଲା କି? ଆମ ଭିତରେ ସଚ୍ଚୋଟ ପଣିଆର କିଛି ଅଭାବ ରହିଗଲା କି, ଆଚରଣ ଏବଂ ଉଚ୍ଚାରଣରେ ଆମ ଭିତରେ ଭାରସାମ୍ୟ ରହୁନାହିଁ କି ? ସର୍ବୋପରି ଆମେ କ'ଣ ତାଙ୍କ ପାଇଁ ଆବଶ୍ୟକ ମୁତାବକ ସମୟ, ଧୈର୍ଯ୍ୟ ଓ ସ୍ନେହ ଦେଇ ପାରିଲୁ ନାହିଁକି ? ଇତ୍ୟାଦି ଇତ୍ୟାଦି ବହୁ କଥା ଭାବିବାର ସମୟ ଆସିଛି । ବେଳତ ଗଡ଼ିଗଲାଣି, ଆଉ ବେଳ ଗଡ଼ିନଯାଉ ।



# ଆମେ ଚାହିଁଲେ ସବୁ ବଦଳିବ

ଅର୍ଥନୀତି ବଦଳିଗଲେ ସମାଜ ବଦଳିଯିବ-ଏହା ପୂର୍ଣ୍ଣ ସତ୍ୟ ନୁହେଁ, ଅର୍ଦ୍ଧସତ୍ୟ । ରାଜନୀତି ବଦଳିଗଲେ ସମାଜ ବଦଳିଯିବ-ଏହା ପୂର୍ଣ୍ଣ ସତ୍ୟ ନୁହେଁ, ଆଂଶିକ ସତ୍ୟ । ମଣିଷର ପ୍ରକୃତି ବଦଳିଲେ ସମାଜ ପୂର୍ଣ୍ଣଭାବରେ ବଦଳିଯିବ – ଏହା ହିଁ ସତ୍ୟ । ପ୍ରଶ୍ନ ଉଠିବ ଯେ ମନୁଷ୍ୟର ପ୍ରକୃତି ବଦଳିବ କି ? ମଣିଷ ପ୍ରକୃତି ତ ବଦଳେ ନାହିଁ, ଯଦି ବଦଳେ ତେବେ ଟିକିଏ ଟିକିଏ ବଦଳେ ବୋଲି କୁହାଯାଏ । ଏପରି ସ୍ଥଳେ ପୂର୍ଣ୍ଣଭାବରେ ବଦଳିବ ବୋଲି କ'ଣ ଆଶା କରାଯାଇପାରେ ? ଉତ୍ତରରେ କୁହାଯିବ ଯେ ମଣିଷ ପ୍ରକୃତି ବଦଳିପାରେ ଯଦି ସେ ନିଜେ ଚାହେଁ ଓ ଚେଷ୍ଟା କରେ । ତାହାର ଚେଷ୍ଟା ସହିତ ଆଉ କିଛି କଥାର ସଂଯୋଗ ମଧ୍ୟ ଆବଶ୍ୟକ ହୁଏ । ସେହି କିଛି କଥା ହେଉଛି 'ଶିକ୍ଷା' । ଏଇ ଶିକ୍ଷା ହୋଇପାରେ ପାରିବାରିକ ଶିକ୍ଷା, ଆନୁଷ୍ଠାନିକ ଶିକ୍ଷା ପୁଣି ଅଣଆନୁଷ୍ଠାନିକ ଶିକ୍ଷା ।

ପାରିବାରିକ ଶିକ୍ଷା ଦିଏ ଅଧିକ ସଂସ୍କାର ଯାହା ପ୍ରକୃତିର ପରିବର୍ତ୍ତନ ପାଇଁ ଅତ୍ୟନ୍ତ ଉପଯୋଗୀ । ଜନ୍ମଗତ ସଂସ୍କାରକୁ ବଢ଼ିବାରେ ସହଯୋଗ କରେ ପିତାମାତା, ଗୁରୁଜନଙ୍କର ଅବଦାନ । ବିଶେଷତଃ ପିତାମାତାଙ୍କର ଯଥେଷ୍ଟ ଶକ୍ତି, ସମୟ ଓ ଧୈର୍ଯ୍ୟ ଏଥିପାଇଁ ଆବଶ୍ୟକ ହୋଇଥାଏ । ସମୟ ନାହିଁ କହିଲେ ଚଳେ ନାହିଁ । ସମୟ ଦେବାକୁ ପଡ଼େ, ସଚେତନ ହେବାକୁ ପଡ଼େ, ଉଦାହରଣ ହେବାକୁ ପଡ଼େ । ଖାଲି ମେଞ୍ଚାଏ ଉପଦେଶ ଦେଲେ ପିଲାଟି ଯେ ବିକଶିତ ବ୍ୟକ୍ତିତ୍ୱରେ ପରିଣତ ହୋଇଯାଏ, ତାହା ଆଦୌ ନୁହେଁ, ଉଦାହରଣ ହୋଇ ପିଲାଟିକୁ ମାର୍ଗଦର୍ଶନ କରାଇଲେ ତାହା ଫଳପ୍ରଦ ହୋଇଥାଏ । ଉଦାହରଣସ୍ୱରୂପ ପିତାମାତା ମିଛ କହୁଥିଲେ, ପିଲାଟିକୁ ସତ କହିବାକୁ ଶିଖାଇବା ବୃଥା

ହୋଇଯାଏ । ପିତାମାତାଙ୍କର ଦେଶାତ୍ମବୋଧ ନଥିଲେ ପିଲାଟି ଭିତରେ ଦେଶପ୍ରେମର ଜାଗରଣ ଏକ ପ୍ରକାର ଅସମ୍ଭବ ହୋଇପଡ଼େ । ତେବେ ଖତଗଦାରେ କ'ଣ ପଦ୍ମ ଫୁଟେ ନାହିଁ, ଫୁଟେ, ମାତ୍ର ତାହା ବ୍ୟତିକ୍ରମ ହୋଇପାରେ, ଉଦାହରଣଟିଏ ହୋଇପାରେ ନାହିଁ । ସ୍ନେହ ମିଶା ଧୈର୍ଯ୍ୟ ସହିତ ଶ୍ରଦ୍ଧାକୁ ମିଶାଇବାକୁ ପଡ଼େ । ପିଲାଟିକୁ ଯଥାଯଥ ଭାବରେ ଗଢ଼ିବାର ଅର୍ଥ ଏକ ଦେବ କାର୍ଯ୍ୟ କରିବା କାରଣ ପିଲାଟି ହେଉଛି ଏକ ଦେବଶିଶୁ ।

ଆନୁଷ୍ଠାନିକ ଶିକ୍ଷାର କଥା ବର୍ତ୍ତମାନ ବିଚାରକୁ ନେବା । କେବଳ ଡିଗ୍ରୀ, ଡିପ୍ଲୋମା ପାଇଁ ଆନୁଷ୍ଠାନିକ ଶିକ୍ଷା ଉଦ୍ଦିଷ୍ଟ ନୁହେଁ । କେବଳ ଚାକିରି, ଅର୍ଥ ଉପାର୍ଜନ ନୁହେଁ ଆନୁଷ୍ଠାନିକ ଶିକ୍ଷାର ଉଦ୍ଦେଶ୍ୟ । ଏଥି ସହିତ ଶୃଙ୍ଖଳା ଶିକ୍ଷା, ଅନ୍ୟମାନଙ୍କୁ ଚିହ୍ନିବା ଓ ଜାଣିବାର ସୁଯୋଗ, ସମୟାନୁବର୍ତ୍ତିତା ତଥା ନିୟମାନୁବର୍ତ୍ତିତା, ବିଭିନ୍ନ ଜ୍ଞାନ ଅର୍ଜନର ସୁବିଧା ସହିତ ପ୍ରଯୁକ୍ତିବିଦ୍ୟାର କୌଶଳ ଆହରଣ ଆନୁଷ୍ଠାନିକ ଶିକ୍ଷାରୁ ମିଳିଥାଏ । ଜୀବନକୁ ଆତ୍ମମୁଖୀ ଏବଂ ଜଗତମୁଖୀ କରାଏ ଆନୁଷ୍ଠାନିକ ଶିକ୍ଷା । ଚିହ୍ନାଏ ଜୀବନ ଓ ଜଗତକୁ, ବୁଝାଏ ଜୀବନର ମୂଲ୍ୟ ଓ ଜଗତର ମହତ୍ତ୍ୱକୁ । ବତାଏ ଚାଲିବାକୁ ଯଥାର୍ଥ ମାର୍ଗରେ । ଏ କ୍ଷେତ୍ରରେ ଶିକ୍ଷକମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ନିଜେ ସେମାନେ ସଂପୂର୍ଣ୍ଣ ହେବାକୁ ପ୍ରୟାସୀ ହେବା ଆବଶ୍ୟକ । ସେମାନେ ପଢୁଥିଲେ ପଢ଼ାଇବା କ୍ରିୟାଟି ଫଳପ୍ରଦ ହୋଇଥାଏ । ନିଜେ ବୁଝିଥିଲେ ବୁଝାଇବା କାର୍ଯ୍ୟଟି ସହଜ ହୋଇଥାଏ । ପିଲାଟି ବୁଝିଗଲେ ଆଉ ଘୋଷିବାକୁ ପଡ଼େ ନାହିଁ । ଘୋଷା ପାଠ ଯେ ପାଠ ନୁହେଁ ଏକଥା ଆଗରୁ ବହୁ ଭାବରେ କୁହାଯାଇଛି । ସ୍ୱାମୀବିବେକାନନ୍ଦଙ୍କ ମତରେ – "ପାଠ ଘୋଷିଲେ ହୁଏ ନାହିଁ, ପାଠ ବୁଝିଲେ ହୁଏ ।" ଶ୍ରୀମାଙ୍କ ମତରେ – "ମନୁଷ୍ୟ କେବଳ ଯାହା ବୁଝିପାରେ ତାହାକୁ ସେ ଠିକ୍ ରୂପେ ଜାଣିପାରେ, ଶୁଆପରି ମୁଖସ୍ଥ କରିଥିବା ବସ୍ତୁ କ୍ରମେକ୍ରମେ ଝାପ୍‌ସା ହୋଇ ଶେଷରେ ଉଭେଇ ଯାଏ ।" ଅତଏବ ଆନୁଷ୍ଠାନିକ ଶିକ୍ଷା ମାଧ୍ୟମରେ ସମ୍ବାଦ ସଂଗ୍ରହ, ଅନ୍ୟ ଛାତ୍ରମାନଙ୍କ ଦ୍ୱାରା ଭଲରେ ପ୍ରଭାବିତ, ଶିକ୍ଷକମାନଙ୍କର ଦିଗ୍‌ଦର୍ଶନ ଓ ଉତ୍ସାହ ଇତ୍ୟାଦି କର୍ମ ସଂପାଦିତ ହୋଇଥାଏ ।

ଅଣଆନୁଷ୍ଠାନିକ ଶିକ୍ଷା କଥା ଏଥର ଦେଖିବା ଯାହାର ଭୂମିକା ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆଲୋଚନାଚକ୍ର, ସଭାସମିତି, କର୍ମଶାଳା, ପ୍ରବଚନ, ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରଭୃତି ଏହାର ଅନ୍ତର୍ଭୁକ୍ତ । ଭାଷଣ ପାଇଁ ଭାଷଣ ନୁହେଁ, ଅନୁଭବ ପାଇଁ ଭାଷଣ ଅଭିପ୍ରେତ ହେବା ବିଧେୟ । ଶ୍ରୋତାକୁ ସକାରାତ୍ମକ ଚିନ୍ତାଧାରାରେ ଅନୁପ୍ରାଣିତ କରିବା ପାଇଁ ଏହିସବୁ ଅଭିପ୍ରେତ ହେବା ଉଚିତ । ଦେଶାତ୍ମବୋଧ, ଜାତୀୟତାବୋଧ, ବିଶ୍ୱବୋଧ ସର୍ବୋପରି ମାନବିକ ମୂଲ୍ୟବୋଧ ସଂପର୍କରେ ଯଥେଷ୍ଟ ଶିକ୍ଷା ଏହା ମାଧ୍ୟମରେ ହୋଇଥାଏ । ନାଟକଟିଏ ଦେଖି ମୋହନ ଦାସ କେତେ ପ୍ରଭାବିତ ହୋଇଥିଲେ । ଶ୍ରବଣ କୁମାର ଚରିତ୍ରଭିତ୍ତିକ ନାଟକ ତାଙ୍କ ଜୀବନଧାରା ବଦଳାଇ ଦେଇଥିଲା । କେବଳ ମହାତ୍ମାଗାନ୍ଧି ନୁହନ୍ତି, ଏହିପରି କେତେ ମହାପୁରୁଷଙ୍କର

ଜୀବନଧାରା ପ୍ରଭାବିତ ହୋଇଛି ଏଇ ଅଣଆନୁଷ୍ଠାନିକ ଶିକ୍ଷା ମାଧ୍ୟମରେ । ଅତଏବ ଏଇ ଶିକ୍ଷାର ମଧ୍ୟ ଯଥେଷ୍ଟ ଆବଶ୍ୟକତା ରହିଛି ।

ସର୍ବୋପରି ଆବଶ୍ୟକ ଏକ ମାନସିକତାର ଅର୍ଥାତ ଶିଖିବାର ଇଚ୍ଛାର ବା ଜାଣିବାର ଇଚ୍ଛାର । ଜିଜ୍ଞାସା ନ ଥିଲେ ଯେତେ ଶିକ୍ଷାର ସୁବିଧା ଥିଲେ ହେଁ ଶିଖିବା ସମ୍ଭବ ହୁଏ ନାହିଁ, କେବଳ ପରୀକ୍ଷା ପାଇଁ ପାଠଘୋଷିବା ଓ ପରୀକ୍ଷାରେ ପାଠ ଲେଖି ଡିଗ୍ରୀ ପାଇବା ସାର ହୁଏ । ଶିକ୍ଷାପ୍ରାପ୍ତ ହେବା ଅଥବା ଶିକ୍ଷିତ ହେବା ସମ୍ଭବ ହୁଏ ନାହିଁ । ଘରେ ଭଲ ଶିକ୍ଷା ଥିଲେ ଜଣେ ତାହା ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ । ମାତ୍ର ଯଦି ଜଣେ ଆଦୌ ଇଚ୍ଛା କରିବ ନାହିଁ, ଗ୍ରହଣ କରିବା ପାଇଁ ତେବେ ଉପାୟ କିଛି ନାହିଁ । ପାତ୍ର ଯଦି ପ୍ରସ୍ତୁତ ନଥିବ ତେବେ ପାଣିକୁ ଧରି ରଖିବା ସମ୍ଭବ ହେବ ନାହିଁ । ଘରୁ ପିଲାଟିଏ ଭଦ୍ର ବ୍ୟବହାର ମାର୍ଜିତ ରୁଚି ଶିଖିବା ଦରକାର । ଜୀବନରେ ଏହାର ଆବଶ୍ୟକତା ସର୍ବାପେକ୍ଷା ଅଧିକ । ଶ୍ରୀମାଙ୍କ ମତରେ – ''ଭଦ୍ର ବ୍ୟବହାରର ପ୍ରୟୋଜନ ଉପରେ ମୁଁ ସବୁବେଳେ ଗୁରୁତ୍ୱ ଦେଇଆସିଛି । ରାସ୍ତାରେ ବୁଲୁଥିବା ଛତରା ପିଲାଙ୍କ ପରି ବ୍ୟବହାର ଦେଖାଇବାରେ କୌଣସି ବାହାଦୂରୀ ନାହିଁ ବୋଲି ମୁଁ ବିଚାର କରୁଛି ।''

ଶିକ୍ଷା ଏପରି ଏକ କଥା ଯାହା ବ୍ୟକ୍ତିରୁ ବ୍ୟକ୍ତି ପର୍ଯ୍ୟନ୍ତ ପ୍ରସରି ଯାଇପାରେ । ଜଣେ ଶିଖିଲେ ସେ ଆଉ ଜଣକୁ ଶିଖାଇଦେଇପାରେ । ଜଣେ ବୁଝିଲେ ସେ ଆଉ ଜଣକୁ ବୁଝାଇ ଦେଇପାରେ । ଗୋଟିଏ ଦୀପଜଳିଲେ ସେହି ଦୀପଶିଖାରୁ ଆଉ କେତେ କେତେ ଦୀପ ପ୍ରଜ୍ୱଳିତ ହୋଇପାରେ ।

ଅତଏବ ବ୍ୟକ୍ତିଟିଏ ଚାହିଁଲେ ନିଜେ ବଦଳିପାରିବ । ନିଜ ଭାଗ୍ୟକୁ ନିୟନ୍ତ୍ରଣ କରିପାରିବ । ସଚେତନତା ମାଧ୍ୟମରେ ସମସ୍ୟାର ପରିମାଣକୁ ହ୍ରାସ କରିପାରିବ ଓ ତଥାପି ଆସୁଥିବା ସମସ୍ୟାର ସମାଧାନ କରିପାରିବ । ଭଦ୍ର ବ୍ୟବହାର, କଥା କହିବାର କଳା, ସ୍ଥାନ, କାଳ, ପାତ୍ର ବିଚାରରେ ଚାଲିଚଳନ, ଜୀବନକୁ ବାସ୍ତବତା ଦିଗରୁ ପର୍ଯ୍ୟବେକ୍ଷଣ ଇତ୍ୟାଦି ମାଧ୍ୟମରେ ପୂର୍ଣ୍ଣତା ଆସେ ଜୀବନରେ । ବ୍ୟକ୍ତି ଜୀବନରେ ପୂର୍ଣ୍ଣତା ଆସିଲେ ବିଶ୍ୱଜୀବନରେ ତାହାର ପ୍ରଭାବ ପଡ଼େ । କାରଣ ବ୍ୟକ୍ତି ଜୀବନ ହେଉଛି ବିଶ୍ୱଜୀବନର ଏକ ଏକକ । ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଏହା ହିଁ କହେ ।

ସୁତରାଂ ମନୁଷ୍ୟର ପ୍ରକୃତି ଶାନ୍ତ, ସଂଯତ, ସଂହତ, ଶୃଙ୍ଖଳିତ, ପ୍ରଶସ୍ତ, ମାର୍ଜିତ ହେଲେ ଆଜିର ବାତାବରଣ ବଦଳିଯିବ । ପୃଥିବୀ ପରିଣତ ହେବ ସ୍ୱର୍ଗରେ । ଜୀବନ ହେବ ଦିବ୍ୟତ୍ୱର ଜୀବନ । ରହିବନି ଆଜିପରି ଅମାନବିକତାର ନାରକୀୟ ଲୀଳାର ବିଭୀଷିକା । ଆସିବ ମାନବିକ ମୂଲ୍ୟବୋଧର ମୁଗ୍ଧ ମଧୁର ବାତାବରଣ । ପୃଥିବୀ ହେବ ଦିବ୍ୟତ୍ୱର ଲୀଳାନଗରୀ, ଅନୁପମ ରୁଚିଶୀଳତାର କ୍ରୀଡ଼ା ଶିବିର ।

□□

# ନାସ୍ତି ନୁହେଁ ଅସ୍ତି

ଆମ ଜୀବନରେ ଯେତେ କଥା ଅଛି, ତାହାର ଏକ ଅସ୍ତି ଦିଗ ରହିଛି, ପୁଣି ଏକ ନାସ୍ତି ଦିଗ ରହିଛି । ତା'ର କାରଣ ହେଉଛି ଦ୍ୱୈତତତ୍ତ୍ୱ ଦ୍ୱାରା ମଣିଷର ମନ ନିର୍ମିତ ହୋଇଛି । ଦୁଇଟି କଥା ଯଥା-ସୁଖ ଓ ଦୁଃଖ, ସୁବିଧା ଓ ଅସୁବିଧା, ଭଲ ଓ ମନ୍ଦ, ଲାଭ ଓ କ୍ଷତି, ଶାନ୍ତି ଓ ଅଶାନ୍ତି, ଜ୍ଞାନ ଓ ଅଜ୍ଞାନ ଏବଂ ଭୁଲ ଓ ଠିକ୍ ଇତ୍ୟାଦି ଇତ୍ୟାଦି କଥାକୁ ନେଇ ଜୀବନ ସଞ୍ଚାଳିତ ହେଉଛି ।

ପ୍ରତ୍ୟେକ କଥାର ଭଲ ଦିଗ ଏବଂ ମନ୍ଦ ଦିଗ ରହିଛି । ଭଲ ଓ ମନ୍ଦ ଦିଗଟି ବ୍ୟବହାର ବିଧି ଉପରେ ନିର୍ଭର କରେ । ଉଦାହରଣ ସ୍ୱରୂପ ଧନର କଥା ଦେଖାଯାଉ । ବାସ୍ତବରେ ଧନ ଏକ ଶକ୍ତି । ଆମେ ବଞ୍ଚୁଥିବା ଜୀବନ ପାଇଁ ଏହା ଏକାନ୍ତ ଆବଶ୍ୟକ । ମାତ୍ର ଏହାର ଆଧିକ୍ୟ ଆମକୁ ଯେପରି ଅସୁବିଧାରେ ପକାଏ, ଏହାର ଅସଦ୍ ବ୍ୟବହାର ଆମକୁ ସେପରି ଅସୁବିଧାରେ ପକାଏ, ବାଟ ବାଉଳା କରେ । ଧନ ଅଧିକ ହେଲେ ଆହୁରି ଅଧିକ ଲୋଭ ବଢ଼େ, କାମନାର ଅଗ୍ନିଶିଖା ଅଧିକ ଉଚ୍ଚତାକୁ ଉଠେ । ନିଜକୁ ଅନ୍ୟ ଠାରୁ ବଡ଼ ବୋଲି ଭାବିବାକୁ ଇଚ୍ଛା ହୁଏ । କ୍ଷମତା ପାଇବାର ଲାଳସା ବଢ଼େ, ଅନ୍ୟମାନଙ୍କୁ ହୀନ ଦୃଷ୍ଟିରେ ଦେଖିବାକୁ ଇଚ୍ଛା ହୁଏ । ଅର୍ଥର ଅସଦ୍ ବ୍ୟବହାର ଦ୍ୱାରା ଅନ୍ୟର କ୍ଷତି ଚିନ୍ତା ଆସେ । ଅନ୍ୟକୁ ନିଜର ପଦାନତ କରି ରଖିବାକୁ ଇଚ୍ଛା ହୁଏ ଏବଂ ଯିଏ ହାତମୁଠାକୁ ନ ଆସିଲା ତାକୁ ତଳିତଳାନ୍ତ କରିଦେବାକୁ ମନରେ ଚିନ୍ତା ଆସେ । ଏପରି ଲୋକ ନିଜେ ଶାନ୍ତି ପାଆନ୍ତି ନାହିଁ କି ଅନ୍ୟକୁ ଶାନ୍ତି ଦେଇପାରନ୍ତି ନାହିଁ । ଅବଶ୍ୟ ଏହା ଧନର ଦୋଷ ନୁହେଁ, ମନର ଦୋଷ । ଧନ ଆଦୌ କ୍ଷତିକାରକ ନୁହେଁ ।

ଏହାର ଅପବ୍ୟବହାର ହେଉଛି କ୍ଷତିକାରକ । ଧନ ସହିତ ଜ୍ଞାନ ଥିଲେ ଏପରି ଅବସ୍ଥା ଆସେ ନାହିଁ, ଜ୍ଞାନ ନ ଥିଲେ ଏପରି ଅବସ୍ଥା ସ୍ୱତଃ ଆସିଥାଏ ।

କ୍ଷମତା ମଧ୍ୟ ଧନ ପରି ଏକ ବିଶିଷ୍ଟ ଉପାଦାନ । କ୍ଷମତା ବଳରେ ଜଣେ ଦେଶ ଓ ଜାତିର ତଥା ଅନ୍ୟ ବ୍ୟକ୍ତିମାନଙ୍କର ଅନେକ କଲ୍ୟାଣ କରିପାରେ, ଉପକାର କରିପାରେ ମାତ୍ର କ୍ଷମତାର ଅପବ୍ୟବହାର ଦ୍ୱାରା ଦେଶ ଜାତି ତଥା ବ୍ୟକ୍ତିମାନଙ୍କର ଅଶେଷ କ୍ଷତି ଘଟାଇପାରେ । ଯଥାର୍ଥ ନେତୃତ୍ୱ ଓ ଦିଗଦର୍ଶନ ନିମନ୍ତେ କ୍ଷମତାର ସଦ୍‌ବ୍ୟବହାର ଅତ୍ୟନ୍ତ ଜରୁରୀ । ମାତ୍ର କ୍ଷମତା ସହିତ ଅହଂକାର ମିଶିଗଲେ ତାହା ପୂତିଗନ୍ଧମୟ ହୋଇଯାଏ, ଟୋପାଏ ବିଷରେ ଅମୃତହାଣ୍ଡି ବିଷାକ୍ତ ହୋଇଯାଏ ।

ବର୍ତ୍ତମାନ ବିଦ୍ୟାର କଥା ଦେଖାଯାଉ । ବିଦ୍ୟା ଆଣେ ବିନୟ ଭାବ, ଏହା ଶାସ୍ତ୍ରମାନଙ୍କରେ କୁହାଯାଇଛି । ବିଦ୍ୟା ଯୋଗୁଁ ବ୍ୟକ୍ତିର ବ୍ୟକ୍ତିତ୍ୱ ଓ ମହତ୍ତ୍ୱ ବଢ଼େ । ବିଦ୍ୱାନ ବ୍ୟକ୍ତି ସର୍ବତ୍ର ପୂଜା ପାଏ, ଦେଶ ବିଦେଶରେ ସମ୍ମାନିତ ହୁଏ । ବିଦ୍ୟା ବଢ଼ାଏ ଚେତନା, ଜୀବନ ଓ ଜଗତ ସମ୍ବନ୍ଧରେ ଦିଏ ଯଥାର୍ଥ ଦୃଷ୍ଟିଭଙ୍ଗୀ । ବିଦ୍ୟାବଳରେ ଜଣେ ସମାଜକୁ ବେଶ୍ କିଛି ଭଲ କଥା ଦେବା ପାଇଁ ସମର୍ଥ ହୁଏ । ବିଦ୍ୟାର ସଦ୍ ବ୍ୟବହାର ସମୃଦ୍ଧ କରେ ପରିବେଶକୁ । ପୁଣି ଏହି ବିଦ୍ୟା ହୁଏ କ୍ଷତିକାରକ ଯଦି ଏହାର ଅସଦ୍ ବ୍ୟବହାର କରାଯାଏ । ଅସଦ୍ ବ୍ୟବହାର କରାଯାଏ ସେତେବେଳେ ଯେତେବେଳେ ଏହା ସହିତ ମିଶିଯାଏ ଗର୍ବ, ଅହଂକାର ଔଦ୍ଧତ୍ୟ ଓ ଆତ୍ମମ୍ଭରିତା । ସୁନ୍ଦର ସଜଫୁଲଟି କୀଟକଟା ହୋଇ ଅସୁନ୍ଦର ହୋଇଯାଏ ।

ବୁଦ୍ଧି କ୍ଷେତ୍ରରେ ମଧ୍ୟ କଥାଟି ସେହିପରି । ବୁଦ୍ଧି ବଳରେ ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ଆଦି ଘଟିଥାଏ । ଅଜଣାକୁ ଜଣାଏ ବୁଦ୍ଧି, ଅଶୁଣାକୁ ଶୁଣାଏ ବୁଦ୍ଧି । ବୁଦ୍ଧିର ବିକାଶ ହିଁ ଆଜିର ଭୌତିକ ସମୃଦ୍ଧିର ମୂଳମନ୍ତ୍ର । ବୁଦ୍ଧିରୁ ଆସେ ଜିଜ୍ଞାସା, ଜିଜ୍ଞାସାରୁ କଳ୍ପନା, କଳ୍ପନାରୁ ବାସ୍ତବତା ଓ ବାସ୍ତବତାରୁ ସମୃଦ୍ଧି । ଏଇ ବୁଦ୍ଧି ମଣିଷକୁ ପକ୍ଷୀ ପରି ଆକାଶରେ ଉଡ଼ାଇ ପାରିଛି, ମାଛ ପରି ପାଣିରେ ବୁଡ଼ିବାର ସୁଯୋଗ ଦେଇଛି । ପୁଣି ସାରା ପୃଥିବୀକୁ ଗୋଟାଇ ଆଣି ମଣିଷର ହାତରେ ଭେଟି ଦେଇଛି । କମ୍ ସମୟରେ ବହୁ ଦୂରତ୍ୱକୁ ଅତିକ୍ରମ କରାଇ ଦେଇପାରୁଛି । ଦୂରରେ ଥିବା ଆତ୍ମୀୟମାନଙ୍କର ଦର୍ଶନ କରାଇ ପାରୁଛି । ଏ ତ ବୁଦ୍ଧିର ସକାରାତ୍ମକ ପ୍ରୟୋଗ, ଯାହା ବନ୍ଦନୀୟ ଓ ଅଭିନନ୍ଦନୀୟ । ଏହି ବୁଦ୍ଧିର ନକାରାତ୍ମକ ପ୍ରୟୋଗ ଫଳରେ ସୁଷମାର ନୀଳମଣି ତୋରଣ ଘଡ଼ିକରେ ଭାଙ୍ଗି ଧ୍ୱସ୍ତବିଧ୍ୱସ୍ତ ହୋଇଯାଉଛି । ପରମାଣୁ ବୋମା ଓ ଉଦ୍‌ଯାନ ବୋମାର ଆତଙ୍କ ପୃଥିବୀକୁ ଥରାଇ ଦେଉଛି । ଆତଙ୍କବାଦ ହୋଇଛି ଆଜିର ପୃଥିବୀ ପାଇଁ ବିରାଟ ଆତଙ୍କ । ଉଗ୍ରବାଦର କିଳିକିଳା ନାଦରେ ପାଣିପବନ ସ୍ତବ୍ଧ । ତଳେ ମେଳା ମଉଛବର ଯାନ୍ତ୍ରିକ କୋଳାହଳ,

ଉପରେ ଆତଙ୍କବାଦୀର ଖଞ୍ଜା ଜୀବାଣୁ ବୋମା, ଟିଫିନ ବୋମା, ସମୟ ବୋମା ଆଉ ମଝିରେ ଅନିଶ୍ଚିତତାର ଆସନରେ ବସିଥିବା ଅସହାୟ ମଣିଷ । ସର୍ବନାଶରୁ ମୁକୁଳିବାର ବାଟ ଯଥାର୍ଥରେ ମିଳୁ ନାହିଁ ଯଦିବା ବହୁବାର ପୃଥିବୀର ବିଭିନ୍ନ ଦେଶରେ ଏଇ ବାଟ ସମ୍ପର୍କରେ ଆଲୋଚନା ଅନୁଷ୍ଠିତ ହେଉଛି । ଆତଙ୍କବାଦର ମୁକାବିଲାଜନିତ ନିରାକରଣ ସମ୍ବନ୍ଧରେ ପ୍ରାୟ ସବୁଦେଶ ସମସ୍ୱରରେ ରାଜି ହେଉଛନ୍ତି ମାତ୍ର ଫଳ କିଛି ମିଳୁନାହିଁ । କେବଳ ଆତଙ୍କବାଦ ନୁହେଁ, ସାଧାରଣ ବାତାବରଣରୁ ମଧ୍ୟ କ୍ରୋଧ, ହିଂସ୍ରତା, ଉଗ୍ରତା, କଳହ, ଠକାମି, ଧର୍ଷଣ, ଲୁଣ୍ଠନ, ହତ୍ୟା ପ୍ରଭୃତି ବିଭୀଷିକା ଦୂର ହେଉନାହିଁ । ଦୂର ହେବା ତ ଦୂର କଥା, ବେଳକୁ ବେଳ ବଢୁଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଯଶ ଓ ପ୍ରଶଂସାର କଥା ସେହିପରି । ଯଶ ପ୍ରଶଂସାର ଅସଲ ମହତ୍ତ୍ୱ ହେଉଛି ଅନ୍ୟମାନଙ୍କର ସଶ୍ରଦ୍ଧ ସ୍ୱୀକୃତି । ଏହା ବ୍ୟକ୍ତିକୁ ଆଦର୍ଶ ସ୍ଥାନୀୟ କରିଥାଏ । ଯଶ ପ୍ରଶଂସାର ମୁକୁଟ ପିନ୍ଧିଲେ ଆଉ ଭୁଲ୍ କାର୍ଯ୍ୟ କରିବାକୁ ମନ ବଳେ ନାହିଁ । ଅନ୍ୟପକ୍ଷରେ ଜଣେ ଯଦି ସକାରାତ୍ମକ ନ ହେଇ ନକାରାତ୍ମକ ହୁଏ ଅର୍ଥାତ ଗର୍ବୀ ଅହଂକାରୀ ହୋଇ ନିଜକୁ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ବୋଲି ବିଚାରେ, ତେବେ ସେ ବାସ୍ତବରେ ବଡ଼ ନ ହୋଇ ଛୋଟ ହୋଇଯାଏ । ନିଜ ଆସନରୁ ସେ ନିଜେ ଖସି ପଡ଼େ । ଏ କଥାରେ ଯଶ ପ୍ରଶଂସାର ଦୋଷ ନ ଥାଏ, ଥାଏ ଅହଂକାରର ଦୋଷ ।

ଜୀବନରେ ଦୁଃଖର କଥା ବିଚାରକୁ ନିଆଯାଉ । ଦୁଃଖ ପ୍ରତ୍ୟେକଙ୍କ ଜୀବନରେ ଅଛି । କୌଣସି ନା କୌଣସି ପ୍ରକାରେ ଦୁଃଖ ଭୋଗି ନ ଥିବା ଲୋକ ଏଇ ପୃଥିବୀରେ ନାହାନ୍ତି । ତଫାତ ଏତିକି ଯେ ଅନ୍ୟ କାହାର ଦୁଃଖର ସୀମା ଓ ଗଭୀରତା ଆମେ ଜାଣିନଥାଉ । ନିଜ ଦୁଃଖ ଯେ ସମସ୍ତଙ୍କଠାରୁ ଅଧିକ, ଏକଥା ଆମେ ଭାବିଥାଉ । ଦୁଃଖ ପ୍ରକୃତରେ ଦିଏ ଶକ୍ତି ଓ ସାହସ ଆଗକୁ ଯିବା ପାଇଁ । ଦୁଃଖ ବଢ଼ାଏ ସହନଶକ୍ତି, ନିଜର ପରିସ୍ଥିତିକୁ ମୁକାବିଲା କରିବା ପାଇଁ ଦିଏ ମନରେ ବଳ । ତେବେ କେତେ ଲୋକଙ୍କୁ ଦୁଃଖ ଭାଙ୍ଗି ଦିଏ ଏବଂ ଆଉ କେତେକ ଲୋକ ଦୁଃଖକୁ ଭାଙ୍ଗି ଦିଅନ୍ତି । ଦୁଃଖକୁ ଭାଙ୍ଗି ଦେବା ବ୍ୟକ୍ତିମାନେ ହିଁ ଯଥାର୍ଥରେ ନିଦା ମଣିଷ । ସେମାନେ ଅନ୍ୟମାନଙ୍କ ଭିତରେ ଅନନ୍ୟ । ଦୁଃଖକୁ ଡରିଗଲେ ଦୁଃଖ ଡରାଏ, ମାତ୍ର ଦମ୍ଭର ସହିତ ସମ୍ମୁଖୀନ ହେଲେ ଦୁଃଖ ନଇଁଯାଏ ଏବଂ ଦେଇଯାଏ ବହୁ ଗଭୀର ଅନୁଭୂତି ଓ ବାସ୍ତବ ଅଭିଜ୍ଞତା । ସେଇ ଅନୁଭୂତି ଓ ଅଭିଜ୍ଞତା ବଳରେ ସେଇ ବ୍ୟକ୍ତିମାନେ ହୋଇଯାଆନ୍ତି ଚିନ୍ତାସିଦ୍ଧ ଓ କେତେକାଂଶରେ ବାକ୍‌ସିଦ୍ଧ । ସେମାନଙ୍କ ଠାରୁ ଉପଦେଶ ଗ୍ରହଣୀୟ । ସେମାନଙ୍କୁ ଲୋକେ ଦୁଃଖୀ ବୋଲି କହିପାରନ୍ତି, ସେମାନେ ମଧ୍ୟ ବେଳେବେଳେ ନିଜକୁ ଦୁଃଖୀ ବୋଲି ଭାବିପାରନ୍ତି ମାତ୍ର ଦୁଃଖ ଓ ବିପଦର ଲହରୀକୁ ଭାଙ୍ଗି ଦେଇଥିବାରୁ ସେମାନେ ଯେ ପ୍ରକୃତରେ ବୀର, ଏ

କଥା କହିବାରେ କୁଣ୍ଠା ନ ରହିବା ଉଚିତ । ଏ କଥା ପ୍ରତିପାଦ୍ୟ ଯେ ପ୍ରତ୍ୟେକ କଥାର ଏକ ଆଲୋକିତ ଦିଗ ଅଛି, ପୁଣି ଏକ ଅନ୍ଧକାରାଚ୍ଛନ୍ନ ଦିଗ ଅଛି । ଏ କଥା ସତ୍ୟ ଯେ ଯେଉଁ କଥା ପ୍ରାଣ ବଞ୍ଚାଏ, ସେହି କଥାର ଅପବ୍ୟବହାର ପ୍ରାଣ ନେଇଯାଇପାରେ । ଉଦାହରଣସ୍ୱରୂପ ଚିକିତ୍ସା ବିଜ୍ଞାନର କଥାକୁ ବିଚାର କରାଯାଉ । ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ବିଶେଷତଃ ଔଷଧ ପ୍ରୟୋଗ କ୍ଷେତ୍ରରେ, ଯେଉଁ ଔଷଧ ପ୍ରାଣ ରକ୍ଷା କରେ, ସେହି ଔଷଧର ଅପପ୍ରୟୋଗ ବା ଅଧିକ ପ୍ରୟୋଗ ଜୀବନ ହାନି ଘଟାଇଥାଏ । ବାହାର ଜଗତରେ ମଧ୍ୟ ଏପରି ଦୃଶ୍ୟ ଦେଖିବାକୁ ମିଳେ । ପାଣି ନ ହେଲେ ପଦ୍ମଫୁଲ ଫୁଟେ ନାହିଁ, ପୁଣି ସେହି ପାଣି ଅଧିକ ହେଲେ ପଦ୍ମବନ ସଢ଼ିଯାଏ । ସେହି ପାଣି ପୁଣି ଶିଶିର ଆକାରରେ ପଡ଼ି ପଦ୍ମଫୁଲକୁ ପୋଡ଼ିଦିଏ ।

ଅତଏବ ଜୀବନରେ ମିଳୁଥିବା ଓ ମିଳିଥିବା ବହୁ କଥା ତଥା ବହୁ ପରିସ୍ଥିତିର ଯଥାର୍ଥ ବ୍ୟବହାର କରି ଜାଣିଲେ ଚେତନା ବଢ଼େ, ବହୁ ଲାଭ ହୁଏ ଆଉ ବ୍ୟବହାର କରି ନ ଜାଣିଲେ ଚେତନା କମିଯାଏ ଓ ବହୁ ପ୍ରକାରେ କ୍ଷତି ହୁଏ । ଜୀବନର ସାରସତ୍ତା ଓ ସାର୍ଥକତା ହେଉଛି ଜୀବନର ଅଭିଜ୍ଞତା । ସବୁକଥାର ସଦ୍‌ବ୍ୟବହାର ଫଳରେ ଯେଉଁ ଅନୁଭୂତି ଆସେ, ତାହା ଜୀବନକୁ ଧନ୍ୟ କରେ ଓ ପୂର୍ଣ୍ଣ କରେ । ସେପରି ଜୀବନ ହେଉଛି ଯଥାର୍ଥ ଜୀବନ ଯାହା ଦମ୍ଭ ଧରି ଛିଡ଼ା ହୋଇଥାଏ ଓ ଅନ୍ୟକୁ ଦମ୍ଭ ଦେବାକୁ ହାତ ବଢ଼ାଇଥାଏ । ସବୁ କଥାର ଅସ୍ତିଦିଗର ଆଲୋକରେ ସେ ଆଲୋକିତ ହୋଇଥାଏ ଏବଂ ବହୁ ବାଟବଣା ନାବିକଙ୍କ ପାଇଁ ବତୀଘର ସଦୃଶ ହୋଇଥାଏ । ସେଇ ଜୀବନର ଜୟ ହେଉ ।



# ଭଗବାନ କିଏ ଓ କେଉଁଠି ?

ଭଗବାନ ଏକ ଅନୁଭବ, ସେ ଅନୁମାନ ନୁହନ୍ତି ବା କଳ୍ପନା ନୁହଁନ୍ତି । ତେବେ ଅନୁମାନ ବା କଳ୍ପନା ମାଧ୍ୟମରେ ତାଙ୍କର ସାମାନ୍ୟ ଆଭାସ ମିଳିଥାଏ । ଏଇ ଅନୁଭବ ହେଉଛି ସୂକ୍ଷ୍ମସ୍ତରର । ସ୍ଥୂଳସ୍ତର ଠାରୁ ଏହାର ଦୂରତ୍ୱ ବହୁତ ବେଶୀ । ଭଗବାନ ଏକ ସୂକ୍ଷ୍ମ, ବିରାଟ, ଶକ୍ତିଶାଳୀ, ତେଜଦୀପ୍ତ ଓ ସୁକୁମାର ସ୍ଥିତି । ସେ ଅଦୃଶ୍ୟ ଭାବରେ ରହି ସବୁ କିଛି କ୍ରିୟା କରିବାକୁ ସମର୍ଥ ତାଙ୍କ ଇଚ୍ଛାନୁସାରେ । ସେ ପୁଣି ଇଚ୍ଛା ନ କଲେ କିଛି ଘଟେ ନାହିଁ, ପୁଣି ଇଚ୍ଛା ମାତ୍ରକେ ଆଉ ପ୍ରକାରେ ଘଟଣାକୁ ଘଟାଇ ପାରନ୍ତି । ତାଙ୍କ ଯୋଜନା ଅତ୍ୟନ୍ତ ସୁଚିନ୍ତିତ, ସୁବିନ୍ୟସ୍ତ ଓ ସୁନିୟନ୍ତ୍ରିତ । କେହି ତାଙ୍କ କ୍ରିୟାକୁ ହଠାତ ଜାଣିପାରନ୍ତି ନାହିଁ । ସେ ଆବଶ୍ୟକ ସମୟ ନିଅନ୍ତି ଓ ଯଥାଯୋଗ୍ୟ ଭାବରେ ଘଟଣାକୁ ଘଟାନ୍ତି ଯଦି ତାଙ୍କ ଉପରେ ଘଟଣାଟିକୁ ଛାଡ଼ି ଦିଆଯାଇଥାଏ ଏବଂ ତାଙ୍କ ଉପରେ ନିର୍ଭର କରି ରହିବାକୁ ହୋଇଥାଏ । ତାଙ୍କ ଉପରେ ଭରସା କରି ଘଟଣାମାନଙ୍କୁ ଛାଡ଼ି ଦେଲେ ସେ ଯାହା ଘଟିବା ଆମ ପାଇଁ ଏକାନ୍ତ ଆବଶ୍ୟକ, ତାହା ହିଁ ଘଟାନ୍ତି । ସେ ଘଟଣାର ଉପଯୋଗିତା ଯେ ଆମ ପାଇଁ ଥିଲା ଓ ରହିଛି – ଏହା ବହୁ ପଛରେ ଜଣାପଡ଼େ ।

ଆମ ମନ ଭଗବାନଙ୍କୁ ଧରି ରଖିପାରେ ନାହିଁ, ଯେମିତି ଜାଲଟିଏ ସମୁଦ୍ରକୁ ଧରି ରଖି ପାରେ ନାହିଁ । ତେଣୁ ତ କୁହାଯାଇଛି ଯେ ସେ ହେଉଛନ୍ତି ଅବାଙ୍ ମାନସ ଗୋଚର । ମନର ମାପରେ ଭଗବାନଙ୍କୁ ମାପି ହୁଏ ନାହିଁ । ଆମ ମନ ଏତେ ସାନ, ସୀମିତ ଯେ ତହିଁରେ ଏତେ ବିଶାଳ, ବିରାଟ ଭଗବତସତ୍ତାଙ୍କୁ ଧରି ରଖିବା ସମ୍ଭବ ନୁହେଁ । ଅତଏବ ଭଗବାନ ଆଦୌ ବଚନର ବିଷୟ ନୁହନ୍ତି, ଅନ୍ତରର ଅନୁଭବର ବିଷୟ–ଆଇନଷ୍ଟାଇନଙ୍କ

ମତରେ ଭଗବାନ ସିଏ ଯିଏ ସମଗ୍ର ବିଶ୍ୱକୁ ପରିଚାଳନା କରନ୍ତି, ସମସ୍ତଙ୍କ ଦାୟିତ୍ୱ ନିଅନ୍ତି । ଏକଥା ସହିତ ଆଉ ଟିକିଏ ଅଧିକ କଥା ଯୋଡ଼ି କୁହାଯାଇପାରେ ଯେଉଁ ଭଗବାନ ହେଉଛନ୍ତି ସିଏ ଯିଏ ଏକ ସମୟରେ ସମଗ୍ର ବିଶ୍ୱକୁ ଆବ୍ରହ୍ମସ୍ତମ୍ଭ ସମସ୍ତଙ୍କୁ ଦେଖିପାରନ୍ତି ଓ ଏକ ସମୟରେ ସମସ୍ତଙ୍କ କଥା ଶୁଣିପାରନ୍ତି । କେଡ଼େ ବିଶାଳ ତାଙ୍କର ଆଖି, କେତେ ବିଶାଳ ତାଙ୍କର କାନ, ସତରେ କଳନା କରିହେବ ନାହିଁ । କାନ ଯାହାର ଏତେ ବିଶାଳ, ଆଖି ଯାହାର ଏତେ ବିରାଟ ତାଙ୍କର ମନ କେତେ ବଡ଼ ହୋଇଥିବ ତାଙ୍କର ଜ୍ଞାନ ଓ ଚେତନା କେତେ ବିରାଟ ହୋଇଥିବ, ତାହାର କଳ୍ପନା ଆମେ କରିପାରିବା ନାହିଁ । ତାଙ୍କର ତେଜ କେତେ ଅଧିକ ହୋଇଥିବ ଆମେ ତାହା ଭାବିପାରିବା ନାହିଁ । ସହସ୍ର ସୂର୍ଯ୍ୟ ଏକାବେଳକେ ଆକାଶରେ ବିରାଜିତ ହେଲେ ଯେତିକି ତେଜ ବା ଆଲୋକ ହେବ ଭଗବାନଙ୍କର ଆଲୋକ ସହ ସମାନ ବା ହୋଇପାରେ ବୋଲି ଶ୍ରୀମଦ୍‌ଭଗବଦ୍‌ଗୀତାର ଏକାଦଶଅଧ୍ୟାୟରେ କୁହାଯାଇଛି । ସେ ତେଜସ୍କ୍ରିୟତା ଅବର୍ଣ୍ଣନୀୟ । କେତେ ଶକ୍ତି ତାଙ୍କର, ଯେଉଁ ଶକ୍ତିର ପ୍ରଭାବରେ ଗ୍ରହମାନେ ଘୂରୁଛନ୍ତି, ଋତୁଚକ୍ର ଆବର୍ତ୍ତିତ ହେଉଛନ୍ତି, ଦିନରାତି ସମ୍ଭବ ହେଉଛି । ସେ ଏ ଜଗତରେ ପରିଣତ ହୋଇଛନ୍ତି । ଗ୍ରହରେ ରୂପାୟିତ ହୋଇଛନ୍ତି, ଗ୍ରହ ହୋଇ ଘୂରୁଛନ୍ତି ଓ ଗ୍ରହମାନଙ୍କୁ ଘୂରାଉଛନ୍ତି । ସେ ପବନ ହୋଇ ବହୁଛନ୍ତି, ଝରଣା ହୋଇ ଝରୁଛନ୍ତି, ଫୁଲ ହୋଇ ଫୁଟୁଛନ୍ତି, ସମୁଦ୍ରରେ ଲହରୀ ହୋଇ ନାଚୁଛନ୍ତି । କୋଇଲି ହୋଇ ଗାଉଛନ୍ତି, ମେଘ ହୋଇ ଭାସୁଛନ୍ତି ଓ ବର୍ଷୁଛନ୍ତି, ମୟୂର ହୋଇ ମେଘ ଦର୍ଶନରେ ନୃତ୍ୟ କରୁଛନ୍ତି । ସବୁ କିଛି ସେ, ସବୁ ତାଙ୍କର ଲୀଳା, ତାଙ୍କ ବ୍ୟତୀତ ଆଉ କିଛି ନାହିଁ ।

ସେ ଜଡ଼, ସେ ପ୍ରାଣ, ସେ ମନ, ସେ ପୁଣି ଆତ୍ମା । ତାଙ୍କ ସ୍ଥିତିରୁ ସ୍ଥିତି ନାହିଁ, ତାଙ୍କ ଦ୍ୟୋତିରୁ ଜ୍ୟୋତି ନାହିଁ, ତାଙ୍କ ଆନନ୍ଦରୁ ଆନନ୍ଦ ନାହିଁ, ତାଙ୍କ ଚିନ୍ତାରୁ ଚିନ୍ତା ନାହିଁ, ତାଙ୍କ କୃପାରୁ କୃପା ନାହିଁ, ତାଙ୍କ ଆଶିଷରୁ ଆଶିଷ ନାହିଁ ସର୍ବୋପରି ତାଙ୍କ ପ୍ରେମରୁ ପ୍ରେମ ନାହିଁ । ତାଙ୍କ ପାଖରେ ସାନବଡ଼ ନାହିଁ, ଧନୀ ଗରିବ ନାହିଁ, ଉଚ୍ଚନୀଚ ନାହିଁ, ପାଠୁଆ, ଅପାଠୁଆ, ସମସ୍ତେ ତାଙ୍କର, ସେ ସମସ୍ତଙ୍କର । ସମସ୍ତଙ୍କୁ ସେ ସମାନ ଭାବରେ ଭଲପାଆନ୍ତି । ତାଙ୍କର ପାତର ଅନ୍ତର ନଥାଏ ।

ଏଠାରେ ଆମ ମନରେ ପ୍ରଶ୍ନ ଆସିବ ଯେ ଭଗବାନ ଙ୍କର ଯଦି ପାତର ଅନ୍ତର ନାହିଁ, ତେବେ ସମସ୍ତଙ୍କୁ ସେ ସମାନ ପରିମାଣରେ ସୁଖ ଦେଇ ନାହାନ୍ତି କାହିଁକି, ସୁଖଦୁଃଖରେ ଅସମାନତା ରହୁଛି କାହିଁକି ? ଉତ୍ତରରେ ଏହା କୁହାଯାଇପାରେ ଯେ ଭଗବାନ କାହାର ପାପପୁଣ୍ୟ ଗ୍ରହଣ କରନ୍ତି ନାହିଁ କି କାହାକୁ ସୁଖଦୁଃଖ ପ୍ରଦାନ କରନ୍ତି

ନାହିଁ । ବ୍ୟକ୍ତିର କର୍ମ ତାକୁ ଫଳ ପ୍ରଦାନ କରିଥାଏ । କର୍ମ ନିଜେ ଫଳ ସୃଷ୍ଟି କରିବାରେ ସମର୍ଥ ହୋଇଥାଏ । ଶ୍ରୀମଦ୍‌ଭଗବଦ୍‌ଗୀତାନୁସାରେ-

''ନାଦତ୍ତେ କସ୍ୟ ଚିତ୍ ପାପଂ ନ ଚୈବ ସୁକୃତଂ ବିଭୁଃ
ଅଜ୍ଞାନେନାବୃତଂ ଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତବଃ (୫/୧୫)''

ଅତଏବ ନିଜର କର୍ମଫଳ ବ୍ୟକ୍ତିକୁ ଭୋଗିବାକୁ ପଡ଼େ, ଏଥିରେ ଭଗବାନଙ୍କୁ ଦୋଷ ଦେବା ଉଚିତ ନୁହେଁ । ଭଗବାନଙ୍କୁ ଦୋଷ ଦେବା ଅନୁଚିତ କେବଳ ନୁହେଁ ଅପରାଧ ମଧ୍ୟ । ଅନ୍ୟକୁ ମଧ୍ୟ ଏଥିପାଇଁ ଦୋଷ ଦେବା ଯଥାର୍ଥ ନୁହେଁ । କାରଣ ନିଜେ ନିଜର ଶତ୍ରୁ ବା ବନ୍ଧୁ ଆମେ ହୋଇଥାଉ, ଏକଥା ଶାସ୍ତ୍ରମାନଙ୍କରେ ଉଲ୍ଲେଖ ରହିଛି । ଆମେ ଅପକର୍ମ କଲେ ଆମର ଶତ୍ରୁ ହେବା ଓ ସତ୍‌କର୍ମ କଲେ ଆମର ମିତ୍ର ହେବା । ସବୁ ନିର୍ଭର କରୁଛି ଆମ ଉପରେ । ଅନ୍ୟ ଉପରେ ଦୋଷାରୋପ ନିରର୍ଥକ ।

ଭଗବାନ ଆମକୁ ଦୁଷ୍ଟ, ହିଂସ୍ର, ଲୋଭୀ, କାମୁକ, ସ୍ୱାର୍ଥପର, ଠକ, ପରସ୍ୱହାରୀ କରି ନାହାଁନ୍ତି, ଆମେ ଆମ ନିଜ ଦୁର୍ଗୁଣ ଯୋଗୁଁ ଏପରି ହୋଇଛୁ ଏବଂ ଏହାର ଫଳ ଜନ୍ମ ଜନ୍ମାନ୍ତରେ ଭୋଗ କରୁଛୁ । ଆମ କର୍ମଫଳ ଆମକୁ ହିଁ ଭୋଗିବାକୁ ପଡ଼େ । ତାକୁ ଆଉ କେହି ଭୋଗନ୍ତି ନାହିଁ । ବରଂ କର୍ମଫଳ ଜନିତ ଦୁଃଖ, ବିପଦକୁ ଭଗବାନ ହାଲ୍‌କା କରିଦିଅନ୍ତି ଯଦି ଆସ୍ଥା ଓ ବିଶ୍ୱାସ ସହିତ ତାଙ୍କୁ ଆବାହନ କରାଯାଏ ଓ ଜଣାଇ ଦିଆଯାଏ । ଏପରି ହୁଏ ଯେ ତାଙ୍କ କୃପାବଳରେ ଯେଉଁଠାରେ ଖଣ୍ଡାରେ ଆଘାତ ହେବା କଥା ସେଇଠାରେ ହୁଏତ କଣ୍ଟାଟିଏ ଫୁଟିଯାଇପାରେ । ଅତଏବ କର୍ମଫଳକୁ ସେ ହିଁ ପରିବର୍ତ୍ତନ କରିପାରନ୍ତି । ଶ୍ରୀମାଙ୍କ କଥାରେ - ''ତୁ କ'ଣ ଭଗବାନଙ୍କୁ ଜାତକଠାରୁ ଅଧିକ ଶକ୍ତିଶାଳୀ ହେବାକୁ ଦେବୁ ନାହିଁ ? ଭଗବାନଙ୍କ ନିମନ୍ତେ କୌଣସି ଅପରିବର୍ତ୍ତନୀୟ ଜାତକ ନାହିଁ ।'' ମାଆ ସାରଦା ଦେବୀଙ୍କ କଥା ଏହି ପ୍ରସଙ୍ଗରେ ମନେପଡ଼େ, ସେ କହନ୍ତି, ''କର୍ମଫଳ ଅବଶ୍ୟ ଫଳିବ, କେହି ତାକୁ ଏଡ଼ାଇ ପାରିବେ ନାହିଁ, ଯଦି ସାଧନ ଭଜନଥାଏ, ତେବେ ଯେଉଁଠାରେ ଖଣ୍ଡାରେ ଆଘାତ ହେବା କଥା, ସେଠାରେ କଣ୍ଟାଟିଏ ଫୁଟି ଯାଇପାରେ ।''

ଭଗବାନଙ୍କ ନିବାସ କେଉଁଠି ବୋଲି ପ୍ରଶ୍ନ କଲେ ଉତ୍ତର ମିଳିବ ସର୍ବତ୍ର । ସେ ସବୁ କିଛିର ଭିତରେ ଓ ବାହାରେ ରହିଛନ୍ତି । ଆମ ବାହାରେ ସିଏ ଅଛନ୍ତି, ଆମ ଅନ୍ତରରେ ମଧ୍ୟ ସିଏ ରହିଛନ୍ତି । ଅନ୍ତରର ଗଭୀରତାକୁ ଗଲେ ଆମେ ତାଙ୍କୁ ଅନୁଭବ କରିପାରିବା । ଭିତରେ ବାହାରେ ସର୍ବତ୍ର ତାଙ୍କୁ ଅନୁଭବ କରିବା ପାଇଁ ଆମର ଜନ୍ମ । ଏଇ କାର୍ଯ୍ୟଟି ଏକ ଦୁରୁହ କାର୍ଯ୍ୟ । ଏଥିପାଇଁ ଯାହା ଦରକାର ତାହା ହେଉଛି ଭଗବାନଙ୍କ ପ୍ରତି ଆଗ୍ରହ, ଆନ୍ତରିକତା, ବିଶ୍ୱାସ, ଭରସା, ଶ୍ରଦ୍ଧା ପୁଣି ସମର୍ପଣଭାବ । ସମର୍ପଣ ଭିତରେ ମନ୍ଦ ପ୍ରକୃତି,

ମନ୍ଦ ଗୁଣର ସମର୍ପଣ ମଧ୍ୟ ସାମିଲ ହେବା ଆବଶ୍ୟକ । ପାଇବାର ବ୍ୟାକୁଳତା ହିଁ ଭଗବତପ୍ରାପ୍ତିର ମୂଳକଥା ଓ ମୌଳିକତା । ବ୍ୟାକୁଳତା ବଳରେ ସେ ଆମ ପାଖକୁ ଆସନ୍ତି । ବ୍ୟକ୍ତି ଓ ଭଗବାନଙ୍କ ଭିତରେ ଦୂରତା କମିଯାଏ । ପ୍ରକୃତ ପକ୍ଷେ ବ୍ୟାକୁଳତା ଯେତିକି ବଢ଼େ ଭଗବାନ ସେତେ ନିକଟତର ହୁଅନ୍ତି ।

ବ୍ୟାକୁଳତା ବଢ଼େ ଅହଂ କମିଲେ । ଅହଂ ଯେତିକି ପରିମାଣରେ କମେ, ଭକ୍ତି ଭାବନା ସେତିକି ପରିମାଣରେ ବଢ଼େ । ଅହଂ କମିଲେ ଜୀବନ ନୂଆ ଲାଗେ, ଜଗତ ନୂଆଲାଗେ, ନୂଆ ଲାଗନ୍ତି ଗଛପତ୍ର, ଜୀବଜନ୍ତୁ ଓ ଜନ ମାନବ । ଭଗବତ ପ୍ରାପ୍ତି ନିମନ୍ତେ ଯେଉଁ କଥାଟି ସର୍ବାପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ତାହା ହେଉଛି ଅହଂ ବିନାଶ ଯାହା ଅତ୍ୟନ୍ତ କଷ୍ଟକର କାର୍ଯ୍ୟ ।

ଅତଏବ ଭଗବାନ ସ୍ୱର୍ଗରେ ନାହାନ୍ତି, ଏଇ ମର୍ତ୍ତ୍ୟରେ ପୂରି ରହିଛନ୍ତି, ଭରି ରହିଛନ୍ତି । ଆମ ଏଇ ଜଡ଼, ପ୍ରାଣ ଓ ମନରେ ଭଗବାନଙ୍କୁ ଦେଖି ହେବନାହିଁ । ସୂକ୍ଷ୍ମ ଚେତନାରେ ଭଗବାନଙ୍କୁ ଦେଖି ହେବ, ପୂର୍ଣ୍ଣତଃ ଅନୁଭବ କରିହେବ ।

ଭଗବାନଙ୍କୁ ବାହାରେ ଖୋଜିଲେ ଚଳିବ ନାହିଁ, ସେ ଅଛନ୍ତି ଭିତରେ, ଜଳୁଛନ୍ତି ଅଗ୍ନିଶିଖା ହୋଇ । ବୁଢ଼ାଆଙ୍ଗୁଠି ତୁଲ୍ୟ ଆଲୋକର ଶିଖା ହୋଇ ସେ ଜଳୁଛନ୍ତି ଅଭ୍ୟନ୍ତରରେ । ସେଠାରେ ତାଙ୍କୁ ସାକ୍ଷାତ କରିବା ପାଇଁ ଆମେ ଆସିଛୁ । ସାକ୍ଷାତ ନ କଲା ପର୍ଯ୍ୟନ୍ତ ଏମିତି ଆସୁଥିବୁ ଓ ଯାଉଥିବୁ । ଏ ଦିଗରେ ମୃତ୍ୟୁ ମଧ୍ୟସ୍ଥତା କରିବ ଓ ସହାୟତା କରିବ ମାତ୍ର । ମୃତ୍ୟୁ ସମୟରେ ଭଗବାନଙ୍କ ଉପରେ ଆସ୍ଥା ରଖିବା ଏକାନ୍ତ ଆବଶ୍ୟକ । ନାମସ୍ମରଣ ସେତେବେଳେ ସମ୍ଭବ ଯଦି ସାରା ଜୀବନ ଅଭ୍ୟାସ କରାଯାଇଥାଏ ।



# ପ୍ରଭୁ ଯାହା କହନ୍ତି

ହେ ମୋର ଅତି ପ୍ରିୟ ସନ୍ତାନମାନେ ;

ମୁଁ ତୁମମାନଙ୍କୁ ଭଲପାଏ । ଭଲପାଏ ବୋଲି ତୁମମାନଙ୍କଠାରୁ ବେଳେବେଳେ ଗାଳି ମଧ୍ୟ ଖାଏ । ହେଲେ ସେଥିରେ ମୁଁ ଦୁଃଖ କରେ ନାହିଁ, କାରଣ ମୁଁ ଭଲପାଏ । ତୁମେ ଜାଣି ନାହଁ ତୁମେ କିଏ ? କ'ଣ ତୁମ ପାଇଁ ଭଲ, କ'ଣ ତୁମର ଭବିଷ୍ୟତ ? ତୁମେ ଜାଣ ନାହିଁ, ମୁଁ ଜାଣେ । ଯାହା ତୁମ ପାଇଁ ଭଲ ହେବ ଦିଏ, ଯାହା ଭଲ ହେବ ନାହିଁ ଦିଏ ନାହିଁ । ତୁମେ ଏସବୁ ଜାଣ ନାହିଁ ବୋଲି ଭଲକୁ ଭେଲ ଏବଂ ଭେଲକୁ ଭଲ ଭାବିଥାଅ ।

ପ୍ରତ୍ୟେକଙ୍କର ଜନ୍ମଜନ୍ମାନ୍ତରର ଜୀବନ ବୃତ୍ତାନ୍ତ ମୁଁ ଜାଣେ । ଏକଥା ସେଦିନ କୁରୁକ୍ଷେତ୍ର ରଣକ୍ଷେତ୍ରରେ ଅର୍ଜୁନଙ୍କୁ କହିଥିଲି ଯାହା ଶ୍ରୀମଦ୍ ଭଗବଦ୍‌ଗୀତାର ଚତୁର୍ଥ ଅଧ୍ୟାୟରେ ଲିପିବଦ୍ଧ ହୋଇଛି । ମୁଁ କହିଥିଲି "ତୁମର ଓ ମୋର ଜନ୍ମ ଅତୀତରୁ ଅଦ୍ୟାବଧି ବହୁଥର ଘଟିଛି, ମୋର ସବୁ ମନେ ଅଛି ମାତ୍ର ତୁମର ସେ ସବୁ କିଛି ମନେ ନାହିଁ । ଏପରିକି ଭାସ୍କରଙ୍କ ଜନ୍ମ ପୂର୍ବରୁ ମୋର ଜନ୍ମ ଘଟିଛି ।"

ମୁଁ ଅଛି ବୋଲି ସବୁକିଛି ରହିଛି । ମୁଁ ମୂଳଦୁଆ ହୋଇ ସବୁକିଛିକୁ ଧରି ରଖିଛି । ମତେ ବାଦ୍ ଦେଲେ ସବୁକିଛି ଖଣ୍ଡ ଖଣ୍ଡହୋଇ ଭାଙ୍ଗି ପଡ଼ିବ । ମୁଁ ସମସ୍ତଙ୍କୁ ଦେଖିପାରେ ହେଲେ ମତେ କେହି ସହଜରେ ଦେଖି ପାରନ୍ତି ନାହିଁ । ମୁଁ ସବୁଠାରେ ଥାଏ, ସବୁବେଳେ ଥାଏ । ମୋ ପାଇଁ ଦିନ କି ରାତି ସବୁ ସମାନ, ତିଥିବାର ସବୁ ସମାନ । ମୋ ଆଖି ଏତେ ବିରାଟ ଯେ ତହିଁରେ ସବୁ କିଛି ଏକାବେଳେ ମୁଁ ଦେଖିପାରେ, ମୋ କାନ ଏତେ

ବିରାଟ ଯେ ମୁଁ ସମସ୍ତଙ୍କ ସୁଖଦୁଃଖ ସେଥିରେ ଏକ ସମୟରେ ଶୁଣିପାରେ । ସମସ୍ତଙ୍କୁ ମୁଁ ଏକ ସମୟରେ ଦେଖିପାରେ । ଏ କଥାର ଟିକିଏ ସୂଚନା ମୁଁ ଅର୍ଜୁନଙ୍କୁ ଦେଇଥିଲି ଏବଂ କହିଥିଲି ଯେ ଏକ ଅଂଶରେ ମୁଁ ସମଗ୍ର ବିଶ୍ୱଭୁବନରେ ବ୍ୟାପିଛି । ଯାହା ଶ୍ରୀମଦ୍‌ଭଗବଦ୍‌ଗୀତାର ଦଶମ ଅଧ୍ୟାୟରେ ଲିପିବଦ୍ଧ ହୋଇଛି ।

ମୁଁ ସବୁ କାର୍ଯ୍ୟ କରେ, ମୁଁ ଚାହିଁଲେ ସବୁକିଛି ଘଟେ, ନ ଚାହିଁଲେ କିଛି ଘଟେ ନାହିଁ, ପୁଣି ଚାହିଁଲେ ଘଟଣା ଗୋଟିଏ ବାଗରେ ନ ଘଟି ଅଲଗା ବାଗରେ ଘଟେ । ତୁମମାନଙ୍କର କର୍ମଫଳ ମୁଁ ଖଣ୍ଡନ କରିପାରେ, ଭାଗ୍ୟରେଖା ମୁଁ ଲିଭାଇ ଦେଇପାରେ । ଯେଉଁଠାରେ ବଡ଼ ଆଘାତ ହେବା କଥା, ସେଠାରେ ଅଳ୍ପ ଆଘାତରେ ତାହା କଟିଯାଏ । ସଂଚିତ, ପ୍ରାରବ୍ଧ ଓ କ୍ରିୟମାଣ କର୍ମଫଳକୁ କାଟି ଦେଇ ମୁଁ ଅକର୍ମ କର୍ମଦାୟକ ହୋଇପାରେ । ତୁମେ ରହିଥିବା ପୃଥିବୀ ତ ଦୁଃଖର ଆଳୟ ବୋଲି ମୁଁ କହିଛି । ଏଠାରେ ଦୁଃଖ ରହିଛି । ବ୍ୟକ୍ତିଗତ ଦୁଃଖ ସାଙ୍ଗକୁ ବିଶ୍ୱଗତ ଦୁଃଖ ରହିଛି । ତୁମ ଦୁଃଖ ମତେ ଜଣାଅ, ମତେ ପ୍ରଣାମ କର, ମୋ ଉପରେ ବିଶ୍ୱାସ ଓ ଭରସା ରଖ । ମୁଁ ସେଥିରୁ ତୁମକୁ ବାହାର କରିଦେବି । ହୁଏତ ପରିସ୍ଥିତିକୁ ପ୍ରସ୍ତୁତ କରିବାକୁ ମତେ ଟିକିଏ ସମୟ ଲାଗିପାରେ । ତୁମକୁ ଧୈର୍ଯ୍ୟ ଧରିବାକୁ ପଡ଼ିବ, ଧୈର୍ଯ୍ୟର ଅନ୍ୟତମ ତପସ୍ୟା ।

ମତେ ଖିରି ପୁରି, ମାଖନ ଖିରିସା ଦିଅ ନାହିଁ. ତହିଁରେ ମୋର ଆଉ ଆଗ୍ରହ ନାହିଁ । ଆଡ଼ମ୍ବର ଆୟୋଜନ ମୁଁ ଚାହେଁ ନାହିଁ । ମତେ ସୁନାର ମୁକୁଟ, ରୂପାର ବଂଶୀ ଦେବାକୁ ମାନସିକ କର ନାହିଁ । ମୋର ତାହା ଦରକାର ନାହିଁ । ଆଉ ମଧ୍ୟ ତୁମେ ମତେ ଏକଥା ଦେଇପାରିବ ନାହିଁ କାରଣ ଆକାଶ ମୋର ମୁକୁଟ ଓ ପବନ ମୋର ବଂଶୀ । ସେଥିରେ ସମୟ ନଷ୍ଟ କର ନାହିଁ । ସେଇ ସମୟ ବ୍ୟୟ କରି ମତେ ଶ୍ରଦ୍ଧାକର, ମତେ ପ୍ରାର୍ଥନା ଜଣାଅ, ମତେ ପ୍ରଣାମ କର । ମୁଁ ସ୍ପଷ୍ଟଭାବରେ କହୁଛି ଯେ ମତେ ଗର୍ବ ଅହଂକାର ବିଷ ପ୍ରାୟ ଲାଗେ । ସରଳତା, ମଧୁରତା, ନିଃସ୍ୱାର୍ଥପରତା, ପାରସ୍ପରିକତା ମୁଁ ଚାହେଁ । ହିଂସା, କ୍ରୋଧ, ଈର୍ଷା, ଘୃଣା, ଛଳନା, ମିଥ୍ୟା, କପଟ, ଲୋଭ, ଦୁର୍ନୀତି ମୁଁ ଚାହେଁ ନାହିଁ ।

ମୁଁ ତୁମ ବାହାରେ ଅଛି, ପୁଣି ତୁମ ଭିତରେ ଅଛି । ଏକ ସମୟରେ ଏକାଧାରରେ ବାହାରେ ଓ ଭିତରେ ରହିଛି । ଏହା କିପରି ସମ୍ଭବ ବୋଲି ତୁମମାନଙ୍କ ମନରେ ପ୍ରଶ୍ନ ଆସିବ । ଅତୀତରେ ଜଣେ ଶିଷ୍ୟଙ୍କର ଏଇ ପ୍ରଶ୍ନର ଉତ୍ତରରେ ଗୁରୁ ଦେଇଥିଲେ କୂଅ ଭିତରେ ବାଲ୍‌ଟି ଓ ବାଲ୍‌ଟି ଭିତରେ କୂଅର ଉଦାହରଣ ।

ବାହାରେ ଥିଲେ ମଧ୍ୟ ମୁଁ ବାହାରେ ଆଗ ମିଳିବି ନାହିଁ । ଆଗ ମିଳିବି ଭିତରେ । ଭିତରେ ମିଳିଲେ ବାହାରେ ମିଳିବି । ତେଣୁ ମୁଁ କହୁଛି ମତେ ବାହାରେ ଖୋଜ ନାହିଁ, ଭିତରେ ଖୋଜ । ତୁମ କର୍ତ୍ତବ୍ୟ କର୍ମ, ସୁଖଦୁଃଖ, ସୁବିଧାଅସୁବିଧା, ରୁଚିଅରୁଚି, ଚାଷ

ଚାକିରି, ବିଦ୍ୟା ବିଭବ, ଧନଜନ ଓ ମାନସମ୍ମାନ ସବୁକିଛି ଭିତରେ ମତେ ଖୋଜ । ଅନ୍ୟମାନଙ୍କ ପ୍ରତି ଶ୍ରଦ୍ଧା, ସହାନୁଭୂତି, ଦୟା, କ୍ଷମା, ଆତ୍ମୀୟତା ରଖ, ମୁଁ ସେଥିରେ ସହଜରେ ମିଳିବି । ମତେ ପାଇବା ପାଇଁ ଏତେ କୃଚ୍ଛ୍ର ସାଧନା କର ନାହିଁ । ତୁମର କଷ୍ଟ ହିଁ ମୋର କଷ୍ଟ । ଶରୀରକୁ, ପ୍ରାଣକୁ ଏତେ କଷ୍ଟ ଦିଅ ନାହିଁ । ତୁମେ ଯେ ମୋର ଅତି ଆପଣାର - ଏକଥା ମୁଁ ଜାଣିଛି । ମତେ ଆନ୍ତରିକତାରେ ତୁମର କରିନିଅ, ଏହା ମୁଁ ଚାହେଁ । ମତେ ତୁମ ସହ ଯୋଡ଼ି କରି ରଖ, ତାହା ହିଁ ସବୁଠାରୁ ବଡ଼କଥା । ମତେ ତୁମର ସବୁ କଥାରେ ଓ କାମରେ ଯୋଡ଼ି ରଖିବାର ଅନ୍ୟନାମ ଯୋଗ । ମତେ ଯୋଡ଼ି ରଖିଲେ କର୍ମରେ କୁଶଳତା ଆସିବ ହିଁ ଆସିବ । କର୍ମକୁ ମୋର ଭାବି ନିଜକୁ ନିମିତ୍ତ ମାତ୍ର ଭାବିଲେ କର୍ମଦକ୍ଷତା ବଢ଼ିବା ସଙ୍ଗେ ସଙ୍ଗେ କର୍ମ ମଧ୍ୟ ପୂର୍ଣ୍ଣାଙ୍ଗ ହେବ । ଏଇ ଅର୍ଥରେ ଯୋଡ଼ି ହେବା ପାଇଁ ଅର୍ଥାତ ଯୋଗୀ ହେବା ପାଇଁ ଅର୍ଜୁନଙ୍କୁ ବାରମ୍ବାର ମୁଁ କହିଛି । କେବଳ ଅର୍ଜୁନଙ୍କୁ ନୁହେଁ, ଅର୍ଜୁନଙ୍କ ମାଧ୍ୟମରେ ସମସ୍ତଙ୍କୁ କହିଛି । କାରଣ ଅର୍ଜୁନ ହେଉଛନ୍ତି ସମଗ୍ର ମାନବ ଜାତିର ପ୍ରତିନିଧି । ଜୀବନର କୁରୁକ୍ଷେତ୍ରରେ କିଂକର୍ତ୍ତବ୍ୟବିମୂଢ଼ ହେବାର ପରିସ୍ଥିତି ପ୍ରାୟ ପ୍ରତ୍ୟେକଙ୍କର ବହୁ ସମୟରେ ଆସିଥାଏ । ସେତେବେଳେ ଅର୍ଜୁନଙ୍କ ପରି ହତବାକ୍ ହେବାକୁ ହୁଏ । ସେତେବେଳେ ମୋର ଉପଦେଶ, ଦିଗ୍‌ଦର୍ଶନ ଏକମାତ୍ର ବତିଘର ପରି କ୍ରିୟା କରେ ।

ସୁଖ ଓ ଶାନ୍ତି ତୁମେ ଖୋଜୁଛ । ମୁଁ ଚାହେଁ ତୁମେ ପୂର୍ଣ୍ଣ ସୁଖ ଓ ଶାନ୍ତିରେ ନିବାସ କରେ । ମାତ୍ର ତାହା ସମ୍ଭବ ହେଉ ନାହିଁ । ତୁମେ ନ ଜାଣିପାରି ନିଜେ ନିଜର ଶତ୍ରୁ ହେଉଛ, କାମନାବାସନାର ଜାଲରେ ପଡ଼ି ଛଟପଟ ହେଉଛ, ଆତ୍ମପକ୍ଷ ସମର୍ଥନ କରି ଅନ୍ୟକୁ ଦୋଷ ଦେଉଛ, ସମସ୍ତଙ୍କୁ ଦୋଷ ଦେଇ ସାରିଲା ପରେ ମନ ନ ବୁଝିଲେ ମତେ ଦୋଷ ଦେଉଛ ଇତ୍ୟାଦି ଇତ୍ୟାଦି । ଜାଣିପାରୁନାହଁ ଯେ ଅନ୍ୟମାନଙ୍କ ସହ ନିଜକୁ ତୁଳନା କରିବା ଦ୍ୱାରା ଦୁଃଖ ଆସୁଛି । କଥା କହିବା ଆଗରୁ ଆଉ ଥରେ ଭାବୁ ନାହଁ ବୋଲି କେତେ ଦୁଃଖ ଆସୁଛି । ମୋ କଥା ଶୁଣ, ଯାହା ମନକୁ ଆସୁଛି ହଠାତ କହି ଦିଅ ନାହିଁ, ସ୍ଥାନ, କାଳ, ପାତ୍ରର ବିଚାର କର । ଯାହା ଇଚ୍ଛା ହେଲା ହଠାତ୍ ସେକାର୍ଯ୍ୟ କର ନାହିଁ, ଆଉ ଥରେ ଭାବି କରି ସେ କାର୍ଯ୍ୟଟି କର ।

ଶାନ୍ତି ପାଇବାର ଆଉ ଗୋଟିଏ ବାଟ ମୋ'ଠାରୁ ଶୁଣ । ଅନ୍ୟମାନଙ୍କର ମନ୍ତବ୍ୟରେ ନିଜେ ଠିକ୍ ଥିଲେ ଆଦୌ ବିଚଳିତ ହୁଅନାହିଁ । ବିଚଳିତ ହେଲେ ନିଜର କ୍ଷତି ବହୁତ ହୁଏ । ମାନସିକ ଅସ୍ଥିରତା ବଢ଼େ, ଶାରୀରିକ ଅସୁସ୍ଥତା ଆସେ ।

ଅସୁବିଧା ପଡ଼ିଛି ବୋଲି ଏତେ ବିବ୍ରତ ହୁଅ ନାହିଁ । ମତେ ଜଣାଅ, ମୋ ଉପରେ ଭରସା ରଖ । ବିବ୍ରତ ହେଲେ ଅସୁବିଧା ତ ଯିବ ନାହିଁ ବରଂ ଅଧିକ କାୟା ବିସ୍ତାର

କରିବ । ମତେ ଜଣାଇ ସ୍ଥିର ରହ, ମୁଁ ସାହାଯ୍ୟ ପଠାଇବି, ଗ୍ରହଣ କରିବା ପାଇଁ ଶାନ୍ତ ଚିତ୍ତରେ ଅପେକ୍ଷା କର ।

ତୁମେ ଏକୁଟିଆ ବୋଲି ଆଦୌ ଭାବ ନାହିଁ । ମୁଁ ବରାବର ତୁମ ପାଖେପାଖେ ରହିଛି । ମୁଁ ପାଖରେ ଅଛି ବୋଲି କଳ୍ପନା ମାଧ୍ୟମରେ ଅନୁଭବ କରିବାକୁ ଚେଷ୍ଟା କର, ଦେଖିବ ତୁମକୁ ଆଉ ଏକୁଟିଆ ଲାଗିବ ନାହିଁ । ଅସୁସ୍ଥତା ଯୋଗୁଁ ଅଥବା କିଛି କଥାର ଅପ୍ରାପ୍ତି ଯୋଗୁଁ ନିଜକୁ ଧିକ୍କାର କର ନାହିଁ । ଏଥିରେ ମୁଁ ମର୍ମାହତ ହୁଏ । ମୁଁ ଥାଉଥାଉ ତୁମେ ଏତେ ନିଜକୁ ଅସହାୟ ମନେ କର ନାହିଁ । ଶ୍ଳୋକ ଆସୁ ନାହିଁ, ଧ୍ୟାନ ଆସୁ ନାହିଁ, ପୂଜାପାଠ ଆସୁନାହିଁ, ତୀର୍ଥକୁ ଯାଇ ହେଉ ନାହିଁ ବୋଲି ମନଦୁଃଖ କର ନାହିଁ । ଏସବୁ କଥାରୁ ଅଧିକ ବଡ଼ କଥା ହେଉଛି ମତେ ଶ୍ରଦ୍ଧା କରିବା । ଶ୍ରଦ୍ଧା, ଶ୍ରଦ୍ଧା, ଶ୍ରଦ୍ଧା, ମୁଁ ଶ୍ରଦ୍ଧା ଚାହେଁ । ମୁଁ ସବୁଠି ଅଛି, ମତେ ଟିକିଏ ଆଦର କର । ମଳିନ ମୁହଁ ଛାଡ଼, ମତେ ଚାହିଁ ଆଶ୍ୱସ୍ତ ହୁଅ । ମୋ କଥା ଶୁଣ, ଟିକିଏ ଖୁସି ହୁଅ ।

❑❑

# ଆମ ପରିଚୟ

ୟୁରୋପୀୟମାନଙ୍କର ସାଧାରଣ ଧାରଣା ଯେ ଭାରତ ହେଉଛି କେବଳ ଦେବଦେବୀର ଦେଶ । ଜୀବନକୁ ଏ ଦେଶ ଯଥେଷ୍ଟ ମୂଲ୍ୟ ଦିଏ ନାହିଁ । ସନ୍ନ୍ୟାସ ଓ ଶୂନ୍ୟବାଦରେ ଏହାର ଆସ୍ଥା ଓ ବିଶ୍ୱାସ ଅଧିକ ଇତ୍ୟାଦି ଇତ୍ୟାଦି । ଏକଥା ସେମାନଙ୍କଠାରୁ ଶୁଣି ଆମେ ମଧ୍ୟ ସହଜରେ ମାନି ନେଇଛୁ ଓ କହୁଛୁ ଯେ ଆମର କିଛି ନଥିଲା, ଯାହା କିଛି ଆମେ ପାଇଛୁ ସବୁ ପାଶ୍ଚାତ୍ୟରୁ ଆସିଛି । ଆମର ବୋଲି ଥିଲେ ତେତିଶ କୋଟି ଦିଅଁ ଦେବତା, ରାମାୟଣ, ମହାଭାରତ, ଭାଗବତ ସମେତ କେତେକ ପୁରାଣଗ୍ରନ୍ଥ, ତୀର୍ଥକ୍ଷେତ୍ର ଯଜ୍ଞ ଦାନ ଆଦି କେତେ କ୍ରିୟାନୁଷ୍ଠାନ, ଯାନିଯାତ୍ରା ପୂଜାପାଠ ଇତ୍ୟାଦି ଇତ୍ୟାଦି ବିଧିବ୍ୟବସ୍ଥା । ଏହି ଧାରଣା ଆମର ରହିଛି ।

ବାସ୍ତବରେ ଧର୍ମ, ଅର୍ଥ, କାମ ଏବଂ ମୋକ୍ଷ ହିଁ ଆମ ଜୀବନର ଚରମ ପୁରୁଷାର୍ଥ । ଏହାକୁ ଚତୁଃବର୍ଗ ବୋଲି ମଧ୍ୟ କୁହାଯାଏ । ଅବଶ୍ୟ ଏହାର ସଜ୍ଜିକରଣ ଟିକିଏ ଭିନ୍ନ । ସଜ୍ଜିକରଣ ଏହିପରି ଯେ କାମ,ଅର୍ଥ, ଧର୍ମ ଓ ମୋକ୍ଷ । କାମ କହିଲେ କାମନା ଅର୍ଥାତ ବଞ୍ଚିବାର କାମନା, ବଢି ଉଠିବାର କାମନା, ଗଢ଼ି ଉଠିବାର କାମନା ଇତ୍ୟାଦି ଇତ୍ୟାଦି । ଏଥିପାଇଁ ଆବଶ୍ୟକ ଧନ, ସମ୍ପଦ, ବସ୍ତୁ, ଖାଦ୍ୟ, ବସ୍ତ୍ର, ବାସଗୃହ ଇତ୍ୟାଦି ଇତ୍ୟାଦି । ଧର୍ମ କହିଲେ ମାନବିକ ମୂଲ୍ୟବୋଧକୁ ବୁଝିବା । ସ୍ନେହ, ଶ୍ରଦ୍ଧା, ଦୟା, କ୍ଷମା, ମମତା, ଆନ୍ତରିକତା, ପରୋପକାର ପ୍ରଭୃତିକୁ ବୁଝିବା । ମୋକ୍ଷ କହିଲେ ଭାଗବତ ଉପଲବ୍ଧିକୁ ତଥା ମୁକ୍ତିକୁ ବୁଝିବା । ଏହି ମୋକ୍ଷ ବା ମୁକ୍ତିର ଅନ୍ୟନାମ ଭାଗବତ ପ୍ରାପ୍ତି ତାହା ସାଲୋକ୍ୟ ହେଉ, ସମୀପ୍ୟ ହେଉ, ସାରୂପ୍ୟ ହେଉ ଅବା ସାଷ୍ଟି ହେଉ । ଶେଷ ବର୍ଗ ଅର୍ଥାତ୍ ମୋକ୍ଷକୁ

ଛାଡ଼ିଦେଲେ ଅନ୍ୟ ତିନିଗୋଟି ବର୍ଗ ଭିତରେ ବୈରାଗ୍ୟର ମ୍ଳାନିମା ନାହିଁ ବରଂ ଅନୁରାଗର ବୀଣା ତାନ ରହିଛି, ବଂଶୀ ସ୍ୱନ ରହିଛି । ଜୀବନ ଜୀଇଁବାର କଳାକୌଶଳ ପ୍ରବଳ ଭାବରେ ରହିଛି । ଭାରତୀୟ ଜୀବନଧାରାରେ ଆଇନ, ରାଜନୀତି, ସମାଜନୀତି, ଭୌତିକ ବିଦ୍ୟାର ବିଭିନ୍ନ ଶାଖା, ସଂଗୀତ, ସାହିତ୍ୟ, ଚାରୁକଳା ଓ କାରୁକଳା ସବୁ କିଛି ଦୂର ଅତୀତରୁ ଆଜି ମଧ୍ୟ ରହିଛି । ଏପରି କୁହାଯାଇଛି ଯେ ଅର୍ଥ ଉପାର୍ଜନ ଏବଂ ବିଦ୍ୟା ଅର୍ଜନ ସମୟରେ ନିଜକୁ ଅଜର ଓ ଅମର ବୋଲି ଭାବିବା ଉଚିତ ।

ଜ୍ୟୋତିଷ ଶାସ୍ତ୍ରଠାରୁ ଆରମ୍ଭ କରି ଅଶ୍ୱଶାସ୍ତ୍ର ପର୍ଯ୍ୟନ୍ତ, ଚିକିତ୍ସା ଶାସ୍ତ୍ରଠାରୁ ଆରମ୍ଭ କରି ଦର୍ଶନଶାସ୍ତ୍ର ପର୍ଯ୍ୟନ୍ତ, ଭାଷାଶାସ୍ତ୍ରଠାରୁ ଆରମ୍ଭ କରି ନାଟ୍ୟଶାସ୍ତ୍ର, ସଙ୍ଗୀତଶାସ୍ତ୍ର ପର୍ଯ୍ୟନ୍ତ ସମସ୍ତ ଜୀବନଧର୍ମୀ ଶାସ୍ତ୍ର ଏହି ଦେଶରେ ଦୂର ଅତୀତରେ ରଚିତ ହୋଇଛି । ଅନ୍ୟପ୍ରକାରେ କୁହାଯାଇପାରେ ଯେ ବୈରାଗ୍ୟର ମ୍ଳାନିମା ଅପେକ୍ଷା ଅନୁରାଗର ମାଧୁରିମା ଭାରତୀୟ ଜୀବନରେ ଅତୀତରୁ ଅଦ୍ୟାବଧି ଅଧିକ ରହିଛି । ଶ୍ରୀମଦ୍‌ଭଗବଦ୍‌ଗୀତାରେ ଏହି ଚେତନା ମୂର୍ତ୍ତିମନ୍ତ ହୋଇଛି । ଅବାଞ୍ଛିତ ବୈରାଗ୍ୟ ଅପେକ୍ଷା ଅକୁଣ୍ଠିତ ଅନୁରାଗ ଉପରେ ଏହି ଗ୍ରନ୍ଥରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯାଇଛି । କାମଶାସ୍ତ୍ରଠାରୁ ଧର୍ମଶାସ୍ତ୍ର ପର୍ଯ୍ୟନ୍ତ ଯାହାର ବିଦ୍ୟା ପରିବ୍ୟାପ୍ତ- ସେ ଦେଶରେ କିଛି ନଥିଲା ବୋଲି ମାନିନେବା ଯେତିକି ଆପତ୍ତିଜନକ ସେତିକି ଅପରାଧବୋଧକ । କେବଳ ସାରସ୍ୱତ ବଳୟ ଓ ଅଧ୍ୟାତ୍ମବଳୟ ବ୍ୟତୀତ ବୈଜ୍ଞାନିକ ଅନୁଚିନ୍ତାର ବଳୟ ମଧ୍ୟ ଅତୀତର ଭାରତରେ ପରିବ୍ୟାପ୍ତ ହୋଇଥିଲା । ଏସବୁ କଥାକୁ ଅନୁଧ୍ୟାନ କରି ସ୍ୱାମୀ ବିବେକାନନ୍ଦ ଯାହା କହିଛନ୍ତି ତାହା ପ୍ରଣିଧାନ ଯୋଗ୍ୟ । ତାଙ୍କ କଥାରେ-''ଯେତେବେଳେ ଗ୍ରୀସ୍‌ର ଜନ୍ମ ହୋଇ ନାହିଁ, ରୋମର କଥା କେହି ଭାବି ନାହିଁ, ବର୍ତ୍ତମାନର ୟୁରୋପୀୟ ମାନଙ୍କର ପୂର୍ବପୁରୁଷମାନେ ବିଚିତ୍ର ଅଙ୍ଗରାଗରେ ରଞ୍ଜିତ ଅସଭ୍ୟ ବନବାସୀ ମାତ୍ର ଥିଲେ, ସେହି ସୁଦୂର ଯୁଗରେ ଭାରତ ତାହାର ସଂସ୍କୃତିର ସାଧନାରେ କର୍ମ ମୁଖର ଥିଲା ।''

ବିଜ୍ଞାନର ଚର୍ଚ୍ଚା ଓ ଗବେଷଣା ଅତୀତରେ ଭାରତରେ ଗଭୀର ଥିଲା । ପ୍ରାୟ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତୀୟ ବୈଜ୍ଞାନିକ ଗବେଷଣା ଲବ୍ଧଜ୍ଞାନ ଅନନ୍ୟ ଥିଲା । ବୈଦେଶିକ ଆକ୍ରମଣର ପ୍ରଭାବରୁ ତ୍ରୟୋଦଶ ଶତାବ୍ଦୀର କେଉଁ ଏକ ସମୟରୁ, ବିଜ୍ଞାନଚର୍ଚ୍ଚାର ଗତି ଶିଥିଳ ହୋଇଗଲା-ଏକଥା ଶ୍ରୀଅରବିନ୍ଦ ସ୍ୱରଚିତ 'ଭାରତୀୟ ସଂସ୍କୃତିର ଆଧାର' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ଭାରତର ସୁଯୋଗ୍ୟ ସନ୍ତାନ ବୈଜ୍ଞାନିକ ଆର୍ଯ୍ୟଭଟ୍ଟ ଖ୍ରୀ:ଅ ପଞ୍ଚମ ଶତାବ୍ଦୀରେ ଘୋଷଣା କରିଥିଲେ ଯେ ପୃଥିବୀର ଆବର୍ତ୍ତନ ଗତି ଯୋଗୁଁ ରାତିଦିନ ସମ୍ଭବ ହେଉଛି । ବହୁପରେ ପଞ୍ଚଦଶ ଶତାବ୍ଦୀରେ ପାଶ୍ଚାତ୍ୟର ବୈଜ୍ଞାନିକ କୋପର ନିକସ୍ ଏହି ତତ୍ତ୍ୱ ଓ ତଥ୍ୟ ପ୍ରଦାନ କରି ପୃଥିବୀର ଦୃଷ୍ଟି ଆକର୍ଷଣ କରିଥିଲେ ଓ ସୁନାମ ଅର୍ଜନ କରିଥିଲେ ।

ଭାରତ ମାଟିର ଯୁବକ ବୈଜ୍ଞାନିକ ଭାସ୍କରାଚାର୍ଯ୍ୟ ଦ୍ୱାଦଶ ଶତାବ୍ଦୀରେ ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର କରିଥିଲେ । ଏହାର ବହୁପରେ ପାଶ୍ଚାତ୍ୟର ବୈଜ୍ଞାନିକ ନିଉଟନ ଏହି ମାଧ୍ୟାକର୍ଷଣ ଶକ୍ତି ପ୍ରସଙ୍ଗ ଉଦ୍‌ଘୋଷଣା କରିଥିଲେ । ଦୁଃଖର କଥା ଯେ ବୈଜ୍ଞାନିକ ଭାବରେ ଆର୍ଯ୍ୟଭଟ୍ଟ ଓ ଭାସ୍କରାଚାର୍ଯ୍ୟଙ୍କୁ ବିଶ୍ୱ ଚିହ୍ନିଲା ନାହିଁ କି ଯଥାଯଥ ସମ୍ମାନ ଦେଲା ନାହିଁ । ଅଧିକ ଦୁଃଖର କଥା ଯେ ଆମେ ଆମ ଦେଶର କୃତୀ ବୈଜ୍ଞାନିକ ମାନଙ୍କ ସୁନାମ ତ ଦୂରର କଥା ନାମ ପର୍ଯ୍ୟନ୍ତ ଜାଣିଲୁ ନାହିଁ । ଗଣିତ କ୍ଷେତ୍ରରେ ବିଶ୍ୱକୁ ଭାରତର ଅବଦାନ ଅତୁଳନୀୟ । ପୂର୍ଣ୍ଣ ସଂଖ୍ୟାର ଯୋଗ, ବିୟୋଗ, ଗୁଣନ, ହରଣ ଓ ବର୍ଗମୂଳ ଆଦି ସଂରଚନା ଭାରତରେ ହିଁ ପ୍ରଥମେ ଆବିଷ୍କୃତ ହୋଇଥିଲା । ଗଣନା କ୍ଷେତ୍ରରେ 'ଶୂନ୍ୟ'ର ବ୍ୟବହାର ଭାରତରୁ ହିଁ ଆରମ୍ଭ ହୋଇଥିଲା । 'ଶୂନ୍ୟ' ସଂଖ୍ୟାର ସ୍ଥିତି ଯୋଗୁଁ କୋଟି କୋଟି ସଂଖ୍ୟାର ଗଣନା ସମ୍ଭବ ହେଉଛି, ଏଥିରେ ଦ୍ୱିମତ ନାହିଁ । ଏସବୁ ଦିଗରେ ଆମର ଅବଦାନ ଆମେ ଜାଣି ନାହୁଁ, କିଏ ଜଣାଇଲେ ମଧ୍ୟ ଆମେ ବିଶ୍ୱାସ କରିପାରୁନାହୁଁ । ତା'ର କାରଣ ହେଉଛି ଆମ ପ୍ରତି ଆମର ବିଶ୍ୱାସ ନାହିଁ ଅର୍ଥାତ ଆତ୍ମବିଶ୍ୱାସ ନାହିଁ । ଆମର ପ୍ରାଚୀନ କୃତିତ୍ୱ ପ୍ରତି ପ୍ରତ୍ୟୟ ତ ଦୂରର କଥା, ରହିଛି ବରଂ ନିଜ ପ୍ରତି ଅନାସ୍ଥାଭାବ । ଜାଣିଲେ ଆଶ୍ଚର୍ଯ୍ୟ ଲାଗେ ଯେ ଜ୍ୟାମିତି କ୍ଷେତ୍ରରେ ମଧ୍ୟ ପ୍ରାଚୀନ ଭାରତରେ ଥିଲା ଅସାଧାରଣ ଜ୍ଞାନର ଗଭୀରତା । ଭାରତର ଋଷି 'ବୈଧାୟନ'ଙ୍କର ଯଜ୍ଞ ମଣ୍ଡପ ଯେଉଁ ତତ୍ତ୍ୱ ଉପରେ ନିର୍ମିତ ହୋଇଥିଲା, ସେହି ତତ୍ତ୍ୱକୁ ଭିତ୍ତି କରି ବହୁପରେ ମଧ୍ୟପ୍ରାଚ୍ୟର ଗାଣିତିକ 'ପିଥାଗୋରାସ' ଗୋଟିଏ ଉପପାଦ୍ୟ ସଂରଚନା କରିଥିଲେ । ସେହି ଉପପାଦ୍ୟର ନାମ ହେଉଛି 'ପିଥାଗୋରାସ୍' ଉପପାଦ୍ୟ । ଏହି ଉପପାଦ୍ୟ ଅନୁସାରେ ଗୋଟିଏ ସମକୋଣୀ ତ୍ରିଭୁଜର ସମକୋଣ ଉପରେ ଅଙ୍କିତ ବର୍ଗକ୍ଷେତ୍ରର କ୍ଷେତ୍ରଫଳ ଅନ୍ୟ ଦୁଇବାହୁ ଉପରେ ଅଙ୍କିତ ବର୍ଗକ୍ଷେତ୍ର ଦ୍ୱୟର କ୍ଷେତ୍ରଫଳର ସମଷ୍ଟି ସଙ୍ଗେ ସମାନ । ଏ କ୍ଷେତ୍ରରେ 'ପିଥାଗୋରାସ'ଙ୍କ ନାମ ସୁବିଦିତ ହେଲା, ମାତ୍ର କେହି ଋଷି ବୌଧାୟନଙ୍କ ନାମ ଜାଣିଲେ ନାହିଁ ।

ଭାରତୀୟ ମାନେ ପ୍ରଥମେ ସୁନାର ଆବିଷ୍କାର କରିଥିଲେ । ଛାନ୍ଦୋଗ୍ୟ ଉପନିଷଦରେ ସୁନା, ରୁପା, ଟିଣ, ସୀସା, ଲୁହା ଆଦି ପଞ୍ଚଧାତୁର ନାମ ଉଲ୍ଲେଖ କରାଯାଇଛି । ରସାୟନ ବିଦ୍ୟା କ୍ଷେତ୍ରରେ ଭାରତବର୍ଷର ବୈଜ୍ଞାନିକ ନାଗାର୍ଜୁନ ପାତନ ଓ ଭସ୍ମୀକରଣ ପ୍ରକ୍ରିୟାର ଆବିଷ୍କାର କରିଥିଲେ । ଚିକିତ୍ସାବିଜ୍ଞାନ କ୍ଷେତ୍ରରେ ଚରକ ଓ ସୁଶ୍ରୁତ ଅପୂର୍ବ ସଫଳତା ଅର୍ଜନ କରିଥିଲେ । କାଚର ପ୍ରସ୍ତୁତ ପ୍ରଣାଳୀ ଭାରତୀୟମାନେ ବହୁ ଆଗରୁ ଜାଣିଥିଲେ ।

ଡାରଉଇନ୍‌ଙ୍କ ବିବର୍ତ୍ତନବାଦର ଆବିଷ୍କାରର ବହୁପୂର୍ବରୁ ଭାରତୀୟ ଅଧ୍ୟାତ୍ମଶାସ୍ତ୍ରରେ ଏହି ବିକାଶ ଧାରାର ପ୍ରସଙ୍ଗ ରହିଛି । ଉତ୍କଳର କବି ଜୟଦେବଙ୍କ ଦ୍ୱାଦଶ ଶତାବ୍ଦୀରେ ରଚିତ ଗ୍ରନ୍ଥ 'ଗୀତଗୋବିନ୍ଦ'ରେ ମୀନ, କଚ୍ଛପ, ବରାହ, ନୃସିଂହ, ବାମନ, ପର୍ଶୁରାମ,

॥ ଜୀବନର ମୂଲ୍ୟ ଓ ମୂଲ୍ୟବୋଧ ॥

ରାମ, ବଳରାମ, ବୁଦ୍ଧ ଓ କଳକୀ ଆଦି ଦଶ ଅବତାରର ବର୍ଣ୍ଣନା ମାଧ୍ୟମରେ ବିବର୍ତ୍ତନ ଧାରାର ତତ୍ତ୍ୱ ନିହିତ ହୋଇ ରହିଛି ।

ଆମ ପୁରାଣ ତଥା ଅଧ୍ୟାତ୍ମଶାସ୍ତ୍ରର ସପ୍ତଦ୍ୱୀପ ପଞ୍ଚସାଗରର କଥା ରହିଛି । ବହୁପରେ ଭୂବିଜ୍ଞାନୀ ମାନେ ସପ୍ତ ମହାଦେଶ ଓ ପଞ୍ଚ ମହାସାଗରର ଆବିଷ୍କାର କରିଛନ୍ତି । ସଂପ୍ରତି ବ୍ୟୋମବିଜ୍ଞାନୀମାନେ ବହୁସୂର୍ଯ୍ୟ ଓ ସେହି ସୂର୍ଯ୍ୟ ବେଷ୍ଟିତ ସୌରମଣ୍ଡଳମାନଙ୍କ ସ୍ଥିତି ସଂପର୍କରେ ସୂଚନା ଦେଉଛନ୍ତି । ଆମେ ଦେଖୁଥିବା ସୂର୍ଯ୍ୟ ଏବଂ ଆମେ ଜାଣିଥିବା ସୌରମଣ୍ଡଳ ତହିଁ ମଧ୍ୟରୁ ଅନ୍ୟତମ । ଏକଥା ଏପରି ଭାବରେ କୁହାଯାଇ ନଥିଲେ ମଧ୍ୟ ବ୍ରହ୍ମାଣ୍ଡ ଯେ ଏକ ନୁହେଁ ଏକଥା କୁହାଯାଇଛି ବହୁଆଗରୁ । ଅନେକ ବ୍ରହ୍ମାଣ୍ଡ ଅର୍ଥାତ୍ ବ୍ରହ୍ମାଣମାଳ ମାଳ ହୋଇ ଭଗବାନଙ୍କ ଦେହରେ ରହିଛନ୍ତି ବୋଲି ଶ୍ରୀମଦ୍‌ଭାଗବତ ଗ୍ରନ୍ଥରେ ବହୁ ପୂର୍ବରୁ ଉଲ୍ଲେଖ ରହିଛି ।

ନିଜକୁ ଜାଣିବାର ସମୟ ଗଡ଼ିଯାଉଛି । ଆଉ ସମୟ ଗଡ଼ି ନଯାଉ । ବର୍ତ୍ତମାନ ଜଗତୀକରଣର ଯୁଗ । ଏତେବେଳେ ଆମକୁ ଅନ୍ୟକୁ ଜାଣିବାକୁ ହେବ । ଅନ୍ୟକୁ ଜାଣିବାକୁ ହେଲେ ଆଗ ନିଜକୁ ଜାଣିବାକୁ ହେବ । ନିଜକୁ ନ ଜାଣି ଅନ୍ୟକୁ ଆଦୌ ଜାଣି ହେବ ନାହିଁ । ନିଜକୁ ନ ଜାଣି ଯଦି କିଏ ଅନ୍ୟକୁ ଜାଣିଛି ବୋଲି ଦାବି କରେ ତେବେ ତାହା ପ୍ରଳାପ ବ୍ୟତୀତ ଆଉ କିଛି ନୁହେଁ । ବର୍ତ୍ତମାନର ସମୟ ହେଉଛି ବିଶ୍ୱନାଗରିକତ୍ୱର ସମୟ । ଏତେବେଳେ ଏକଦିଗଦର୍ଶୀ ହେଲେ ଚଳିବ ନାହିଁ, ସବୁଦିଗଦର୍ଶୀ ହେବାକୁ ପଡ଼ିବ । ଛିନ୍ନମୂଳ ନହୋଇ ନିଜ ମାଟିରେ ଦମ୍ଭରେ ଛିଡ଼ା ହୋଇ ଅର୍ଥାତ୍ ନିଜକୁ ଭଲ ଭାବରେ ଜାଣି, ତା' ସହିତ ସମସ୍ତଙ୍କୁ ଜାଣିବାକୁ ପଡ଼ିବ । ଅନ୍ୟଥା ସବୁ ଗୋଳମାଳ ଧରିଯିବ । ଆମ ଅତୀତ ଆମ ପରଂପରାକୁ ଆମକୁ ବୁଝିବାକୁ ପଡ଼ିବ, ସେଥିରୁ ସବୁକିଛି ନ ହେଉ ପଛେ ଆବଶ୍ୟକ ସାରାଂଶ ସଂଗ୍ରହ କରିବାକୁ ପଡ଼ିବ । ଅନ୍ୟଥା ନିଜର ସ୍ଥିତିକୁ ଜାଣିହେବ ନାହିଁ । ନିଜର ସ୍ଥିତିକୁ ନ ଜାଣିଲେ ବିଶ୍ୱସ୍ଥିତିକୁ କଳନା ଓ କଳ୍ପନା କରି ହେବ ନାହିଁ । ନିଜର ମାତୃଭାଷାକୁ ନ ଜାଣିଲେ ନ ବୁଝିଲେ ଅନ୍ୟଭାଷାକୁ ଯେପରି ଜାଣିଲା ପରି ଜାଣି ହୁଏ ନାହିଁ କି ବୁଝିଲା ପରି ବୁଝି ହୁଏ ନାହିଁ କଥାଟି ସେପରି । ନିଜ ଭାଷାକୁ ଜାଣିବା ସହିତ ଅନ୍ୟଭାଷାକୁ ଜାଣିବା ଓ ନିଜ ସଂସ୍କୃତିକୁ ଜାଣିବା ସହିତ ଅନ୍ୟ ସଂସ୍କୃତିକୁ ଜାଣିବା ହେଉଛି ବିଶ୍ୱନାଗରିକର ପ୍ରଥମ ଯୋଗ୍ୟତା ଓ ବିଶ୍ୱଗ୍ରାମ ଗଠନର ନିର୍ଯ୍ୟାସଗତ ପ୍ରଥମ ମୌଳିକତା । ଏହା ହେଉଛି ବର୍ତ୍ତମାନ ସମୟର ମୂଳ ଆହ୍ୱାନ । ଏଇ ଆହ୍ୱାନକୁ ଶୁଣିବାର ଦାୟିତ୍ୱ ଆମର । ଆମେ ନ ଶୁଣିଲେ ଆମ ପାଇଁ ଆଉ କିଏ ବା ଶୁଣିବ ?

❑❑

# ଈଶ୍ୱର ଏକ ଅନୁଭବ

କେତେକ କହନ୍ତି ଈଶ୍ୱର ନାହାନ୍ତି, ଆଉ କେତେକ କହନ୍ତି ଈଶ୍ୱର ଅଛନ୍ତି । ନାହାନ୍ତି ବା ଅଛନ୍ତି ବୋଲି କହିବା ଦ୍ୱାରା ଈଶ୍ୱରଙ୍କ କିଛି କ୍ଷତି ବା ଲାଭ ହୁଏ ନାହିଁ କାରଣ ଈଶ୍ୱର କଥାର କଥା ନୁହନ୍ତି, ଈଶ୍ୱର ଏକ ଅନୁଭବ, ଅନ୍ତର ଓ ହୃଦୟର ଅନୁଭବ । ଏଇ ଅନ୍ତର, ଏଇ ହୃଦୟ ମନ ରାଜ୍ୟକୁ ଡେଇଁଲେ ପଡେ । ଅନ୍ତର ଯାହା ମନ ତାହା ନୁହେଁ, ହୃଦୟ ଯାହା ମନ ତାହା ନୁହେଁ । ମନରେ ଈଶ୍ୱର ଅନୁଭୂତ ହୁଅନ୍ତି ନାହିଁ, ତେଣୁ ତ ମାନସର ଅଗୋଚର ବୋଲି କଥିତ ହୋଇଛନ୍ତି । ହୃଦୟର ରାଜ୍ୟ ମନଠାରୁ ଅଧିକ ସ୍ୱଚ୍ଛ, ନିର୍ମଳ, ଗଭୀର ଓ ପରିବ୍ୟାପ୍ତ । ଏଥିରେ ଅନୁମାନ ନୁହେଁ ଅନୁଭବ ଶକ୍ତି ଥାଏ । ମନରେ ଅନୁମାନ ଶକ୍ତି ଥାଏ । ଈଶ୍ୱରଙ୍କୁ ଅନୁମାନ ଶକ୍ତି ଦ୍ୱାରା ବୁଝି ହୁଏ ନାହିଁ, ତେଣୁ ମନ ଦ୍ୱାରା ବୁଝି ହୁଏ ନାହିଁ ।

ଈଶ୍ୱରାନୁଭବ ବଚନର ବିଷୟ ନୁହେଁ । ତାଙ୍କ ପାଇଁ ଯେଉଁ ଭାଷା ଲୋଡ଼ା ତାହା ହେଉଛି ନୀରବତାର ଭାଷା, କୃତଜ୍ଞତାର ଭାଷା । ସେ ଭାଷାର ବ୍ୟାକରଣ ଭିନ୍ନ, ଧ୍ୱନିମାଳା ଭିନ୍ନ । ସେ ପୋଥିର ଭାଷା ନୁହେଁ, ବହିର ଭାଷା ନୁହେଁ, ହୃଦୟର ଭାଷା, ଯାହାର ତୁଳନା ନାହିଁ । ଏଇ ଯେମିତି ଭଡ଼ାଘରଟିଏ ଖୋଜି ଖୋଜି ଗଳିପରେ ଗଳି ବୁଲି ବୁଲି ହାଲିଆ ହୋଇ ନ ପାଇ ଫେରିଲା ବାଟରେ ଗଳିଟିଏ ପଡ଼େ । ମନ ନାହିଁ କରେ ସେ ଗଳିକୁ ଯିବାକୁ, ତଥାପି କିଏ ଭିତରୁ କହେ 'ଯାଆ, ଯାଆ' ବୋଲି । ଗଲାବେଳକୁ 'ଘରଭଡ଼ା ଦିଆଯିବ' ବୋଲି ଲେଖାଟିଏ ଦେଖିହୁଏ । ମନପସନ୍ଦର ଘରଟିଏ ମଧ୍ୟ ସେଠାରେ ଥାଏ । ସତ କି ସ୍ୱପ୍ନ ବୋଲି ଭାବାନ୍ତର ଆସେ । ସ୍ୱପ୍ନ ନୁହେଁ ସତ୍ୟ ବୋଲି ଜାଣିହୁଏ, ଭିତରକୁ

ସ୍ୱତଃ ବାହାରି ଆସେ–'ଈଶ୍ୱର ଦୟା ଆହା କିବା ଉଦାର/ଲଘୁ କରଇ ଦୁଃଖୀ ହୃଦୟଭାର ।' ଏହା ହିଁ ଈଶ୍ୱରୀୟ ଅନୁଭବ ।

ଏଇ ଯେମିତି ଅସୁସ୍ଥତାର ଚରମ ସୀମା, ନଳୀବାଟେ ଟିକିଏ ତରଳ ଖାଦ୍ୟ, ହାତ ଗୋଡ଼ ହଲାଇବାକୁ ବଳ ନାହିଁ । ଚିହ୍ନାଅଚିହ୍ନା ଏକାପରି ଲାଗୁଛନ୍ତି । ପାଖଲୋକ ବିଚଳିତ, ବିବ୍ରତ, ଏକପ୍ରକାର ଆଶା ଛାଡ଼ି ଦେଇଛନ୍ତି । ଡାକ୍ତରମାନଙ୍କର ଯତ୍ନ ଏବଂ ଔଷଧର ବ୍ୟବହାର ଅବ୍ୟାହତ । କ'ଣ ହୁଏ ଯେ ଧୀରେ ଧୀରେ ହାତ ଗୋଡରେ ବଳ ଆସେ, ଚିହ୍ନା ଅଚିହ୍ନା ବାରି ହୁଏ, ଆଲୁଅ ଦିଶେ, ସୂର୍ଯ୍ୟ ଉଦୟ ହୁଏ । କିଛି ଲୋକ କହନ୍ତି ପଛ ଔଷଧଟା ବାଇଟାନ୍ସ କାମ କଲାରୁ ରାତି ପାହିଲା, ସକାଳ ହେଲା ଅର୍ଥାତ୍ ରୋଗୀ ସୁସ୍ଥ ହେଲା । ଆଉ କିଛି ଲୋକ କହନ୍ତି ଭଗବାନଙ୍କ କୃପାରୁ ଅସୁସ୍ଥତା ଦୂର ହେଲା । ପ୍ରଥମ କଥାରେ ଔଷଧ ଥିଲା ସର୍ବଶ୍ରେଷ୍ଠ, ମାତ୍ର ଦ୍ୱିତୀୟ ମତରେ ଔଷଧ ଥିଲା ସର୍ବଶ୍ରେଷ୍ଠ ମାଧ୍ୟମ । ଭଗବତ୍ କରୁଣା ଡାକ୍ତର ଓ ଔଷଧ ମାଧ୍ୟମରେ କାର୍ଯ୍ୟକାରୀ ହେଲା । ସେତେବେଳେ ବୁଝିହୁଏ ଯେ, ଆମ ଅଲକ୍ଷ୍ୟରେ କିଏ ଆମ ପ୍ରତି ଲକ୍ଷ୍ୟ ରଖିଛି । ସେ ଆଉ କେହି ନୁହନ୍ତି, ସେ ଏକ ବିରାଟ ଶକ୍ତି, ଏକ ମହାଚେତନା, ଯାହାଙ୍କର କଳନା ନାହିଁ ।

ଈଶ୍ୱର ସମସ୍ତଙ୍କ ପାଇଁ ଅଛନ୍ତି । ଜାତି, ଧର୍ମ ବର୍ଣ୍ଣର ଭେଦଭାବ ତାଙ୍କ ପାଖରେ ନାହିଁ । ସେ ସମସ୍ତଙ୍କର ଓ ସମସ୍ତେ ତାଙ୍କର ହୋଇ ରହିଛନ୍ତି । ଆମେ ତାଙ୍କୁ କିଏ କେଉଁ ନାମରେ, କେଉଁଦିନ, କେଉଁବେଳରେ ଡାକୁ ତାହା ଭିନ୍ନ କଥା । ତାହା ଦ୍ୱାରା ଈଶ୍ୱର ଭିନ୍ନ ହୋଇଯାଆନ୍ତି ନାହିଁ, ବଦଳିଯାଆନ୍ତି ନାହିଁ । ଯେପରି ପାଣି ବୋଲି କହିଲେ ଯେଉଁ ପାଣିକୁ ବୁଝାଏ, ନିରୁ ବୋଲି କହିଲେ, ଓ୍ୱାଟର କହିଲେ, ଜଳ କହିଲେ ସେହି ପାଣିକୁ ହିଁ ବୁଝାଏ । ପାଣି ବଦଳେ ନାହିଁ ।

ଅତଏବ ଈଶ୍ୱରାନୁଭବ ହିଁ ମଣିଷ ଜୀବନର ସାର୍ଥକତା । ଏଇ ଅନୁଭବ ପାଇଁ ଆୟୋଜନ, ଆଡ଼ମ୍ବର ଅନାବଶ୍ୟକ । ଆବଶ୍ୟକ ହେଉଛି ସଂକୀର୍ଣ୍ଣତା ନୁହେଁ ପ୍ରସାରଣ, ନିମ୍ନପ୍ରକୃତି ନୁହେଁ ଉଚ୍ଚପ୍ରକୃତି, ଅହଙ୍କାର ନୁହେଁ ଆତ୍ମଚେତନା । ଆମର କାର୍ଯ୍ୟ ହିଁ ତାଙ୍କ ପାଇଁ ପୂଜା । ଅନ୍ୟ ପାଇଁ ଶୁଭେଚ୍ଛା ହିଁ ସେ ପୂଜାର ଧ୍ୱନିମାଳା । ଅନୁଭବ ପାଇଁ ଆବଶ୍ୟକ ଆଗ୍ରହ ଓ ଅଭ୍ୟାସ । ସେହି ମହାଚେତନା ଯିଏ ସକାଳକୁ ସନ୍ଧ୍ୟା ଏବଂ ସନ୍ଧ୍ୟାକୁ ସକାଳ କରୁଛନ୍ତି, ଯିଏ କଢ଼ିଟିକୁ ଫୁଲରେ ପରିଣତ କରି ଦେଉଛନ୍ତି, ଯିଏ ବୃକ୍ଷଲତାରେ ଔଷଧୀୟ ଗୁଣ ଭରି ଦେଇଛନ୍ତି, ଯିଏ ଫୁଲରେ ଫୁଲରେ ରଙ୍ଗ ମାଖି ଦେଇଛନ୍ତି, ଯିଏ ଫଳରେ ଫଳରେ ରସ ରଖି ଦେଇଛନ୍ତି, ଯିଏ ଅମ୍ଳଜାନ ହୋଇ ପ୍ରାଣୀଜଗତକୁ ବଞ୍ଚାଇ ରଖିଛନ୍ତି, ପଞ୍ଚଭୂତ ହୋଇ ଏଇ ଭୌତିକ ଜଗତରେ ପରିଣତ ହୋଇଛନ୍ତି, ତାଙ୍କ ପାଇଁ ଟିକିଏ

ଆଗ୍ରହ ତଥା ଶ୍ରଦ୍ଧା ଆବଶ୍ୟକ । ସେ ବସ୍ତୁ ଚାହାନ୍ତି ନାହିଁ କାରଣ ସବୁ ବସ୍ତୁ ବାସ୍ତବରେ ତାଙ୍କର, ଆମକୁ ବ୍ୟବହାର କରିବାକୁ ସେ ହିଁ ଦେଇଛନ୍ତି । ସେ ଚାହାନ୍ତି ଶ୍ରଦ୍ଧା । ସେଇ ଶ୍ରଦ୍ଧାର ପଟାନ୍ତର ନାହିଁ । ଶ୍ରଦ୍ଧା ବଳରେ ତାଙ୍କ ଅନୁଭବ ଆସିବା ସହିତ ତାଙ୍କ ସହ ଯୁକ୍ତ ହୋଇ ରହିବାର ସୌଭାଗ୍ୟ ମିଳେ । ତାଙ୍କ ସହିତ ଯୁକ୍ତ ହୋଇ ରହିଲେ ଶାନ୍ତି, ଶୀତଳତା, ମାଦକତା, ଆନନ୍ଦ ପ୍ରକୃତି ଦିବ୍ୟ ଅନୁଭବ ମାନ ଆସିଥାଏ । ଇନ୍ଦ୍ରିୟମାନେ ଆମକୁ ସୁଖ ଦେଇପାରନ୍ତି ମାତ୍ର ଶାନ୍ତି ନୁହେଁ । ଶାନ୍ତି, ସନ୍ତୋଷ, ଆନନ୍ଦ ପ୍ରଭୃତି ଦୁର୍ଲ୍ଲଭ କଥା ସବୁକୁ ଈଶ୍ୱରାନୁଭବ ଦେଇପାରେ ।

ଏଥିପାଇଁ ବଡପଦବୀ, ବହୁକ୍ଷମତା, ବଡ଼ବଡ଼ ଡିଗ୍ରୀ, ବହୁ ଧନ, ବହୁ ବନ୍ଧୁବାନ୍ଧବ, ବହୁ ଯଶ ସେ ନିହାତି ଦରକାର ଏପରି ନୁହେଁ । ଏସବୁ ଥାଇପାରେ ନଥିଲେ ମଧ୍ୟ କିଛି କ୍ଷତି ନାହିଁ । ଦେହ, ପ୍ରାଣ, ମନ ଯଦି ସମର୍ପିତ ଈଶ୍ୱରଙ୍କ ନିକଟରେ ତା' ହେଲେ ଜୀବନ ଧନ୍ୟ । ଅହଙ୍କାର ନିକଟରେ ସମର୍ପିତ ହୋଇଗଲେ ଜୀବନ ଶୂନ୍ୟଶୂନ୍ୟ ମହାଶୂନ୍ୟ ।

ଈଶ୍ୱରାନୁଭବ ପାଇଁ କାର୍ଯ୍ୟର ବଡ଼ ସାନ ଭେଦ ନାହିଁ । ଯେଉଁ କାମ ସେ ଆମକୁ ଦେଇଛନ୍ତି କରିବାପାଇଁ, ଆମେ ତାହା ହିଁ କରୁଛୁ । ସାନ ବଡ଼ କାମର ତୁଳନା ଆମ ମନର, ଈଶ୍ୱରଙ୍କର ନୁହେଁ । ଆମକୁ ମିଳିଥିବା କାମ ଯଦି ଆମକୁ ଆତ୍ମସନ୍ତୋଷ ଦେଉଛି, ତେବେ କଥାଟି ଠିକ୍ ଅଛି, ଯଦି ଆତ୍ମ ସନ୍ତୋଷ ଦେଉ ନାହିଁ, ତେବେ ବୁଝିବାକୁ ହେବ ଯେ କେଉଁଠାରେ କିଛି ଗୋଟାଏ ଭୁଲ୍ ରହିଯାଇଛି । କାମଟିକୁ କେଉଁ ମନୋଭାବ ନେଇ କରାଯାଉଛି, ତାହା ହିଁ ଅସଲ କଥା । ଯଥାର୍ଥ ମନୋଭାବ ନେଇ କର୍ମ ସମ୍ପାଦନ କଲେ ଆତ୍ମସନ୍ତୋଷ ଅବଶ୍ୟ ମିଳିଥାଏ । କର୍ମ ହିଁ ଈଶ୍ୱରଙ୍କ ପାଇଁ ଉପଯୁକ୍ତ ଉପାସନାର ଉପଚାର । ଶ୍ରୀଅରବିନ୍ଦଙ୍କ ମତରେ କର୍ମ ହେଉଛି ଶରୀର ପ୍ରାର୍ଥନା । ଶ୍ରୀମା କହନ୍ତି-''ଯେତେ ପାର ସେତେ କମ୍ କଥା କୁହ, ଯେତେ ପାର ସେତେ ଅଧିକ କର୍ମ କର ।''

ଜୀବନଚିନ୍ତା ଈଶ୍ୱରାନୁଭବ ପାଇଁ ସର୍ବଶ୍ରେଷ୍ଠ ଅନୁଚିନ୍ତା । ନିଜର ଦୋଷ, ଭୁଲ୍ ପ୍ରତି ସଚେତନ ହେବା ପ୍ରାଥମିକ ଆବଶ୍ୟକତା । ନିଜ ଭିତରେ ଥିବା ନିମ୍ନ ପ୍ରକୃତିକୁ ଜାଣିବା ଏବଂ ସେଗୁଡ଼ିକୁ ଛାଡ଼ିବା ପାଇଁ ଚେଷ୍ଟା କରିବା ହିଁ ଅସଲକଥା । ପ୍ରକୃତରେ ଆମ ନିମ୍ନ ପ୍ରକୃତି ଈର୍ଷା, ହିଂସା, କ୍ରୋଧ, ଲୋଭ, ଛଳନା, ଘୃଣା, ସ୍ୱାର୍ଥପରତା, ମିଥ୍ୟାଚାର ପ୍ରଭୃତି ଅନେକ ବାଟ ଦେଇ ପ୍ରକଟିତ ହୋଇ ଆମକୁ କଷ୍ଟ ଦେଇଥାଏ । ଆମେ ଏକଥା ଜାଣି ନ ପାରି ଅନ୍ୟମାନଙ୍କ ଉପରେ ଦୋଷ ଲଦିଦେଉ । ଆମେ ଏହା ଜାଣିବା ପରେ ନିମ୍ନପ୍ରକୃତିରୁ ମୁକ୍ତ ରହିବା ପାଇଁ ପ୍ରୟାସ ଓ ପ୍ରଚେଷ୍ଟା କରିବା ଆବଶ୍ୟକ । ଜୀବନଚିନ୍ତା

ଦ୍ୱାରା ଅର୍ଥାତ୍ ନିଜ ବିଷୟରେ ନିଜେ ଟିକିଏ ଭାବିବା ଦ୍ୱାରା ଏଇ ନିମ୍ନ ପ୍ରକୃତିକୁ ଚିହ୍ନିହେବ ଏବଂ ଜାଣିହେବ । ନିମ୍ନ ପ୍ରକୃତି ନ ବଦଳିଲେ ଈଶ୍ୱରାନୁଭବ ହେବ ନାହିଁ । ଏକ ସମୟରେ ରାତି ଓ ଦିନ ସମାନ ଭାବରେ ରହିପାରନ୍ତି ନାହିଁ । ସେହିପରି ଏକ ସମୟରେ ନିମ୍ନ ପ୍ରକୃତି ଓ ଈଶ୍ୱରାନୁଭବ ରହିପାରିବେ ନାହିଁ । ନିମ୍ନ ପ୍ରକୃତି ଯେତିକି ଯେତିକି କମିବ ଈଶ୍ୱରଙ୍କ ଅନୁଭବ ସେତିକି ସେତିକି ବଢିବାର ସୁଯୋଗ ମିଳିବ । ପୂଜାପାଠ, ଉପବାସ ସହାୟକ ହୋଇପାରନ୍ତି ।

ଈଶ୍ୱର ନାହାନ୍ତି ବୋଲି କହୁଥିବା ଲୋକମାନେ ଈଶ୍ୱରଙ୍କ ସ୍ଥିତିକୁ ପରୋକ୍ଷରେ ସ୍ୱୀକାର କରନ୍ତି ଏବଂ ଈଶ୍ୱର ଅଛନ୍ତି ବୋଲି କହୁଥିବା ଲୋକମାନେ ଈଶ୍ୱରଙ୍କର ସ୍ଥିତିକୁ ପ୍ରତ୍ୟକ୍ଷରେ ସ୍ୱୀକାର କରନ୍ତି । ସ୍ୱୀକାର ଯଥେଷ୍ଟ ନୁହେଁ, କର୍ମ ମାଧ୍ୟମରେ ଈଶ୍ୱରଙ୍କର ଅନୁଭବ ହିଁ ଜୀବନର ପରିପୂର୍ଣ୍ଣତା । ଅନୁଭବର ଅନ୍ୟନାମ ଆଧ୍ୟାତ୍ମିକତା ଯାହା ଭାରତୀୟ ସଂସ୍କୃତିର ମୌଳିକତା ଓ ମହନୀୟତା । ଈଶ୍ୱରାନୁଭବର ମୂଳକଥା ହେଉଛି ମାନବିକତା ।

❑❑

# ଜାଣିଲେ ଜିଣିବା ଆମେ

ତୁମେ ଏତେ ଚିନ୍ତିତ ରହୁଛ କାହିଁକି ମିଶ୍ରେ ! ପଚାରିଲେ ଷଡଙ୍ଗୀଏ । ମିଶ୍ରେ କହିଲେ- 'କାହିଁ କିଛି ଭଲ ଲାଗୁନି । ବୟସ ଯେତେ ବଢ଼ିଯାଉଛି, ଅତୀତ ସେତେ ଅଧିକ ମନେ ପଡୁଛି । ଚିତ୍ର ପରି ଆଖି ଆଗରେ ଭାସି ଯାଉଛି ଅତୀତ, ଅଲରାବଲରା ହୋଇ କେତେ ସ୍ମୃତି ମଝିରେମଝିରେ ପଶି ଆସୁଛନ୍ତି । ଗୋଟିଏ ସ୍ମୃତି ଘରଣ ନ ସରୁଣୁ ଆଉ ଗୋଟିଏ ସ୍ମୃତି ପଶି ଆସୁଛି । ଗଲାଦିନ, ଗଲାକଥା, ଗଲାଚଳଣି ମନେ ପଡ଼ି ମନ ମଳ୍ଲି ହେଉଛି । ଫିଙ୍ଗି ହେଉନାହିଁ, ଆଡ଼େଇ ଦେଲେ ଦଳ ପୋଖରୀର ତୁଠକୁ ପୁଣି ଦଳ ମାଡି ଆସୁଛି । ଭାରି ବ୍ୟସ୍ତ ଲାଗୁଛି, ହତାଶ ଲାଗୁଛି ।'

ଷଡଙ୍ଗୀଏ କହିଲେ-'ତୁମ ଚଷମାଟି ପୁରୁଣା ହୋଇ ଗଲାଣି । ଘଷି ହୋଇ କାଚ ତା'ର ପାଣିଚିଆ ଗାରଗାରିଆ ହୋଇଗଲାଣି, ତୁମେ ଆଗ କାଚ ବଦଳାଅ,ତାପରେ ସବୁକଥା ଠିକ୍ ଦିଶିବ, ସବୁକଥା ବାଗ ଲାଗିବ । ଚଷମା କାଚ ବଦଳିବା ଅର୍ଥ ଦୃଷ୍ଟିଭଂଗୀ ବଦଳିବା । ଦୃଷ୍ଟିଭଂଗୀ ବଦଳିଲେ ହିଁ ଦୃଶ୍ୟ ବଦଳିବ । ଅର୍ଥାତ ତୁମ ପାଇଁ ଦୃଶ୍ୟ ବଦଳିଯିବ । ଯେଉଁ ଦୃଶ୍ୟ ତୁମପାଇଁ ଦୃଷ୍ଟି କଟୁ ହେଉଥିଲା ଆଉ ସେପରି ହେବ ନାହିଁ । ପରିବେଶ କ୍ରମେ କ୍ରମେ ବଦଳିଯିବ । ତୁମ ମନ ଶାନ୍ତ ହେବ, ପ୍ରାଣ ଶୀତଳ ହେବ, ଶରୀର ସୁସ୍ଥ ରହିବ ।'

ବାସ୍ତବରେ ମନ ସହିତ ଶରୀରର ସଂପର୍କ ଅତିନିବିଡ଼ । ଥରେ ଯଦି ଚିନ୍ତା ଗଭୀର ହୋଇ ଅବଚେତନକୁ ଛୁଇଁଯାଏ, ତେବେ ସାଂଘାତିକ ଅସୁସ୍ଥତା ଆସେ । ପ୍ରତିଜୀବକୋଷ ହାଲିଆ ହୋଇପଡନ୍ତି, ଫଳରେ ଶରୀର ଭିତର ବାହାରର ଅଙ୍ଗ ପ୍ରତ୍ୟଙ୍ଗ କ୍ରମଶଃ ଅକାମୀ ହୋଇ ଯାଆନ୍ତି । ସ୍ୱାସ୍ଥ୍ୟ ପରୀକ୍ଷାରୁ ଅତ୍ୟଧିକ କିଛି ଅସୁବିଧା ବାହାରୁ କି ନ ବାହାରୁ

ଅସୁସ୍ଥତା ଲାଗି ରହେ । ଆସ୍ତେ ଆସ୍ତେ ଶକ୍ତି ନଷ୍ଟ ହୁଏ ଏବଂ ଶରୀର ବହୁ କ୍ଷୟକ୍ଷତିର ସମ୍ମୁଖୀନ ହୁଏ । ଏକଥା ଜାତି ଧର୍ମ ବର୍ଣ୍ଣ ଓ ବୟସ ନିର୍ବିଶେଷରେ ସମସ୍ତଙ୍କ ପାଇଁ ସତ୍ୟ ।

ଏହିପରି ଅସୁସ୍ଥତା ତଥା କ୍ଷୟକ୍ଷତିରୁ ରକ୍ଷା ପାଇବା ନିମନ୍ତେ ଖୁସି ରହିବା ଏକାନ୍ତ ଜରୁରୀ । ଖୁସୀ ରହିଲେ ହିଁ ଜୀବନରେ ସରସତା ରହିବ । ଜୀବନକୁ ଟିକିଏ ଅନୁଭବ କରି ହେବ । ଖୁସି ଭାବ ପ୍ରତିଷେଧକ ପରି କାମ ଦେବ ପୁଣି ଔଷଧ ପରି କାମ ଦେବ । ଆଧୁନିକ ଗବେଷଣା ଲବ୍ଧଜ୍ଞାନ ଅନୁସାରେ ଖୁସି ରହିଲେ ଶରୀରର ସ୍ନାୟୁ ଶିରା ସତେଜ ରହିବା ସହିତ ହୃତ୍‌ପିଣ୍ଡର କ୍ରିୟା ନିୟନ୍ତ୍ରିତ ହୋଇଥାଏ । ଖୁସି ଭାବ ରହିଲେ ବିପଦର ଢେଉ ଭାଙ୍ଗିବା ସହଜ ହୋଇଯାଏ । ଅବସାଦ ସହଜରେ ମନ ଭିତରେ ପଶିପାରେ ନାହିଁ । ଅବସାଦ ହିଁ ସମସ୍ତ ଅସୁବିଧା, ଅଶାନ୍ତି ଓ ଅସନ୍ତୋଷକୁ ବହୁଗୁଣିତ କରିଦିଏ । ଖୁସିଭାବ ଅତି ଓଜନିଆ ବାତାବରଣକୁ ହାଲକା କରେ, ଅଡୁଆ ସୂତାର ଗଣ୍ଠି ଫିଟାଇ ଦିଏ । ବର୍ତ୍ତମାନ ପ୍ରଶ୍ନ ହେଲା ଯେ ଏଇ ଖୁସି ଭାବ ମିଳିବ କେଉଁଠାରୁ ? ଉତ୍ତରରେ କୁହାଯାଇପାରିବ ଯେ ମିଳିବ ଭିତରୁ, ବାହାରୁ ନୁହେଁ । ଧନ, ଜନ, ଯଶ, କ୍ଷମତା, ସମ୍ମାନର ପରିମାଣରୁ ଏହା ମିଳେ ନାହିଁ । ଏସବୁଥିରୁ ମିଳେ ସୁଖ ଯାହା ଅସ୍ଥାୟୀ ଓ ହାଲ୍‌କା । ଏହା ଆସେ ଏବଂ ଯାଏ, ବେଶୀ ଦିନ ରହେ ନାହିଁ । ସୁଖ ଅସ୍ଥାୟୀ ହେଲାବେଳେ ଖୁସି ଭାବ ଜନିତ ଶାନ୍ତି ସ୍ଥାୟୀ ହୋଇଥାଏ । ଏହା ସମସ୍ତଙ୍କ ଭିତରେ ଥାଏ, ମାତ୍ର ଚାପାପଡ଼ି କେତେକଙ୍କ ଭିତରେ ରହିଥାଏ । ଉପଯୁକ୍ତ ଶିକ୍ଷା, ପ୍ରେରଣା, ପରିବେଶ ପାଇଲେ ଏହା ପ୍ରକଟିତ ହୁଏ । ଏହା ଧନସଂପଦ, ମାନଯଶର ପରିମାଣ ଉପରେ ନିର୍ଭର କରେ ନାହିଁ, ଗୁଣାତ୍ମକତା ଉପରେ ନିର୍ଭର କରେ । ଶାନ୍ତି ପାଇଁ ସର୍ତ୍ତ ନଥାଏ ଅର୍ଥାତ ଏତିକି ଧନ ମିଳିଲେ ମୁଁ ଶାନ୍ତିରେ ରହିବି, ଏତିକି ଯଶ ପାଇଲେ ମୁଁ ଖୁସିରେ ରହିବି–ଏପରି କଥା ନଥାଏ । ଯାହା ମିଳିଛି ତହିଁରେ ଶାନ୍ତି ଖୋଜିବାକୁ ହୁଏ, ଖୋଜିଲେ ମିଳେ, ନ ଖୋଜିଲେ ନୁହେଁ । ଖୁସିଭାବ ସ୍ୱତଃ ନ ଆସିଲେ ଇଚ୍ଛା କରି ଖୁସି ରହିବାକୁ ହେବ, ଅଭ୍ୟାସ କରି ଖୁସି ରହିବାକୁ ପଡ଼ିବ ।

ପୁଣି ପ୍ରଶ୍ନ ଆସିବ ଯେ ଏତେ ଅସୁବିଧା ଭିତରେ ଖୁସି ଭାବ ଆସିବ କିପରି ? ଯାହାର ସିନା ସବୁ ସୁବିଧା ଅଛି ସେ ଖୁସିରେ ରହିବ । ଏହାର ଉତ୍ତର ହେଉଛି– ତମର କିଛି ନାହିଁ ବୋଲି କୁହ ନାହିଁ, କିଛି ନିଶ୍ଚୟ ଥିବ, ଖୋଜି ବାହାର କର, ନ ଖୋଜିଲେ ମିଳିବ କିପରି ? ଯାହା ମିଳିଲା ତାକୁ ପୁଞ୍ଜି କରି ଖୁସି ରହ । ଯେଉଁ ଯେଉଁ ଅସୁବିଧା ଆସିଛି ଓ ଆସୁଛି ତା' ପ୍ରତି ଦୃଷ୍ଟିଭଂଗୀ ବଦଳାଅ । ତାହା ହେଲେ ଅସୁବିଧା କମିଯିବ । ପ୍ରଥମ କଥା ହେଲା ଅସୁବିଧା ବିଷୟରେ ଦିନରାତି ଭାବ ନାହିଁ, ଏତେ ବେଶୀ ଭାବ ନାହିଁ । ନ ଭାବିଲେ ଅସୁବିଧାର ତୀବ୍ରତା କମିଯିବ । ଶ୍ରୀମାଙ୍କ କଥାରେ–'ଅସୁବିଧା ଉପରେ ଏତେ ଏକାଗ୍ର ହୁଅ ନାହିଁ । ଏକାଗ୍ର ହେଲେ ଅସୁବିଧା ଭାବିବ ଯେ ତୁମେ ତାକୁ ଆବାହନ କରୁଛ, ଫଳରେ ସେ ତା'ର କାୟା ବିସ୍ତାର କରିବ ।'

ଖୁସିଭାବ ସହିତ ଶାନ୍ତିରେ ରହିବାର ଆଉ ଗୋଟିଏ ବାଟ ରହିଛି । ତାହା ହେଉଛି ଭାଗବାନଙ୍କ ଉପରେ ବିଶ୍ୱାସ ଓ ଭରସା ରଖିବା । ଏଥିପାଇଁ ଭଗବାନଙ୍କୁ ସ୍ମରଣ କରିବାକୁ ଅର୍ଥାତ ଡାକିବାକୁ ପଡିବ । କେଉଁ ନାମରେ, କେତେବେଳେ ଓ କେଉଁଠାରେ ଭଗବାନଙ୍କୁ ଡାକିବାକୁ ହେବ, ତାହା ଏକାନ୍ତ ବ୍ୟକ୍ତିଗତ । ନାମ ଭିନ୍ନଭିନ୍ନ ହେଲେ ହେଁ ଭଗବାନ ଏକ ଓ ଅଭିନ୍ନ । ଡାକିବାର ପ୍ରଣାଳୀ ଭିନ୍ନ ଭିନ୍ନ ହେଲେ ମଧ୍ୟ ଭଗବାନ ଭିନ୍ନ ହୁଅନ୍ତି ନାହିଁ । ଡାକିବାର ସମୟ ଭିନ୍ନ ଭିନ୍ନ ହେଲେ ମଧ୍ୟ, ସବୁସମୟ ଭଗବାନଙ୍କର, ତେଣୁ ସେ ସବୁ ସମୟରେ ଶୁଣନ୍ତି । ଏକଥା ପ୍ରତ୍ୟେକ ଧର୍ମ ଓ ପ୍ରତ୍ୟେକ ସଂପ୍ରଦାୟ ପାଇଁ ସତ୍ୟ । ସବୁକିଛି ତାଙ୍କର ଦାନ ବୋଲି ଭାବିଲେ ଦୁଃଖ ହାରିଯିବ ହିଁ ଯିବ, ଏଥିରେ ସନ୍ଦେହ ନାହିଁ । ସେତ କର୍ତ୍ତା, କର୍ମ ଓ କରଣ । ସେ ଗଢ଼ନ୍ତି ପୁଣି ଭାଙ୍ଗନ୍ତି । ଭାଙ୍ଗିବାରୁ ଗଢ଼ନ୍ତି ଏବଂ ଗଢ଼ିବା ପାଇଁ ଭାଙ୍ଗନ୍ତି । ଏ ତ ତାଙ୍କର କାର୍ଯ୍ୟ, ନିତିଦିନିଆ କାର୍ଯ୍ୟ । ସବୁକଥା ସିଏ ଦିଅନ୍ତି, ପୁଣି ସିଏ ହିଁ ନିଅନ୍ତି । କାହିଁକି ଦେଲେ ସେ ଜାଣନ୍ତି ପୁଣି କାହିଁକି ନେଲେ ସେ ଜାଣନ୍ତି । ଆମେ ଭାବି ଭାବି ବାଟବଣା ନ ହେବା ଭଲ ।

ଭଗବାନ ପୁଣି ନିଜେ ଆସନ୍ତି ଭିନ୍ନ ଭିନ୍ନ ରୂପରେ, ଭିନ୍ନ ଭିନ୍ନ ବାଗରେ ଆମପାଖକୁ ଆମ ଭଲ ପାଇଁ । ଆମେ କିନ୍ତୁ ତାହା ଜାଣୁ ନାହିଁ । ସେ ଶୀତ ହୋଇପତ୍ର ଝଡ଼ାଇ ଦିଅନ୍ତି ପୁଣି ବସନ୍ତ ହୋଇ ପତ୍ରରେ ଗଛକୁ ବେଢ଼ାଇ ଦିଅନ୍ତି । ସେ ହିଁ ଶୀତ, ସେ ହିଁ ବସନ୍ତ । ଅଭାବ ତାଙ୍କର, ଭାବ ମଧ୍ୟ ତାଙ୍କର । ପୁଣି ସେ ହିଁ ଭାବ, ସେ ହିଁ ଅଭାବ । ଅଭାବ ବେଳେ ସେ ଆମ ପାଖକୁ ଅଭାବ ରୂପରେ ଆସଛନ୍ତି ବୋଲି ଭାବିଲେ ଅଭାବର ଦାଢ଼ ବହୁତ କମିଯିବ । ଦୁଃଖବେଳେ ସେ ଆମ ପାଖକୁ ସେଇ ରୂପରେ ଆସିଛନ୍ତି ବୋଲି ଭାବିଲେ ଦୁଃଖର ଦାଉ ବହୁ ପରିମାଣରେ କମିଯିବ । ଅସୁବିଧା ବେଳେ ସେ ଆମ ପାଖକୁ ଅସୁବିଧା ରୂପରେ ଆସିଛନ୍ତି ବୋଲି ଭାବିଲେ ଅସୁବିଧାର ଯନ୍ତ୍ରଣା କମିଯିବ । ତାଙ୍କ ଉପରେ ଭରସା ଓ ବିଶ୍ୱାସ ରଖିବା ପରେ ଯାହା ଘଟିଲା ତାହାର ଆଉ ତର୍ଜମା ନ କରି ତାଙ୍କ ଇଚ୍ଛା ବୋଲି ଭାବି ମନକୁ ହାଲ୍‌କା କରିବାକୁ ହେବ । ସେତେବେଳେ ମନ ସ୍ୱତଃ କହିବ 'ଇଶ୍ୱରେଚ୍ଛା ବଳିୟସୀ ।'

ରାଜାଙ୍କର ବନ ଗହନରେ ଝୁଣ୍ଟିପଡି ଅଙ୍ଗୁଳି ଖଣ୍ଡିଆ ହୋଇଗଲା ବୋଲି ବଳି ପଡ଼ିବା ପାଇଁ ସେ ଅଯୋଗ୍ୟ ବିବେଚିତ ହେଲେ । ଇଚ୍ଛା କରି କେହି ଝୁଣ୍ଟେ ନାହିଁ କି ରଜା ମଧ୍ୟ ଝୁଣ୍ଟି ନଥିଲେ । ସେହିପରି ଅସୁବିଧା କେହି ଲୋଡ଼େ ନାହିଁ, ତଥାପି ଅସୁବିଧା ଆସେ । ଅସୁବିଧା ଆସେ, କିଛି ସୁବିଧା ଆସିବାର ବାର୍ତ୍ତା ନେଇ-ଏ କଥା ସହଜରେ ବୁଝି ହୁଏ ନାହିଁ । ମାତ୍ର ବୁଝିବାକୁ ଚେଷ୍ଟାକଲେ ଅବୁଝା ରହେ ନାହିଁ । ଶୀତ ଆସେ ବସନ୍ତର ବାର୍ତ୍ତା ଦେବାପାଇଁ, ଆଗସିନା ବୁଝି ହୁଏ ନାହିଁ, ପରେ ବୁଝି ହୁଏ, ହେଲେ ଆଗରୁ ବୁଝିବା ହିଁ ବୁଦ୍ଧିମାନର କାର୍ଯ୍ୟ ।

◻◻

# ଅନୁଚିନ୍ତା

ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ ଜୀବନକୁ ଅଧିକ ବହିର୍ମୁଖୀ କରାଇଛି । ଖାଇବା ପିଇବା ବୁଲିବା ଚାଲିବା ଫୂର୍ତ୍ତି କରିବାରେ ପ୍ରମତ୍ତ କରାଇଛି । ଭିତରକୁ ନଗମି ଉପରେ ଭାସିବାକୁ ଜୀବନ ବୋଲି ବୁଝାଇ ଦେଇଛି । ନିଜକୁ ବଡ଼ ମନେ କରି ଅନ୍ୟକୁ ସାନ ମନେ କରିବା ଏବଂ ନିଜ ପ୍ରଶଂସାର ଢୋଲ ନିଜେ ବାଡ଼େଇବାକୁ ବତାଇଛି । ଗୋଟିଏ ଶବ୍ଦରେ କହିଲେ ଆମ ଭିତରେ ଥିବା ଅହଂକାରକୁ ବଢ଼ାଇ ଦେଇଛି । କଥା କଥାକେ 'ମୁଁ' ଆଉ 'ମୋର' ଶବ୍ଦର ବହୁଳ ବ୍ୟବହାର ଶିଖାଇ ଦେଇଛି । ଲେଖକଙ୍କଠାରୁ ବକ୍ତାଙ୍କ ପର୍ଯ୍ୟନ୍ତ ପ୍ରାୟ ପ୍ରତ୍ୟେକ ଆତ୍ମବଡ଼ିମା ଗାଇବାକୁ ଶ୍ରେୟ ମଣୁଛନ୍ତି । ବିଷୟବସ୍ତୁ ଯୁଆଡ଼େ ଯାଉ ନିଜ କଥା କହିବା ପାଇଁ ସୁଯୋଗଟିଏ ମିଳି ଯାଇଛି ବୋଲି ବିଚାର କରୁଛନ୍ତି ।

ବିଜ୍ଞାନର ବହୁମୂଲ୍ୟ ଅବଦାନ ଫଳରେ ବସ୍ତୁ ଓ ତାହାର ବ୍ୟବହାର ବଢ଼ିଛି । ପ୍ରଯୁକ୍ତି ବିଦ୍ୟାର ମାଧ୍ୟମରେ ବୈଜ୍ଞାନିକ ତତ୍ତ୍ୱର ଯଥାର୍ଥ ପ୍ରୟୋଗ ନିମନ୍ତେ ବହୁ ସୁଯୋଗ ସୃଷ୍ଟି ହୋଇଛି । ଏସବୁ ସତ୍ତ୍ୱେ ମଣିଷର ମନ ବଡ଼ ହୋଇନାହିଁ । ବରଂ ଦିନକୁ ଦିନ ଅଧିକରୁ ଅଧିକ ଅହଂକୈନ୍ଦ୍ରିକ ହୋଇ ସାନ ହୋଇଯାଉଛି । ଏତେ ସାନ ହୋଇ ଯାଉଛି ଯେ ସେ ରାକ୍ଷସ ପାଲଟି ଯାଉଛି । ଚୋରି ଡକାୟତି ଠକାମି ତା' ପାଇଁ ସାମାନ୍ୟ ସାଧାରଣ କଥା ହୋଇ ଗଲାଣି । ଧର୍ଷଣ, ହତ୍ୟା, ଲୁଣ୍ଠନ ମଧ୍ୟ ସାଧାରଣ କଥା ହେବାକୁ ବସିଲାଣି । ଆଳସ୍ୟ ଏବଂ କର୍ମକୁଣ୍ଠା ଏସବୁ ଅକାର୍ଯ୍ୟର ଏକ ଏକ କାରଣ ହେଲାବେଳେ ଅନ୍ୟକାରଣ ଗୁଡ଼ିକ ହେଉଛି କାମନାବାସନା, ବସ୍ତୁର ଦାସତ୍ୱ ପୁଣି ବୁଦ୍ଧିର ପ୍ରୟୋଗ । ଏ ବୁଦ୍ଧି ବିକାଶର ବୁଦ୍ଧି ନୁହେଁ, ବିନାଶର ବୁଦ୍ଧି, କୁବୁଦ୍ଧି ବା ଦୁଷ୍ଟବୁଦ୍ଧି । ଏ ବୁଦ୍ଧି ଧ୍ୱଂସ

କରେ ମଣିଷ ପଣିଆ, ଜୀବନର ସରସତା, ମଧୁମୟତା ପୁଣି ପରିବେଶର ସ୍ୱାଭାବିକତା । ନୈତିକତାକୁ ପୋଡ଼ିଜାଳି ଖାଇଯାଏ, ବିବେକ ବିଚାରକୁ ଜଳାଞ୍ଜଳି ଦେଇଦିଏ । ମାତୃଜାତିର ଅବମାନନାକରେ, ତା'ର ସର୍ବନାଶ ଘଟାଏ, ନିଜ ମୁହଁରେ କେବଳ ନୁହେଁ ସାରାମାନବ ପ୍ରଜାତି ମୁହଁରେ କଳା ବୋଳି ଦିଏ । ବଡ଼ ବାହାଦୂରୀ କଥାଟାଏ କଲା ବୋଲି ଭାବେ । କୁବୁଦ୍ଧି ବା ଦୁଷ୍ଟବୁଦ୍ଧି ଯୋଗୁଁ ସେ ହିରୋ ନୁହେଁ ଜିରୋ ହୋଇଯାଉଛି ତାହା ଜାଣେ ନାହିଁ, ବୁଝିବା ତ ଦୂରର କଥା ।

କିଏ ତାକୁ ଜଣାଇବ ବା ବୁଝାଇବ ଯେ ସେ ବୀର ନୁହେଁ ଭୀରୁ । ହିରୋ ନୁହେଁ ଜିରୋ ବୋଲି । ଏତେବେଳେ ଅର୍ଥାତ୍ ଦୁର୍ବୁଦ୍ଧିର ବାଲୁଙ୍ଗା ବଡ଼ ହୋଇଗଲେ ଆଉ ଉପାୟ ନ ଥାଏ । ବାଳୁତବେଳୁ ବାଲୁଙ୍ଗା ଗୁଣ ନ ଚିହ୍ନିଲେ ଆଉ ବାଟ ନ ଥାଏ । ବାଲୁଙ୍ଗା ବଢ଼େ, ଫଳେ ଓ ପାଚେ ପୁଣି ଚାରିଆଡ଼କୁ ବାଲୁଙ୍ଗାମୟ କରିଦିଏ । ଧାନ କିଆରି ପରିଣତ ହୋଇଯାଏ ବାଲୁଙ୍ଗା କିଆରିରେ । ଦିନକରେ କୁବୁଦ୍ଧି ଅନ୍ୟ କେଉଁ ଗ୍ରହରୁ ଧସେଇ ପଶି ଆସେ ନାହିଁ । ଆସ୍ତେ ଆସ୍ତେ ମୁଣ୍ଡଟେକେ ଓ ଚନ୍ଦ୍ରକଳା ବଢ଼ିଲା ପରି ବଢ଼େ । ମୁଣ୍ଡ ଟେକିଲା ବେଳେ ବାଲୁଙ୍ଗା ଗୁଣ ବା କୁବୁଦ୍ଧିକୁ କାଢ଼ି ଦେବାର ଦାୟିତ୍ୱ ପିତାମାତାଙ୍କର । ସେତେବେଳେ ହେଳା କଲେ ପରବର୍ତ୍ତୀ ସମୟରେ ଭେଳା ବୁଡ଼େ । ବୁମେରାଂ ହୋଇ ଅସ୍ତ୍ର ଆସି ନିଜକୁ ଆଘାତ କଲେ ପାଟିରୁ ବାହାରି ପଡ଼େ ''ଏହା ଆମ ଭାଗ୍ୟ ଦୋଷ, ଆମ କପାଳ ମନ୍ଦ'' । ହେଳା, ଅବହେଳା ଓ ଅଣହେଳାର ଏହା ଯେ ପାଚିଲା ଫଳ ସେକଥା ବୁଝିବାକୁ ପିତାମାତା ଆଦୌ ପ୍ରସ୍ତୁତ ହୁଅନ୍ତି ନାହିଁ । ପିଲାଟି ଭିତରେ ଆସ୍ତେ ଆସ୍ତେ ପ୍ରକଟ ହେଉଥିବା ପ୍ରତ୍ୟେକ ମନ୍ଦଗୁଣ ହେଉଛି ଘା'ର ପୂଜଭଳି । ତାକୁ ସଫା ନକଲେ ସେଇ ପୂଜ ରହିରହି ଚାରିପଟର ଜୀବକୋଷକୁ ଆକ୍ରାନ୍ତ କରେ । ଏହି ସଫା କରିବା ଦାୟିତ୍ୱ ପିତାମାତାଙ୍କର । ସେଥିପାଇଁ ସେମାନଙ୍କୁ ଯଥେଷ୍ଟ ସମୟ ଦେବାକୁ ହେବ । ସମୟ ନାହିଁ କହିଲେ ଚଳିବ ନାହିଁ, ସମୟ କାଢ଼ିବାକୁ ହେବ, ନିଜର ସୁଖ ସୁବିଧାକୁ ସଙ୍କୁଚିତ କରିବାକୁ ହେବ । ଆଉ କାହା ହାତରେ ଏ ଦାୟିତ୍ୱ ଦେଲେ ଚଳିବ ନାହିଁ । ପିଲାର ସ୍ତରକୁ ଓହ୍ଲାଇ ଆସି, ତା' ସ୍ତରରେ ରହି ତାକୁ ବାଟ କଢ଼ାଇ ନେବାକୁ ହେବ । ଗୁଡ଼ାଏ ଶୁଖିଲା ଉପଦେଶ ଦେଲେ ଚଳିବ ନାହିଁ, ଉଦାହରଣ ହୋଇ ଦେଖାଇ ଦେବାକୁ ପଡ଼ିବ । ନିଜେ ଦେଶାତ୍ମବୋଧ, ଜାତୀୟତାବୋଧ ସର୍ବୋପରି ମାନବିକ ମୂଲ୍ୟବୋଧର ପ୍ରତୀକ ହେବାକୁ ପଡ଼ିବ, ତେବେ ପିଲାଟିକୁ ସେହିପରି ଗଢ଼ିବାର ପଥ ପ୍ରଶସ୍ତ ହେବ । ତେଣୁ ତ କୁହଯାଏ 'ଲକ୍ଷେ ଉପଦେଶ ଅପେକ୍ଷା ଗୋଟିଏ ଉଦାହରଣ ଲକ୍ଷେ ଗୁଣରେ ଭଲ' ।

ପିଲାପାଇଁ ସଦ୍‌ଗୁଣର କର୍ମଶାଳା ଓ ପ୍ରୟୋଗଶାଳା ହେଉଛି ଘର । ଘର ଯଦି ଅପସଂସ୍କୃତିର ଗନ୍ତାଘର, ଅଚେତନତାର ଭୂତକୋଠି ତେବେ ତହିଁରୁ ଦେବତାର ଆବିର୍ଭାବ

ଆଶା କରିବା ବୃଥା । ଖତ ଗଦାରେ ପଦ୍ମ ଫୁଟେ, ମାତ୍ର ତାହା ଯଥାର୍ଥ ଉଦାହରଣ ନୁହେଁ । 'ଯତ୍ନ କଲେ ରତ୍ନ ମିଳେ' କଥାଟି ବରଂ ବ୍ୟାବହାରିକ ତଥା ଅଧିକ ବାସ୍ତବ । ଯେଉଁଠି ପିତାମାତା ସଚେତନ ନୁହନ୍ତି, ସେଠାରେ ପିଲାଟିର ସଚେତନତା ଆଶା କରିବା ଆକାଶ କୁସୁମ ପରି ଏକ ବିଡ଼ମ୍ବନା ମାତ୍ର । ଶ୍ରୀମାଙ୍କ ମତରେ 'ପ୍ରତ୍ୟେକ ପିଲାପାଇଁ ତା'ର ପିତାମାତା କୁନି କୁନି ଦେବତା ଭଳି ।' ପିଲାଟି ସେହି ଦେବତାଙ୍କର କଥାବାର୍ତ୍ତା, ଚାଲିଚଳନ, ସର୍ବୋପରି ମନୋଭାବକୁ ଅହରହ ଲକ୍ଷ୍ୟ କରୁଥାଏ । ସେ ଅତ୍ୟନ୍ତ ଅନୁକରଣ ପ୍ରିୟ ଓ ଅନୁସରଣ ପ୍ରିୟ ।

ତାକୁ ବହିର୍ମୁଖୀ କରାଇଲେ ସେ ବହିର୍ମୁଖୀ ହୁଏ ଏବଂ ଅନ୍ତର୍ମୁଖୀ କରାଇଲେ ଅନ୍ତର୍ମୁଖୀ ହୁଏ । ଅନ୍ତର୍ମୁଖୀ କରାଇବା ଅର୍ଥ ସାଧୁ ସନ୍ୟାସୀ ବାବାଜୀ କରାଇବା ନୁହେଁ, ନିଦା ମଣିଷଟିଏ କରି ଗଢ଼ିବା । ବହିର୍ମୁଖୀ ମଣିଷ ଏକ ହାଲକା ମଣିଷ, ଯନ୍ତ୍ରମଣିଷ, ବସ୍ତୁର ମଣିଷ, କାମନାବାସନାର ମଣିଷ, ସ୍ୱାର୍ଥପର ମଣିଷ । ନିଦାମଣିଷ ହେଉଛି ଯଥାର୍ଥ ଉଚ୍ଚାରଣସହ ଆଚରଣର ମଣିଷ, କର୍ତ୍ତବ୍ୟ ପାଳନର ମଣିଷ, ବିବେକର ମଣିଷ, ବିଚାରର ମଣିଷ ସର୍ବୋପରି ମୂଲ୍ୟବୋଧର ମଣିଷ । କେତେ ତାରା ଭିତରେ ଗୋଟିଏ ଚନ୍ଦ୍ର ଝଲସୁଥିବା ପରି ଗୋଟିଏ ମଣିଷ । ତା'ର କଥାରେ ଶକ୍ତିଥାଏ, ଅନୁଭବରେ ଗଭୀରତା ଥାଏ, ବ୍ୟବହାରରେ ଆକର୍ଷଣ ଥାଏ । ପୁଣିଥାଏ ଅନ୍ତରରେ ଉଦାରତା ଏବଂ ମୁହଁରେ ଅଛହସର ମାଦକତା । ନିଦାମଣିଷ ହେଉଛି ଯଥାର୍ଥ ମଣିଷ ଯିଏ କେବଳ ନିଜର ନୁହେଁ, ନିଜ ଦେଶ, ଜାତି ତଥା ସମଗ୍ର ବିଶ୍ୱର ପ୍ରଗତିର ରଥକୁ ଯଥାସମ୍ଭବ ଆଗକୁ ନେଇପାରେ । ସେ ହୁଏ ଦିବ୍ୟକର୍ମର ଯଥାର୍ଥ କର୍ମୀ । ତା'ଠାରେ ଦିବ୍ୟଜ୍ଞାନ ଦେଖି ଦେବତା ସନ୍ତୁଷ୍ଟ ହୁଅନ୍ତି । ଜୀବନ ତା'ର ସାର୍ଥକ ହୁଏ ।

ଅତଏବ ଦେବଶିଶୁକୁ ଦେବପ୍ରତିମ କରି ଗଢ଼ିବାର ଦାୟିତ୍ୱ ପିତାମାତାଙ୍କର । ପାଠ ପଢ଼ିବା ପାଇଁ ପ୍ରେରଣା ଦେବା ସହିତ ଜୀବନପାଠକୁ ପଢ଼ିବା ପାଇଁ ପରିବେଶ ସୃଷ୍ଟି କରିବା ପିତାମାତାଙ୍କର ବିରାଟ ଦାୟିତ୍ୱ । ଏ ଦାୟିତ୍ୱକୁ ଏଡ଼ାଇଗଲେ ଚଳିବ ନାହିଁ । ଦାୟିତ୍ୱରେ ଖିଲାପ କଲେ ପଛରେ ଦଣ୍ଡ ଭୋଗିବାକୁ ପଡ଼ିବ । ଦଣ୍ଡ ନ ଭୋଗିବା ପାଇଁ ଆଗରୁ ସତର୍କ ରହିବା ପ୍ରତ୍ୟେକ ପିତାମାତାଙ୍କର ପରମ କର୍ତ୍ତବ୍ୟ, ଏହା ହିଁ ଆଜିର ଅନୁଚିନ୍ତା ।

□□

# ସଙ୍କଟ ଓ ସମାଧାନ

ଆମେ ଭାରତୀୟମାନେ ଏକ ସଙ୍କଟରେ ପଡ଼ିଯାଇଛୁ । ଏହା ହେଉଛି ଚେତନାର ସଙ୍କଟ । ଏହି ସଙ୍କଟ ହେତୁ ଆମେ ଥୟ କରିପାରୁନାହୁଁ କେଉଁଟି ବଡ଼ ଓ କେଉଁଟି ସାନ । ଧନ ବଡ଼ ଅଥବା ମନ ବଡ଼, ବସ୍ତୁ ବଡ଼ ଅଥବା ଚେତନା ବଡ଼ । ପୁଣି ବୁଦ୍ଧି ବଡ଼ ଅଥବା ଜ୍ଞାନ ବଡ଼ । ଜ୍ଞାନ କହିଲେ ଆମେ ସୂଚନା ସଂଗ୍ରହ ବା ସମ୍ବାଦ ସଂଗ୍ରହକୁ ବୁଝିବା ନାହିଁ । ଏହା ଆଶିଂକ ଜ୍ଞାନ, ପୂର୍ଣ୍ଣଜ୍ଞାନ ହେଉଛି ଜଗତ ବିଷୟରେ ଜ୍ଞାନ ସହିତ ଜୀବନ ବିଷୟରେ ଜ୍ଞାନ । ନିଜ ଭିତରର ଗଭୀରତମ ଗଭୀରତାରେ ଏହା ସହିତ ଆତ୍ମଜ୍ଞାନ ଥିବା ସତ୍ତା ସମ୍ବନ୍ଧରେ ଜ୍ଞାନ ହେଉଛି ଆତ୍ମଜ୍ଞାନ । ସବୁଯାକ କଥା ଏକାଠି ରହିପାରୁନାହିଁ, ରହିପାରିବ ବୋଲି ମଧ୍ୟ ବିଶ୍ୱାସ କରିହେଉନାହିଁ ।

ଏପରି ସଙ୍କଟ ଆଦୌ ବିସ୍ମୟକର ନୁହେଁ, କାରଣ ପ୍ରତ୍ୟେକ ବିବର୍ତ୍ତନର ମୋଡ଼ରେ ଏପରି ଏକ ସଙ୍କଟ ଆସେ । ତାହାର ସମାଧାନ କରାଯାଏ, ବିବର୍ତ୍ତନ ଧାରାରେ ଗତି ପୁଣି ପ୍ରଗତିରେ ପରିଣତ ହୁଏ । କେତେକେତେ ସଙ୍କଟର ବାଟ ଦେଇ ସେ ଦିନର ମଣିଷ ଆଜିର ମଣିଷରେ ରୂପାନ୍ତରିତ ହୋଇଛି । ଆଲୋଚ୍ୟ ସଙ୍କଟଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ମାତ୍ର ଭୟଙ୍କର ନୁହେଁ କାରଣ ଏହାର ସମାଧାନ ଅତ୍ୟନ୍ତ କଷ୍ଟକର ନୁହେଁ । ପ୍ରଚେଷ୍ଟା ଆଗରୁ ପ୍ରୟାସ ବା ଇଚ୍ଛାଟିଏ ଏକାନ୍ତ ଆବଶ୍ୟକ ହୋଇଥାଏ । ସେହିପରି ବସ୍ତୁ ଓ ଚେତନାର କଥା, ପୁଣି ସେହିପରି ବୁଦ୍ଧି ଓ ଜ୍ଞାନର କଥା ମଧ୍ୟ ।

ଆଗରୁ ବସ୍ତୁ ଆମର ଏ ପୃଥିବୀରେ ଏତେ ନଥିଲା, ଆଜି ଯେତେ ପରିମାଣରେ ଅଛି । ଭାରତବର୍ଷରେ ମଧ୍ୟ ଏତେ ବସ୍ତୁ ନଥିଲା । ବସ୍ତୁସବୁରୁ ବହୁଳାଂଶ ହେଉଛି ବିଜ୍ଞାନ

ଓ ବୈଜ୍ଞାନିକ କଳାକୌଶଳର ଅବଦାନ । ବୈଜ୍ଞାନିକ କୌଶଳରେ ନିର୍ମିତ ବସ୍ତୁମାନ ଆମର ବହୁ ଉପକାର କରୁଛନ୍ତି । ଆମର ସମୟ ବଞ୍ଚାଉଛନ୍ତି, ଶକ୍ତି ମଧ୍ୟ । ଜୀବନକୁ ଅପେକ୍ଷାକୃତ ସହଜ ସରଳ କରିଛନ୍ତି । ସାରା ବିଶ୍ୱର ଖବର ଆମ ପାଖରେ ନିମିଷିକେ ପହଞ୍ଚି ପାରୁଛି, ଆମ ଖବର ମଧ୍ୟ ଦୂରକୁ ଦୂରକୁ ବହୁ ଦୂରକୁ କ୍ଷଣକରେ ପ୍ରସାରିତ ହୋଇଯାଉଛି । ଆତ୍ମୀୟମାନଙ୍କର ଯିବା ଆସିବା, ପହଞ୍ଚିବା ଓ ରହିବାର ଉଦ୍‌ବେଗ୍ ସହଜରେ ଦୂର ହୋଇପାରୁଛି । ବସ୍ତୁ ଆମର ଶାରୀରିକ ଶ୍ରମକୁ ଲଘୁ କରୁଛି, ମାନସିକ ଉଦ୍‌ବେଗ ଦୂର କରୁଛି । ସୁଖ ଆଣି ଦେଉଛି । ଆମ ବାପ ଅଜା ନ ପହଞ୍ଚିଥିବା ସ୍ଥାନରେ ଆମକୁ ସହଜରେ ପହଞ୍ଚାଇ ଦେଉଛି, ସେମାନେ ଦେଖିନଥିବା ସ୍ଥାନର ଦୃଶ୍ୟ ଆମକୁ ଦେଖାଇ ଦେଉଛି । ଆତ୍ମୀୟସ୍ୱଜନଙ୍କଠାରୁ ଦୂରରେ ରହି ମଧ୍ୟ ଅତି ନିକଟରେ ରହିବାର ମାନସିକ ଅନୁଭବ ଆଣି ଦେଉଛି । ରୋଷେଇ ସରଞ୍ଜାମଠାରୁ ଗମନାଗମନ, ସମ୍ବାଦ ସଂଗ୍ରହଠାରୁ ସମ୍ବାଦ ପ୍ରେରଣ ସବୁ କିଛିକୁ ସହଜ କରିଦେଇଛି ବିଜ୍ଞାନ । ଏଥିପାଇଁ ବିଜ୍ଞାନ ନିକଟରେ ଆମେ ଋଣୀ । ଏହା ପ୍ରତି କୃତଜ୍ଞତା ଜଣାଇବା ଆମର କର୍ତ୍ତବ୍ୟ । ଏହା ଆମ ନିକଟରେ ଅଭିନନ୍ଦନୀୟ । ମାତ୍ର ଏହାର ଅପବ୍ୟବହାର ସର୍ବଥା ନିନ୍ଦନୀୟ । ଉଦାହରଣସ୍ୱରୂପ ଯାନବାହାନ ଆମର ଦରକାର ମାତ୍ର ନିର୍ଦ୍ଧାରିତ ଗତି ଠାରୁ ଦ୍ରୁତ ଗତିରେ ଯାଇ ନିଜର କ୍ଷତି ତଥା ଅନ୍ୟର ସର୍ବନାଶ କରିବା ଅତ୍ୟନ୍ତ ନିନ୍ଦନୀୟ କଥା । ସର୍ପିଳ ଗତିରେ ଯାନ ଚଳାଇ ନିଜର କ୍ଷତିସହ ଅନ୍ୟର କ୍ଷତି କରିବାର ଅଧିକାର ଆମର ଅଛି କି ? ଏ ପ୍ରଶ୍ନ ଆମ ନିଜକୁ ପଚାରିବାର ଅଛି । ଏହା ହିଁ ହେଉଛି ଅପସଂସ୍କୃତିର ଚିହ୍ନ, ସଂସ୍କାରର ଅଭାବ । ବୃଥା ଅହଂକାରର ବ୍ୟର୍ଥ ପ୍ରଭାବ । ଆମେ ଯିବା ବୋଲି କ'ଣ ବାଟରେ ଆଉ କାହାକୁ ଚଳାଇ ଦେବାନାହିଁ ବା ଯାନରେ ଯିବାକୁ ଦେବା ନାହିଁ-ଏହା କ'ଣ ବିଜ୍ଞତା, ବୌଦ୍ଧିକତା ଅଥବା ବିଚାରଶୀଳତା । ଏଥିପାଇଁ କ'ଣ ବଡ଼ ବଡ଼ ଡିଗ୍ରୀ ନିହାତି ଦରକାର ? ବାସ୍ତବରେ ଏହା ହିଁ ଅନଧିକାରତ୍ୱର ଚିହ୍ନ, ଅଜ୍ଞାନତାର ପୂର୍ଣ୍ଣ ପରିଚୟ । ଆମ ନିଜ ପାଇଁ ସତର୍କତା ଯେପରି ଅତ୍ୟନ୍ତ ଜରୁରୀ, ଅନ୍ୟ ପ୍ରତି ସଚେତନତା ମଧ୍ୟ ସେପରି ଜରୁରୀ । ମନେପଡୁଛି ଶ୍ରୀଅରବିନ୍ଦ କହିଥିବା କଥାଟିଏ । କଥାଟି ଏହପରି ଯେ ଧନ ବା ବସ୍ତୁ ଭୋଗ ପାଇଁ ଉଦ୍ଦିଷ୍ଟ ନୁହେଁ, ଆବଶ୍ୟକତାର ପୂରଣ ପାଇଁ ଅଭିପ୍ରେତ । ତାଙ୍କ ମତରେ 'ଅର୍ଥଶକ୍ତି ଏବଂ ଏହା ଯେଉଁ ସବୁ ଉପାୟ ଓ ଉପକରଣ ଆଣିଦିଏ, ସେଥିରୁ ବୈରାଗୀ ପରି ସଙ୍କୋଚରେ ମୁଖ ଫେରାଇ ନିଅ ନାହିଁ, ଅନ୍ୟ ଦିଗରେ ପୁଣି ଏସବୁ ଉପରେ କୌଣସି ରାଜସିକ ଆସକ୍ତି ପୋଷଣ କରନାହିଁ ବା ଏହାର ଭୋଗରେ ନିଜକୁ ଛାଡ଼ି ଦେଇ ଏହାର ଏକାନ୍ତ ଦାସ ହୋଇପଡ଼ନାହିଁ ।"

ବିଜ୍ଞାନର ଅପବ୍ୟବହାରକୁ ରୋକିବା ପାଇଁ ଆବଶ୍ୟକ ଟିକିଏ ଆତ୍ମବିଚାର, ଧରାକୁ ସରାଜ୍ଞାନ ନ କରି ଧରାଜ୍ଞାନ କରିବାର ମଣିଷପଣିଆ । ମଣିଷପଣିଆର ତାଲିମ

ପାଇଁ କୌଣସି ଅନୁଷ୍ଠାନ ଥିବା କଥା ଏ ଲେଖକ ଜାଣିନାହିଁ ଅଥବା ମଣିଷପଣିଆର ମାପକାଠି ଭାବରେ କୌଣସି ପ୍ରମାଣପତ୍ର କେଉଁ ଅନୁଷ୍ଠାନରେ ପ୍ରଦତ୍ତ ହେବାର ଏ ଲେଖକକୁ ଗୋଚର ନାହିଁ । ଏହା ନିର୍ଭର କରେ ପରିବାରର ଶିକ୍ଷା, ସଂସ୍କାର ଓ ନିଜର ଆତ୍ମଅନୁଶୀଳନ ଉପରେ ।

ବାଟ ବତେଇଦେବା ଓ ବାଟ ଚାଲିବା ଯେପରି ଏକା କଥା ନୁହେଁ, ପଢ଼ାଇଦେବା ଓ ପଢ଼ିବା ସେପରି ଏକା କଥା ନୁହେଁ । ବାଟ ଚାଲିବା ବା ପଢ଼ିବା ଆମ ଉପରେ ନିର୍ଭର କରେ । ବିଶେଷତଃ ଜୀବନ ପାଠ ପଢ଼ିବା ପାଇଁ ନିଜ ଭିତରୁ ଆଗ୍ରହ ସୃଷ୍ଟି ହେବା ଦରକାର ।

ଜୀବନ କେତେ ମୂଲ୍ୟବାନ, ତାହା କ'ଣ ମରୁ ଝରଣା ପରି ବାଲିରେ ଅଳ୍ପ ବାଟ ପରେ ଶୁଖିଯିବାକୁ ଆସିଛି ନା କୁଳୁକୁଳୁ ନାଦରେ ବହୁ ଦୂର ପର୍ଯ୍ୟନ୍ତ ବହିଯିବାକୁ ଆସିଛି, ତାହା ଆଗ ଭାବିବାର କଥା । ହିତାହିତ ଜ୍ଞାନ ହରାଇ ଦେବା ଅର୍ଥ ଭାବନା ଶକ୍ତିକୁ ହରାଇ ଦେବା । ଭାବନା ଶକ୍ତିକୁ ହରାଇ ଦେବା ଅର୍ଥ ସବୁ କିଛିକୁ ହରାଇଦେବା । କିଛି ଟଙ୍କା ହଜିଗଲେ ତାହା ହୁଏତ କେମିତି କେମିତି ପୂରଣ ହୋଇଯିବ, ମାତ୍ର ଭାବନା ଶକ୍ତି ହଜିଗଲେ ଯେଉଁ କ୍ଷତି ହେବ, ତାହା ଅପୂରଣୀୟ ହୋଇ ରହିଯିବ । ଭାବନା ଶକ୍ତି ବା ଭାବିବାର ଶକ୍ତି ହିଁ ଆମକୁ ମଣିଷ ପଦବାଚ୍ୟ କରିଛି । ମନ ହିଁ ଭାବିବାର ସ୍ଥାନ, ମନନ ହିଁ ଚେତନାର ସିଂହାସନ । ସଦ୍‌ଭାବନା ହେଉଛି ଶୁଦ୍ଧ ମନର ନିର୍ମଳ ଅଭିବ୍ୟକ୍ତି ଓ ନିରପେକ୍ଷ ନିଷ୍ପତ୍ତି ।

ଅତଏବ ଆମେ ସମୟୋପଯୋଗୀ ହେବା । ଆମକୁ ବହୁ କଥା ଯାହା ପରସ୍ପରର ବିପରୀତ ଧର୍ମୀ ପରି ମନେ ହେଉଛନ୍ତି, ସେସବୁକୁ ମିଶାଇବାକୁ ପଡ଼ିବ । ଏଇ ଯେପରି ବୌଦ୍ଧିକତା ଓ ହୃଦୟବତ୍ତା, ଧନ ଓ ମନ, ବୁଦ୍ଧି ଓ ଜ୍ଞାନ, ଭାବ ଓ ଭାବନା, ମନ ଓ ମନନର ସମନ୍ୱୟ ଘଟାଇବାକୁ ପଡ଼ିବ । ନ ହେଲେ ଜୀବନ ଏକପାଖିଆ ହୋଇଯିବ, ପୂର୍ଣ୍ଣ ହୋଇପାରିବ ନାହିଁ । ବ୍ୟକ୍ତି ଜୀବନ ପୂର୍ଣ୍ଣ ନ ହେଲେ ବିଶ୍ୱ ଜୀବନ ମଧ୍ୟ ପୂର୍ଣ୍ଣ ହେବ ନାହିଁ, ଅପୂର୍ଣ୍ଣ ହୋଇ ରହିଯିବ । ଅତଏବ ବିଶ୍ୱଜୀବନର ପୂର୍ଣ୍ଣତା ନିର୍ଭର କରେ ଆମ ଜୀବନର ପୂର୍ଣ୍ଣତା ଉପରେ । ଆମେ ବିଶ୍ୱର ପ୍ରତିନିଧି, ଆମ ଜୀବନ ହେଉଛି ବିଶ୍ୱ ଜୀବନର ଏକକ । ଏହି ପୂର୍ଣ୍ଣତା ନିର୍ଭର କରେ ଆମର ମାନସିକତା ଉପରେ ଅର୍ଥାତ୍ ସମନ୍ୱୟର ମାନସିକତା ଉପରେ । ସ୍ୱାମୀ ବିବେକାନନ୍ଦ କହୁଥିଲେ, "ଗୋଟିଏ ବ୍ୟକ୍ତିର ବୌଦ୍ଧିକତା କେବଳ ଯଥେଷ୍ଟ ନୁହେଁ, ଏହା ସହିତ ହୃଦୟବତ୍ତାର ମିଶ୍ରଣ ଏକାନ୍ତ ଆବଶ୍ୟକ ଯାହାଦ୍ୱାରା ବ୍ୟକ୍ତିର ପୂର୍ଣ୍ଣତା ସମ୍ଭବ ହୋଇଥାଏ ।"

ଅତଏବ ସମୟକୁ ନିନ୍ଦା ନ କରି, ନିଜର ମନ୍ଦଗୁଣକୁ ନିନ୍ଦା କରିବାର ସମୟ ଆସିଛି । ବିବର୍ତ୍ତନକୁ ବିରୋଧ ନ କରି ଆଗେଇ ନେବାରେ ସହାୟକ ହେବାର ସମୟ

ଆସିଛି । ନିଜ ପ୍ରତି ସତର୍କ ରହି ଅନ୍ୟ ପ୍ରତି ସଚେତନ ହେବାର ସମୟ ଆସିଛି । ବାହାରେ ବାହାରେ ଭ୍ରମିବା ସହିତ ଭିତରେ ଭିତରେ ସାମର୍ଥ୍ୟ ଅନୁସାରେ ଗମିବାର ସମୟ ଆସିଛି । ସଚ୍ଚା ଭାରତୀୟ ହେବାର ସମୟ ଆସିଛି ଯିଏକି ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଆପଣାର କରିପାରେ ଓ ସମସ୍ତଙ୍କର ଆପଣାର ହୋଇପାରେ । 'ମୁଁ ନୁହେଁ ଆମେ' ବୋଲି କହିବାର ସମୟ ଆସିଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟର ଚେତନାର ସମନ୍ୱୟର ସମୟ ଆସିଛି । ଫଳତଃ ଏକ ବିଶ୍ୱ ସଂସ୍କୃତିର ବିକାଶର ସମୟ ଆସିଛି । ଏହି ସମୟର ସଦ୍‌ବ୍ୟବହାର ଆମେ କରିବା କି ନାହିଁ, ଯଦି କରିବା କିପରି କରିବା ତାହା ବିଚାର କରିବାର ବେଳ ଆସିଛି ।

❑❑

# ଓଡ଼ିଆ ଢଗଢମାଳିରେ ଜୀବନ ଚିନ୍ତା

ଲୋକସାହିତ୍ୟ ହେଉଛି ସାହିତ୍ୟ ଗନ୍ତାଘରର ଅମୂଲ୍ୟ ରତ୍ନ । ସେ ରତ୍ନର ଝଲକ ସାର୍ବଜନୀନ ଓ ସର୍ବକାଳୀନ । ଚଳଣି, ଚାହାଣି ଓ ଚମକରେ ତାହା ଅନନ୍ୟ । ଜୀବନ ବିଶେଷତଃ ବ୍ୟକ୍ତିଗତ ଜୀବନ ତଥା ପାରିବାରିକ ଜୀବନ ପୁଣି ସାମାଜିକ ଜୀବନ ପାଇଁ ବହୁ କଥା ଜାଣିବାର ଓ ବୁଝିବାର ସୁବିଧା ସୁଯୋଗ ସୃଷ୍ଟି କରେ ଏଇ ଲୋକସାହିତ୍ୟ । ପୃଥିବୀର ପ୍ରତ୍ୟେକ ଦେଶ ଓ ଜାତିର ଲୋକସାହିତ୍ୟ ରହିଛି । ତାହା ସେ ଦେଶ ଓ ଜାତିର ଚଳଣି, ପରିବେଶକୁ ନେଇ ସଂରଚିତ । ଲୋକସାହିତ୍ୟର ଏକ ବଳିଷ୍ଠ ବିଭବ ହେଉଛି ଢଗଢମାଳି । ସରଳ ଭାଷାରେ ବହୁ ଜ୍ଞାତବ୍ୟ ତଥ୍ୟ ଏଥିରେ ପ୍ରକଟିତ ।

ଜୀବନରେ ବହୁ ସାଧାରଣ କଥା ନଜାଣି ଠିକିଠିକି ବଞ୍ଚିବା ଅପେକ୍ଷା ବହୁକଥା ଜାଣି ସଚେତନ ଭାବରେ ବଞ୍ଚିବା ବହୁଗୁଣରେ ଶ୍ରେୟସ୍କର । ଏ ଦିଗରେ ଆମ ଭାଷାରେ ଥିବା ଢଗଢମାଳିର ଭୂମିକା ଆମପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଅନୁଭୂତି ସିଦ୍ଧ ବହୁତତ୍ତ୍ୱ ଏଥିରେ ଉପସ୍ଥାପିତ ହୋଇଥାଏ । ଏହି ତତ୍ତ୍ୱସବୁ ଅନ୍ୟମାନଙ୍କୁ ଗୁରୁପରି ବାଟ ବଢ଼ାଏ, ବନ୍ଧୁପରି ସହୃଦୟତାର ହାତ ବଢାଏ । ଢଗଢମାଳିର ଇତିହାସକୁ ପର୍ଯ୍ୟାଲୋଚନା କଲେ ଆମେ ଦେଖୁ ଯେ ୧୮୭୬ ମସିହାରେ କପିଳେଶ୍ୱର ବିଦ୍ୟାଭୂଷଣ ଢଗଢମାଳିର ଏକ ସଂଗ୍ରହ ମୁଦ୍ରିତ କରିଥିଲେ । ୧୮୯୩ ମସିହାରେ ଗୋବିନ୍ଦରଥଙ୍କ ଦ୍ୱାରା ଆଉ ଏକ ସଂଗ୍ରହ ମୁଦ୍ରିତ ହୋଇଥିଲା । ୧୯୦୩ ମସିହାରେ ନୀଳମଣି ବିଦ୍ୟରତ୍ନ ଓ ୧୯୨୩ ମସିହାରେ ଅପର୍ଣ୍ଣା ପଣ୍ଡା ଏକଏକ ସଂଗ୍ରହ ପ୍ରକାଶ କରିଥିଲେ । ୧୯୨୪ ମସିହାରେ ନିତ୍ୟାନନ୍ଦ ସାହୁ ଓ ୧୯୬୧ ମସିହାରେ ସର୍ବେଶ୍ୱର ଦାଶ ଏକଏକ ଢଗଢମାଳି ପୁସ୍ତକ ପ୍ରଣୟନ

କରିଥିଲେ । ୧୯୬୩ ମସିହାରେ ଓଡ଼ିଆ ପ୍ରହେଳିକା ସଂଗ୍ରହ ପ୍ରକାଶିତ ହେଲା । କୁଞ୍ଜବିହାରୀ ଦାଶଙ୍କର ଢଗଢମାଳି ଅଭିଧାନ ୧୯୯୧ ମସିହାରେ ପ୍ରକାଶିତ ହୋଇଥିଲା । ଢଗଢମାଳି ଓ ପହେଳି ଭିତରେ ଦନାଇ ଦାସଙ୍କ ନାମରେ ଭଣିତା ଢଗଢମାଳି ଓ ପହେଳି ଅତ୍ୟନ୍ତ କାଳୋତ୍ତୀର୍ଣ୍ଣ । ସେଥିରୁ କେତେ ଗୋଟି ପଦ ଏହିପରି-

'ଆପଟ ବେହେରା ହୋଇଲେ ଛୋଟା
ବୁଲାଭିକାରୀ ଯେବେ ହୁଏ ମୋଟା
କୂଅରେ ପଡ଼ିଲେ ଅସନାକୁଟା
ବାପପୁଅ ମନ ହୋଇଲେ ଖଟା
ପାଲୁଅଖିରି ଧରିଗଲେ ଗୋଟା
କୋଶଳାଶାଗ ହେଲେ ମଞ୍ଜି ଫୁଟା
ହଳଦୀ ନୋହିଲେ ଚିକ୍କଣ ବଟା
ବୋଲେ ଦନାଇ ଭଲ ନୁହେଁ କେଉଁଟା ।'

କେତେ ପ୍ରତିଷେଧକ ବ୍ୟବସ୍ଥାର କଥା ମଧ୍ୟ ସେ କହିଛନ୍ତି । ସ୍ୱାସ୍ଥ୍ୟ ରକ୍ଷାର ନିୟମରୁ କିଛି ଯାହା ସମସ୍ତେ ଜାଣିବାର କଥା, ତାହାର ଉଲ୍ଲେଖ କରିଛନ୍ତି କବି । ଲୋକ କବିଙ୍କ କଥାରେ-

'ଭୋକ ମଟାଳିରେ ପିତ୍ତ ବଢ଼େ
ଝାଡ଼ା ମଟାଳିରେ ବାୟୁ ବଢ଼େ
ସ୍ନାନ ମଟାଳିରେ କଫ ବଢ଼େ
ପ୍ରସା ମଟାଳିଲେ ଦଗ୍ଧ ବଢ଼େ ।'

ଜୀବନରେ ନିଜ ଅନୁଭୂତିରୁ ଶିଖିବା ଗୋଟିଏ କଥା, ଅନ୍ୟମାନଙ୍କ ଅନୁଭୂତିରୁ ଶିଖିବା ପାଇଁ ବହୁ ସମୟ, ଶକ୍ତି ଦେବାକୁ ପଡ଼େ, ବେଳେବେଳେ ବହୁ ପରୀକ୍ଷିତ କେତେକ କଥା ଜାଣିଲେ ତାହା ଚଲାପଥର ପାଥେୟ ହୁଏ, ସମୟର ଅଯଥା ବ୍ୟୟ ଓ ଶକ୍ତିର ଅପଚୟ ହୁଏ ନାହିଁ ।

ଏଇ ଯେମିତି -

ମଟାଳ ମାଟି ହୋଇଲେ କାଦୁଆ
ମାଆ ପେଟ ଭାଇ ହେଲେ ବାଦୁଆ
ପ୍ରତାପୀ ନୃପତି ହେଲେ ମଦୁଆ
ଧନୀ ପଡ଼ିଶା ହୋଇଲେ ଛନ୍ଦୁଆ
ସୁନା ଅଳଙ୍କାର ହେଲେ ଖାଦୁଆ

ଛାଇ ଲେଉଟାଣି ଯେଉଁ ଗାଧୁଆ
ପୂଜାରୀ ହୋଇବ ଯେବେ ଯାଦୁଆ
କହେ ଦନେଇ ଏ ବଡ଼ ହଦୁଆ ।

ସାଧାରଣ ଜୀବନରେ ଥିବା କେତେକ ଚଳଣି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଓ ଯଥାଯୋଗ୍ୟ । ଏଗୁଡ଼ିକ ଜାଣିବା ନିହାତି ଦରକାର । ଜାଣିଲା ପରେ ତଦନୁସାରେ ଚଳିବା ଅତ୍ୟନ୍ତ ଉପାଦେୟ । ସ୍ଥାନ କାଳ ଓ ପାତ୍ର ଅନୁସାରେ କେତେବେଳେ କ'ଣ କ୍ରିୟା ଓ ପ୍ରତିକ୍ରିୟା କରିବ ସେ ସମ୍ବନ୍ଧରେ ବହୁ କଥା ଦନାଇ ଦାସ କହିଛନ୍ତି- ସେଥିରୁ କେତେକ ଏହିପରି-

'ପ୍ରସାଦ ପାଇଲା ମାତ୍ରେ ଖାଇବ
ପତ୍ର ପାଇଲା ମାତ୍ରେ ପଢ଼ିବ
ବନ୍ଧୁଙ୍କୁ ଦେଖିଲାମାତ୍ରେ ହସିବ
ଖଳକୁ ଦେଖିଲା ମାତ୍ରେ ଖସିବ ।'

ବର୍ଷ ଭିତରେ କେଉଁ କେଉଁ ଖାଦ୍ୟ ନିଷେଧ, ପୁଣି କେଉଁ ତିଥିରେ କେଉଁ ଖାଦ୍ୟ ମନା, ପୁଣି କେତେବେଳେ କେଉଁ ଖାଦ୍ୟ ଉପଯୋଗୀ ନୁହେଁ ତାହାର ତାଲିକା କବି ପ୍ରଦାନ କରିଛନ୍ତି । ଏହି ବାରଣଗୁଡ଼ିକ ଆଜି ମଧ୍ୟ ସତ୍ୟ । ସ୍ୱାସ୍ଥ୍ୟ ରକ୍ଷା ପାଇଁ ଏହି ବାରଣ ସବୁ ଏକାନ୍ତ ଉପଯୋଗୀ ।

ସେଥିମଧ୍ୟରୁ ଗୋଟିଏ ଦୁଇଟିକଥା ଏହିପରି-

'ମାଘେ ବରକୋଳି ମକରେ ମୂଳା
ଗୋରୁ ମାଉଁସ ପୁଳାପୁଳା
ସଂକ୍ରାନ୍ତିରେ ପିତା, ରାତିରେ ଦହି
ଦୁଇ ପ୍ରହରେ ଦିନ ବେଳେ ଖାଇ ।'

ପୁନଶ୍ଚ କୁହାଯାଇଛି-

'ଖଟା ଖାଇଲେ ବଢ଼ଇ ନାଡ଼ା
ମିଠାଖିଆ ବେମାରି ବଢ଼ା
ଲୁଣ ଖାଇଲେ ଉଠଇ ଶୋଷା
ଛାତି ଧରଇ ଖାଇଲେ କଷା ।'

କେତେବେଳେ କ'ଣ ଖାଇବା କଥା, ତାହାର ତାଲିକା ମଧ୍ୟ ପ୍ରଦାନ କରାଯାଇଛି । ସ୍ୱାସ୍ଥ୍ୟର ରକ୍ଷା ପାଇଁ ଏସବୁ ଜାଣିବା ଏକାନ୍ତ ଜରୁରୀ । ତହିଁରୁ ଗୋଟିଏ ଦୁଇଟି କଥା ଏହିପରି-

'ପୁଷେ ଖଇ ମାଘେ ଦହି
ଚଇତେ ନିମ ଚକୁଳି ଖାଇ ।'

କେତେକଥା ଏ ସଂସାରରେ ବଡ଼ ବିଷମ ଅବସ୍ଥା ଓ ବ୍ୟବସ୍ଥା ସୃଷ୍ଟିକରେ । ତାହାର ତାଲିକା ପ୍ରଦାନ କରାଯାଇଛି ଢଗଢମାଳିରେ । ତହିଁରୁ ବହୁ ଜିନିଷ ଶିଖିବାର ଅଛି । କୁହାଯାଇଛି–

ଖାପ ନଥାଇ ଖଣ୍ଡା, ପୁର ନଥାଇ ମଣ୍ଡା
ବଳ ନଥାଇ ଭେଣ୍ଡା, ଟଳଟଳିଆ ତେଣ୍ଡା
ବ୍ରାହ୍ମଣ ପୁଅ ଲଣ୍ଡା, କହେ ଦନାଇ ଏ ବଡ଼ ବିତଣ୍ଡା ।'

ପୁନଶ୍ଚ କୁହାଯାଇଛି–

'ବରଷା ରାତିରେ ନଥିଲେ ଜାଳ
ପାଣି ଗଲେ ଯେବେ ଗମ୍ଭୀରି ଝଳ
ଖାଇବା ଦ୍ରବ୍ୟରୁ ବାହାରେ ବାଳ
ବଳଦ ବାନ୍ଧି, ନାହିଁ ଯେବେ ପାଳ
କମାରର ଯେବେ ନଥାଏ ଶାଳ
ଏଣ୍ଡୁରି ପିଠାରୁ ଉଠିଲେ ନାଳ
ବୋଲେ ଦନାଇ ଏକଥା ନିଷ୍ଫଳ ।'

କାହାର ଦୃଷ୍ଟି କେଉଁଠିକି, ତାହାର ଏକ ତାଲିକା ମଧ୍ୟ ପ୍ରଦତ୍ତ ହୋଇଛି । ଅନୁଭବ ସିଦ୍ଧ କଥା ଏଗୁଡ଼ିକ, ଅନ୍ୟଥା ହେବାର ନୁହେଁ । ସେଥିମଧ୍ୟରୁ ପଦେ ଅଧେ ଏହିପରି–

'ମାଆ ଚାହିଁଥାଏ ପେଟକୁ
ମାଇପ ଚାହେଁ ଅଣ୍ଟାକୁ
ବେପାରୀ ଚାହେଁ କଣ୍ଟାକୁ
ମାଛୁଆ ଚାହେଁ ତେଣ୍ଟାକୁ ।'

ବାସ୍ତବରେ ଲୋକସାହିତ୍ୟରେ ଜୀବନ ଚିତ୍ର ପ୍ରତ୍ୟକ୍ଷ ଭାବରେ ଚିତ୍ରିତ ଓ ଶାଣିତ ଭାବରେ ଉପସ୍ଥାପିତ । ଏହା କେବଳ ସାହିତ୍ୟିକ, ଗବେଷକମାନଙ୍କ ପାଇଁ ଉପଯୋଗୀ ନୁହେଁ, ସମସ୍ତଙ୍କ ପାଇଁ ଏହାର ଉପଯୋଗିତା ରହିଛି । ଲୋକସାହିତ୍ୟକୁ କିଏ କେମିତି ଦୃଷ୍ଟିରେ ଦେଖୁଥିଲେ ମଧ୍ୟ, 'ପାଠ ବତାଏ ବାଟ' 'ଜାଣିଲେ ଜିଣିବା' ପ୍ରଭୃତି ଉକ୍ତିର ଯଥାର୍ଥତା ଯେ ଲୋକସାହିତ୍ୟରେ ରହିଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

# ଜୀବନ ଏକ କଣ୍ଟାଫୁଲିଆ ଗଛ

ମଣିଷ ଜୀବନ ଏକ କଣ୍ଟା ଫୁଲିଆ ଗଛ । ଏ ଗଛରେ କଣ୍ଟା ଅଛି, ଫୁଲ ବି ଅଛି । କେତେବେଳେ କଣ୍ଟା ଭିତରେ ଫୁଲ ଲୁଚିଯାଉଛି ତ ଆଉ କେତେବେଳେ ଫୁଲ ଭିତରେ କଣ୍ଟା ଲୁଚିଯାଉଛି । କେତେବେଳେ ଫୁଲ ବେଶୀ ଥାଇ ଅଳ୍ପ ଦିଶୁଛି ତ ଆଉ କେତେବେଳେ କଣ୍ଟା ଅଳ୍ପଥାଇ ଅଧିକ ଦିଶୁଛି । କେତେବେଳେ ଫୁଲ ତୋଳୁତୋଳୁ ହାତରେ କଣ୍ଟା ବାଜି ହାତରୁ ରକ୍ତ ଝରୁଛି ତ ଆଉ କେତେବେଳେ ହାତରେ କଣ୍ଟାବାଜିବା ସହିତ ଫୁଲର ସ୍ପର୍ଶ ମଧ୍ୟ ବାରି ହେଉଛି । ଖାଲି ଫୁଲରେ ଭର୍ତ୍ତି ନୁହେଁ ଜୀବନର ଗଛ ଅଥବା କଣ୍ଟାର କାକ୍‌ଟସ ନୁହେଁ ଜୀବନ । କାରଣ କାକ୍‌ଟସରେ ବି ଫୁଲ ଫୁଟେ । କଣ୍ଟା ଆଡ଼େଇ ଫୁଲ ତୋଳିବା ପାଇଁ ସ୍ୱତନ୍ତ୍ର ପ୍ରଶିକ୍ଷଣ ଆବଶ୍ୟକ ଅନ୍ୟଥା କଣ୍ଟାରେ ହାତ ଚିରି ହେବା ଅତ୍ୟନ୍ତ ସ୍ୱାଭାବିକ । ଏ ପ୍ରଶିକ୍ଷଣ ଡିଗ୍ରୀ ଡିପ୍ଲୋମାରୁ ଯେତିକି ମିଳେ ତହିଁରୁ ଅଧିକ ମିଳେ ସଂସ୍କାରରୁ । ସଂସ୍କାର ମିଳେ ପରିବେଶରୁ ଏବଂ ଆତ୍ମବିଶ୍ଳେଷଣରୁ । ସତର୍କତା ଓ ସଚେତନତା ମାଧ୍ୟମରେ ସଂସ୍କାର କାର୍ଯ୍ୟକାରୀ ହୁଏ ।

'କଣ୍ଟା' 'କଣ୍ଟା' ବୋଲି ଚିତ୍କାର କଲେ କଣ୍ଟାର କରାମତି ଯାଏ ନାହିଁ ବରଂ ମଜଭୂତ ହୁଏ । କଣ୍ଟାକୁ ଆଡ଼େଇ ନ ଜାଣି କେବଳ ଗଛର ଦୋଷ ଦେବାକୁ ହୁଏ, ଯେପରି ଚାଲି ନଜାଣି ବାଟର ଦୋଷ ଦିଆଯାଏ । ଚାଲି ନ ଜାଣିଲେ ପାଦରେ କ୍ଷତ ହୁଏ, ଝୁଣ୍ଟିଝୁଣ୍ଟି ବାଟ ସରିଯାଏ । ଅତଏବ ଚାଲି ଜାଣିବା ହେଉଛି ଚାଲିବାର କଳା । ବଞ୍ଚିବାର କଳା ମିଳେ ଯଥାର୍ଥ ଦୃଷ୍ଟିଭଂଗୀରୁ । ଦୃଷ୍ଟିଭଂଗୀ ବଦଳିଗଲେ ଦୃଶ୍ୟର ପ୍ରଭାବ ବଦଳିଯାଏ । ଭୀମକାନ୍ତ ଦୃଶ୍ୟର ଭୀମତ୍ୱ କମିଯାଏ । ଦୃଷ୍ଟିଭଂଗୀ ସ୍ୱଚ୍ଛ ଓ ନିର୍ମଳ ହୋଇଗଲେ ଦୃଶ୍ୟ ମଧ୍ୟ

ପରିଚ୍ଛନ୍ନ ହୋଇଯାଏ । ଦୃଶ୍ୟକୁ ପ୍ରକୃତରେ ଦେଖି ଜାଣିବା ଦରକାର, ସ୍ୱାଦକୁ ବାସ୍ତବରେ ଚାଖି ଜାଣିବା ଦରକାର । ବହୁତ ଲୋକ ଅଛନ୍ତି ବହୁ ଖାଦ୍ୟ ଖାଆନ୍ତି ମାତ୍ର ସ୍ୱାଦ ବାରିବାପାଇଁ ଜିଭର ସୁସ୍ଥତା ଯେତିକି ଦରକାର ତାହାଠାରୁ ଅଧିକ ଦରକାର ମନର ଏକାଗ୍ରତା ଓ ସଚେତନତା । ଅତଏବ ବହୁ କଥାର ମହତ୍ତ୍ୱ ମନ ଉପରେ ନିର୍ଭର କରେ । ଅଦର୍ଶନୀୟକୁ ଏଡ଼ାଇ ଯାଇ ଦର୍ଶନୀୟକୁ ଦେଖିବା ହିଁ ଯଥାର୍ଥ ଦେଖିବା, ଅସ୍ୱାଦକରକୁ ଏଡ଼ାଇଯାଇ ସ୍ୱାଦିଷ୍ଟକୁ ଚାଖିବା ହିଁ ଯଥାର୍ଥ ଚାଖିବା ।

ଏକଥାରୁ ଏତିକି ସ୍ପଷ୍ଟ ଯେ କଣ୍ଟାକୁ ଛାଡ଼ି ଫୁଲ ନାହିଁ ଅଥବା ଫୁଲକୁ ଛାଡ଼ି କଣ୍ଟା ନାହିଁ । ଅନ୍ୟପ୍ରକାରେ କୁହାଯିବ ଯେ କଣ୍ଟା ଅଛି ତ ଫୁଲ ଅଛି ପୁଣି ଫୁଲ ଅଛି ତ କଣ୍ଟା ଅଛି ।

କଣ୍ଟାର ଶକ୍ତି ଆମ ଦୃଷ୍ଟିଭଂଗୀ ଓ ଗ୍ରହଣଶୀଳତା ଉପରେ ନିର୍ଭର କରେ । କଣ୍ଟା ଅଛି ବୋଲି ଯେ ଫୁଲ ତୋଳା ହେବ ନାହିଁ, ଏପରି ନୁହେଁ ମାତ୍ର କଣ୍ଟାରେ ବାଜି କ୍ଷତାକ୍ତ ନ ହେବାପାଇଁ ସଚେତନତା ଆବଶ୍ୟକ । ସଚେତନତା ଆସିଲେ କଣ୍ଟାକୁ ପାରୁପର୍ଯ୍ୟନ୍ତ ଆଡ଼େଇ ହୁଏ । 'ଯୋଗ କର୍ମସୁ କୌଶଳମ୍' ବୋଲି ସେତେବେଳେ ଅଳ୍ପେ ବହୁତେ ବୁଝି ହୁଏ । ଅତଏବ ସତର୍କତା ହେଉଛି ଅସଲ ଚାବିକାଠି । ଯିଏ ଯେତେ ସତର୍କ ଓ ସଚେତନ ତା' ପାଇଁ କଣ୍ଟାର ଆଘାତ ସେତେକମ୍ ।

ବର୍ତ୍ତମାନ ଆମ ମନରେ ପ୍ରଶ୍ନ ଆସିବ ଯେ ସଚେତନତା ଓ ସତର୍କତା ସତ୍ତ୍ୱେ ତ ଦାରୁଣ ଆଘାତ ଆସୁଛି । କଥାଟି ବାସ୍ତବରେ ସେପରି ନୁହେଁ । ସତର୍କତା ଦ୍ୱାରା ବହୁ କ୍ଲେଶ ଓ ଯନ୍ତ୍ରଣାକୁ ଯେ ଏଡ଼ାଇ ଦେଇ ହୁଏ ଏଥିରେ ସନ୍ଦେହ ନାହିଁ । ବହୁ ଅଶାନ୍ତି ତଥା ଅଡୁଆ ତଡୁଆରୁ ରକ୍ଷା ମିଳେ, ଏଥିରେ ସନ୍ଦେହ ନାହିଁ । ଏହା ଯେମିତି କଥା କହିବାର ସତର୍କତା । ସ୍ଥାନ, କାଳ ଓ ପାତ୍ର ଦେଖି କଥା କହିବା ଯେ କେତେବଡ଼ କଳା ତାହା ଆମେ ବୁଝିବା ଦରକାର । ମନରେ ଆସୁଥିବା ସବୁକଥା ସବୁ ସ୍ଥାନରେ ସବୁ କାଳରେ ଓ ସବୁ ପାତ୍ରରେ ସମାନ ଭାବରେ କହି ହେବ ନାହିଁ, ଏକଥା ଜାଣିବା ଆମର ଦରକାର । ସ୍ପଷ୍ଟବାଦୀ ହେବାକୁ ଯାଇ ଗପୁଗପୁ ଗପିଯିବା ନୁହେଁ ବରଂ ଯେଉଁଠି ଯେତିକି ଓ ଯେମିତି ଦରକାର ସେତିକି କହିବାକୁ ଶିଖିବା ଏକାନ୍ତ ଜରୁରୀ । ଅନ୍ୟର ବିରୁଦ୍ଧରେ ଅଯଥା ଆଲୋଚନା ନ କରିବା, ଆଲୋଚନା ବେଳେ ସେଠାରେ ନ ରହିବା, ନରହିବା ସମ୍ଭବ ନହେଲେ କିଛି ନ କହିବା ଯେ କେତେ ଆବଶ୍ୟକ, ତାହା ଆମର ଜାଣିବା ଦରକାର ।

କେଉଁ ଏକ ଅବକାଶରେ କଥା ମାଳୁମାଳୁ ଗଣ୍ଠିପଡ଼ି ପଡ଼ିଯାଉଥିଲେ ବୁଦ୍ଧିମାନର କାର୍ଯ୍ୟ ହେଉଛି ଅର୍ଥାତ ସତର୍କତାର କାର୍ଯ୍ୟ ହେଉଛି ଅଧିକ ଗଣ୍ଠି ପଡ଼ିବାକୁ ନଦେଇ ବରଂ ସରଳତା ଆଡକୁ ଆଣିବା । ସେତେବେଳେ ତୃତୀୟପକ୍ଷର ବା ପ୍ରଥମ ଅଥବା ଦ୍ୱିତୀୟ

ପକ୍ଷର ସତର୍କତା ଏକାନ୍ତ ଜରୁରୀ ହୋଇପଡ଼େ । ଅନ୍ୟମାନଙ୍କର ସମସ୍ତ କଥାକୁ ନିଜ ଆଡ଼କୁ ନ ଟାଣିବା ଓ ତହିଁରେ କ୍ଷତାକ୍ତ ନହେବା ଏକ ପ୍ରକାର ସତର୍କତାର ଚିହ୍ନ । ଏକଥା ଯେପରି ସତର୍କତାର ଚିହ୍ନ ନିଜକୁ ଅତ୍ୟଧିକ ଜାହିର କରି କଥା ନକହିବା ମଧ୍ୟ ସେପରି ସତର୍କତାର ଚିହ୍ନ । ନିଜେ ଠିକ୍ କଥା କହୁଥିଲେ ମଧ୍ୟ, ସତ୍ୟ କହୁଥିଲେ ମଧ୍ୟ ଅନ୍ୟମାନଙ୍କୁ ହେୟଜ୍ଞାନ କରି କଥା ନ କହିବା ହେଉଛି ସତର୍କତାର ଏକ ଦିଗ । ଗୁଜବ ସୃଷ୍ଟି କରିବା ଓ ଗୁଜବକୁ ଶୁଣି ଆଉ ଟିକିଏ ତହିଁରେ ରଙ୍ଗଦେବା ଅତ୍ୟନ୍ତ ନିନ୍ଦନୀୟ କଥା । ଏହାଦ୍ୱାରା ପରିବେଶ ବହୁ ଭାବରେ କ୍ଷତିଗ୍ରସ୍ତ ହୁଏ । ନିଜ ବିରୁଦ୍ଧରେ ତୃତୀୟ ପକ୍ଷଠାରୁ କିଛି କଥା ଶୁଣି ଉତ୍ତେଜିତ ହୋଇ ଉଠିବା ଅତ୍ୟନ୍ତ ଦୁର୍ବଳତାର ଚିହ୍ନ । ଉତ୍ତେଜିତ ହୋଇ ମୁକାବିଲା କରିବାକୁ ଧାଇଁଯିବା ଆହୁରି ଦୁର୍ବଳତାର ଚିହ୍ନ । ଉତ୍ତେଜିତ ନହେବା ସବଳତା ତଥା ସତର୍କତାର ଚିହ୍ନ ।

ପ୍ରତ୍ୟେକ ପରିସ୍ଥିତିରେ ଆଗ ଭାବି ପରେ କଥାଟିକୁ କହିବା ସତର୍କତାର ଚିହ୍ନ । କହିସାରି ଭାବିବା ହେଉଛି ଅସତର୍କତାର ଚିହ୍ନ । ପାଟିରୁ କଥା ଓ ହାତରୁ ଅସ୍ତ୍ର ବାହାରିଗଲେ ଆଉ ଫେରେ ନାହିଁ, ଯଦି ଫେରେ ବୁମେରାଂ ହୋଇଫେରେ । ଏଥିପାଇଁ ସତର୍କତା ଅତ୍ୟନ୍ତ ଜରୁରୀ । ବାକ୍‌ଶକ୍ତିର ବ୍ୟବହାର ଆମର ଜନ୍ମଗତ ଅଧିକାର ମାତ୍ର ଏହାର ଅପବ୍ୟବହାର ନୁହେଁ । ଉତ୍କଟ ମୌନତା ଆମର ଭୂଷଣ ନୁହେଁ ଅଥବା ପ୍ରଗଲ୍‌ଭତା ଆମର ଧ୍ୟେୟ ନୁହେଁ । ଶ୍ରେୟ ହେଉଛି କେଉଁ ଶବ୍ଦ କେଉଁଠି କେତେ ପରିମାଣରେ ବ୍ୟବହାର କରିବା, ତାହା ହିଁ ଜାଣିବା କଥା । ଯାହାକୁ ଜାଣିଲେ ଜୀବନ ଗଛରୁ ବେଶୀଫୁଲ ତୋଳିହେବ । ଅଳ୍ପ କଣ୍ଟାର ଆଘାତ ପାଇବାକୁ ହେବ । କେବଳ କଥା କହିବା ନୁହେଁ ଜୀବନରେ ଏହିପରି ଅନେକ ବ୍ୟାବହାରିକ ଦିଗ ରହିଛି ଯାହାକୁ ଜାଣିବା ଦରକାର ଏବଂ ପ୍ରୟୋଗ କରିବା ଦରକାର । ଏହି ପ୍ରୟୋଗ ବିଧି ସଂସ୍କାର ରୂପରେ ପୀଢ଼ିକୁ ପୀଢ଼ି ଆସିଲେ କଣ୍ଟାଫୁଲିଆ ଗଛରୁ ବହୁତ କଣ୍ଟା କମିଯିବ ଏବଂ ଯେଉଁ ଅଳ୍ପ ରହିବ ତହିଁରେ ଏତେ କ୍ଷତାକ୍ତ ହେବାକୁ ପଡ଼ିବ ନାହିଁ । ଅତଏବ ଜୀବନରେ ସତର୍କତା ଔଷଧ ନହେଲେ ମଧ୍ୟ ପ୍ରତିଷେଧକ ପରି କାମ ଦେବ ।

❑❑

# ଜୀବନ ଜୀଇଁ ଜାଣିଲେ ସୁନ୍ଦର

ମଣିଷ ଜୀବନ ଏକ ଅମୂଲ୍ୟ ଧନ । ତାକୁ ବ୍ୟବହାର କରି ଜାଣିଲେ ତାହା ବଢ଼େ । ବ୍ୟବହାର କରିନଜାଣିଲେ ଶୀଘ୍ର ସରିଯାଏ । ଯାହା କିଣିବା କଥା ତାହା ନ କିଣିଲେ ଆଉ ଯାହା ନ କିଣିବା କଥା ତାହା କିଣିଲେ ଏହି ଧନର ଅପବ୍ୟବହାର ହୁଏ । ଥରେ ଅପବ୍ୟବହାର ଆରମ୍ଭ ହେଲେ ବୁଡ଼ିଗଲା ଗୋଡ଼ ତଳକୁ ତଳକୁ ଯାଏ ।

ଜୀବନ ଏକ ସୁଯୋଗ, ତାକୁ ଠିକ୍ ଭାବରେ ଗ୍ରହଣ କଲେ ସୁନା ଚୂଡ଼ି ପିନ୍ଧିବାକୁ ହୁଏ, ନ ହେଲେ କନାଧଡ଼ି ସୁଦ୍ଧା ପିନ୍ଧିବାକୁ ମିଳେ ନାହିଁ । ଏଇ ସୁଯୋଗକୁ ଅତି ହାଲ୍‌କା ଭାବରେ ନୁହେଁ କିମ୍ବା ଅତି ନିଦା ଭାବରେ ନୁହେଁ, ଆବଶ୍ୟକତା ଅନୁସାରେ ମଧ୍ୟବର୍ତ୍ତୀ ଚେତନାରେ ରହି ବ୍ୟବହାର କରିବାକୁ ପଡ଼େ । ଅର୍ଥାତ୍ ବାହାରେ ବଞ୍ଚିବା ନୁହେଁ ଅଥବା ବାହାରକୁ ଛାଡ଼ିଦେଇ କେବଳ ଭିତରେ ବଞ୍ଚିବା ନୁହେଁ । ବାହାର ଓ ଭିତରକୁ ମିଶାଇ ବଞ୍ଚିବା ହିଁ ଯଥାର୍ଥ ବଞ୍ଚିବା । ଜୀବନ ଏକ ଖଣ୍ଡହୀରା, ତାକୁ କାଟି ଜାଣିଲେ ହେଲା, କାଟି ଜାଣିଲେ ତାହା ଅଧିକ ଉଜ୍ଜ୍ୱଳି ଉଠେ, ଅର୍ଥାତ ଜୀବନ ଜୀଇଁ ଜାଣିଲେ ତାହା ସୁନ୍ଦର, ମଧୁର ଓ ଗଭୀର ହୋଇଉଠେ ।

ଜୀବନ ବଞ୍ଚିବାର ଗୋଟିଏ ମହନୀୟତା ହେଉଛି, ବର୍ତ୍ତମାନରେ ବଞ୍ଚିବା ଯାହା ପ୍ରାୟତଃ ଦେଖିବାକୁ ମିଳେ ନାହିଁ । ଆମେ ଜୀବନର ବହୁ ସମୟ ଅତୀତରେ ଅଥବା ଭବିଷ୍ୟତରେ ବଞ୍ଚୁ । ଅତୀତକୁ ଝୁରୁ, ଘାରିହେଉ, ଅତୀତର ଘଟଣାର ସ୍ମୃତି ଜାଲରେ ପଡ଼ି ଘାଣ୍ଟି ହେଉ । ବିଷାଦ, ଅବସାଦ ଓ ଅସ୍ଥିରତାର କୁହୁଡ଼ିରେ ବୁଡ଼ି ରହିଥାଉ । କିଏ ପଦେ କେତେବେଳେ କ'ଣ କହି ଦେଇଥିଲା ତାକୁ ଅଲକ୍ଷ୍ୟରେ ମାଳୁଥାଉ, ମାଳିବାରୁ ତାହା

କାୟା ବଢ଼ାଇ ଚାଲିଥାଏ । ଆଉ ଆମେ ସେହି କାୟାର ଛାୟାରେ ଲୁଚି ବସିଥାଉ । ନହେଲେ ଭାବୁ ଭବିଷ୍ୟତର କଥା । ଭବିଷ୍ୟତ ଭୂତ ହୋଇ ଡରାଏ, ଯଦି ତା' ଉପରେ ଅଧିକ ଗୁରୁତ୍ୱ ଦିଆଯାଏ । 'କ'ଣ କରିବି, କ'ଣ ହେବ' ଇତ୍ୟାଦିର ଅଛିଣ୍ଡା ପ୍ରଶ୍ନର କବଳରେ ପଡ଼ି ରାତି ହୋଇଯାଏ ଦିନ ଏବଂ ଦିନ ହୋଇଯାଏ ରାତି । ଅବଶ୍ୟ ମନ ଅଛି ମାନେ ଚିନ୍ତା ଅଛି, ଚିନ୍ତା ନ ଥିଲେ ଯୋଜନା ନାହିଁ, କର୍ମକୁଶଳତା ନାହିଁ ଅଥବା ସତର୍କତା ନାହିଁ । ଏଠାରେ ଅତ୍ୟଧିକ ଭବିଷ୍ୟତ ଚିନ୍ତାକଥା ପଡ଼ିଛି । ଯଦି ଏପରି ହେବ ପରିସ୍ଥିତି, ତେବେ କ'ଣ କରିବି ଅଥବା ଯଦି ସେପରି ହେବ ଅବସ୍ଥା ତେବେ କ'ଣ କରିବି - ଇତ୍ୟାଦିର ଚିନ୍ତା ଗଭୀରରୁ ଗଭୀରତର ହୋଇଗଲେ ତାହାର ପ୍ରଭାବ ଶରୀର ଉପରେ ପଡ଼େ ଓ ଶରୀର ଅସୁସ୍ଥ ହୁଏ । ଭବିଷ୍ୟତ ଅନିଶ୍ଚିତ, ଏଥିପାଇଁ ଏତେ 'ଯଦି'ର ଆବଶ୍ୟକତା ନାହିଁ, ପ୍ରଥମେ ଏକଥା ବୁଝିବା ଦରକାର । ଆମେ ସ୍ଥିର ଚିତ୍ତରେ ନିଜେ ଏକଥା ବୁଝିବା ଦରକାର, ଆମକୁ ଆଉ କେହି ବ୍ୟକ୍ତି ବୁଝାଇ ଦେଇପାରିବ, ଏହା ଭାବିବା ଭୁଲ୍, ଏହା ଆଶା କରିବା ବୃଥା । ଜଣେ କିଏ ମୁରବି ଅଛି ଆମର, ସେ ଗୁରୁ ହୁଅନ୍ତୁ ଅଥବା ସ୍ୱୟଂଭଗବାନ ହୁଅନ୍ତୁ, ତାଙ୍କ ଉପରେ ଭରସା ରଖିଲେ ଏବଂ ଯାହା ଆମ ପାଇଁ ସର୍ବୋତ୍ତମ ତାହା ତାଙ୍କ ଦ୍ୱାରା ଘଟିବ ଭାବିଲେ ଦୁଶ୍ଚିନ୍ତାର ପ୍ରକୋପ କମିଯିବ, ମନ ଏତେ ହତାଶାରେ ଭାଙ୍ଗିପଡ଼ିବ ନାହିଁ, ଟିକିଏ ପ୍ରକୃତିସ୍ଥ ହେବ । ସବୁ ଚିନ୍ତା ନିଜ ଉପରକୁ ଟାଣି ଆଣିଲେ ତା'ର ଓଜନ ସମ୍ଭାଳି ହେବ ନାହିଁ, ଫଳତଃ ମାନସିକ ଅସ୍ଥିରତା ଓ ଶାରୀରିକ ଅସୁସ୍ଥତା ଦେଖାଦେବ ।

ଦୁଃଖ ଜୀବନରେ ଅଛି, ଏକଥା ସତ୍ୟ । ଏହି ପୃଥିବୀ ତ ଦୁଃଖାଳୟ, ଦୁଃଖ ଏଠାରେ ମିଳିବା ବା ରହିବା ସ୍ୱାଭାବିକ । ଦୁଃଖକୁ ଭଗବାନଙ୍କର ଏକ ସ୍ୱରୂପ ବୋଲି ଭାବି ଦେଲେ ଏବଂ ଭଗବାନ ଆମ ପାଖକୁ ସେହି ରୂପରେ ଆସିଛନ୍ତି ବୋଲି ଭାବିଦେଲେ ଦୁଃଖର ତୀବ୍ରତା କମିଯିବ । ଆମକୁ ହାତ ଧରି ଆଗେଇ ନେବାକୁ ଦୁଃଖ ଯନ୍ତ୍ରଣା, ଅଭାବ, ଅଶାନ୍ତି, ଅସୁସ୍ଥତା ରୂପରେ ଭଗବାନ ଆସିଛନ୍ତି ବୋଲି ଭାବି ଦେଲେ ଦୁଃଖର ପ୍ରଭାବ କମିଯିବ, ହତାଶାଭାବ ମନରୁ ଦୂରେଇ ଯିବ, ଆଶାର ଉଷାକିରଣ ଝଲସି ଉଠିବ ।

ଆମେ କେବଳ ଦୁଃଖୀ, ଆଉ ଅନ୍ୟମାନେ ସୁଖୀ - ଏଇ ଚିନ୍ତାଧାରା ହିଁ ଦୁଃଖକୁ ବଢ଼ାଇ ଦିଏ । ପ୍ରତ୍ୟେକ ବ୍ୟକ୍ତିର ଦୁଃଖ ଅଛି । କାହାର କେଉଁ ପ୍ରକାର ଦୁଃଖ ଅଛି ତାହା ସିଏ ଜାଣେ । ଆମେ ନ ଜାଣି କହୁ ଯେ, ସେ ସଂପୂର୍ଣ୍ଣ ସୁଖୀ ବୋଲି । କେତେ ପ୍ରକାରର ଦୁଃଖ ଅଛି ତାହାର ଗଣନା କରିହେବ ନାହିଁ । ଯେତେ ବ୍ୟକ୍ତି ଅଛନ୍ତି, ସେତେ ପ୍ରକାର ଦୁଃଖ ଅଛି-କହିଲେ ଭୁଲ୍ ହେବ ନାହିଁ ।

ଦୁଃଖ ବେଳେ ଭଗବାନ ଅତି ପାଖରେ ଥାଆନ୍ତି ବୋଲି ବାରମ୍ବାର ଶାସ୍ତ୍ରମାନଙ୍କରେ କୁହାଯାଇଛି । ଭଗବାନ ତ ପିତାମାତା । ସନ୍ତାନର ଦୁଃଖବେଳେ ସେ କ'ଣ ଦୂରେଇ ଯାଇପାରନ୍ତି, ସେ କ'ଣ ନିଶ୍ଚିନ୍ତରେ ରହିପାରନ୍ତି । ବରଂ ସେ ଆମର ଦୁଃଖକଷ୍ଟ ଦୂର କରିବାକୁ ଚାହୁଁଥାନ୍ତି ଓ ଚେଷ୍ଟା କରୁଥାନ୍ତି । ଆମେ ବିବ୍ରତ, ଅସ୍ଥିର ଥିବାରୁ ତାଙ୍କ ସାହାଯ୍ୟକୁ ଗ୍ରହଣ କରିପାରୁନା, ତାଙ୍କ ସହାୟତାକୁ ବୁଝିପାରୁନା । ଚହଲା ପାଣିରେ ମୁହଁ ତ ଦିଶେ ନାହିଁ । ସ୍ଥିର ପାଣିରେ ଛବି ଦିଶେ । ଚିନ୍ତାର ଗହଳିରେ ତାଙ୍କ କଥା ଶୁଭେ ନାହିଁ, ଶାନ୍ତ ରହିଲେ ତାଙ୍କ କଥା ଶୁଭେ । ଦୁଃଖର ରାତି ପାହିବ କାରଣ ଶୀତ ସବୁଦିନେ ରହେ ନାହିଁ, ବସନ୍ତ ଆସେ । ଦୁଃଖ ଓ ସୁଖ ଚକ୍ର ପରି ବୁଲୁଥାନ୍ତି । ଜୀବନ ତ ସୁଖଦୁଃଖର ଏକ ଲୁଚକାଳି ଖେଳ । ତାକୁ ଟିକିଏ ସହଜରେ ଗ୍ରହଣ କରିନେବା ଉଚିତ । ଏତେ ହତାଶ କାହିଁକି ? ହତାଶା ନୁହେଁ 'ଆଶା', 'ଆଶା', 'ଆଶା' । ଆଶା ହିଁ ଜୀବନ, ଆଶା ହିଁ ଅମ୍ଳଜାନ, ଆଶା ହିଁ ପୂର୍ଣ୍ଣିମାର ଚନ୍ଦ୍ରକିରଣ । ଆଶା ଛାଡ଼ିଦେଲେ ହତାଶା ଆମକୁ ଦବେଇ ଦେବ, ବୁଡ଼ାଇ ଦେବ ମଝି ନଈରେ । ଅତଏବ ଆଶାର ଆବାହନ ଆମର ଏକାନ୍ତ ଦରକାର । ଶ୍ରୀମା କହନ୍ତି – ''ଆଶା କେବେ ବି ଛାଡ଼ିବ ନାହିଁ, ଆଶା ଗୋଟିଏ ଭଗବତ ସଦ୍‌ଗୁଣ । ଇଚ୍ଛା କରି ଆଶାବାଦୀ ହେବ ।''

ଜୀବନ ଆସିଛି ଆଗକୁ ଯିବା ପାଇଁ, ପଛକୁ ନୁହେଁ । ନିଜ ପରିସ୍ଥିତିର ମୁକାବିଲା କରି ନିଜକୁ ଅତିକ୍ରମ କରିବା ପାଇଁ ଜୀବନ ଆସିଛି । ଲହଡ଼ି ଭାଙ୍ଗି ଆଗକୁ ଯିବା ହିଁ ଜୀବନର ସାର୍ଥକତା, ଲହଡ଼ି ଦ୍ୱାରା ଭାଙ୍ଗିଯିବା ଜୀବନ ଯଥାର୍ଥ ଜୀବନ ନୁହେଁ । ଲହରୀ ଆସିବ ଓ ଯିବ ଅର୍ଥାତ୍ ଦୁଃଖ ଆସିବ ଓ ଯିବ । ମନରେ ବଳ ଥିଲେ, ସାହସ ଥିଲେ, ଧୈର୍ଯ୍ୟ ଥିଲେ ଲହଡ଼ି ହାରିଯିବ । କାରଣ ଦୁଃଖ ଆଉ କାହାକୁ ଡରେ ନାହିଁ, କେବଳ ଡରେ ମନୋବଳକୁ । ଯାହାର ମନୋବଳ ଅଛି, ତାହାର ସବୁ ଅଛି । ଧନ, ଯଶ, କ୍ଷମତା, ଜନବଳଠାରୁ ମନୋବଳ ବହୁଗୁଣରେ ଅଧିକ ମୂଲ୍ୟବାନ । ଦମ୍ଭ ହୋଇ ଠିଆ ହେବା ହିଁ ଯଥାର୍ଥ ମଣିଷପଣିଆ । ବିପଦ ଡରିଯାଏ ଏହି ମନୋବଳକୁ, ମନ୍ର ଦମ୍ଭ ଭାବକୁ । ଶ୍ରୀମା କହନ୍ତି – ''ଜୀବନର ଚଲାପଥରେ ଦମ୍ଭ ହୋଇ ଛିଡ଼ା ହୁଅ, କୌଣସି ମାରାତ୍ମକ ବିପଦ କେବେ ବି ଆସିବ ନାହିଁ ।''

ଅନ୍ୟ ସହିତ ତୁଳନା ନୁହେଁ, ନିଜକୁ ଯାହା ମିଳିଛି ତାହାକୁ ନେଇ ବାଟ ଚାଲିବା ହିଁ ପ୍ରକୃତ ପଥିକର ପରିଚୟ । ତୁଳନା ଦୁଃଖ ଆଣେ, ହୀନମନ୍ୟତା ଆଣେ, ନିରାଶାରେ ବୁଡ଼ାଇ ଦିଏ । ସଦାସର୍ବଦା ନିଜ ପରିସ୍ଥିତିର ବିରୁଦ୍ଧରେ, ପରିବେଶ ବିରୁଦ୍ଧରେ ଅଭିଯୋଗ କରିବାରେ ଦୁଃଖ ବଢ଼ିଯାଏ । ଅଭିଯୋଗ ନକରି ପଥକୁ ଅତିକ୍ରମ କରିଯିବା ହିଁ ବୀରତ୍ୱର ଯଥାର୍ଥ ଚିହ୍ନ ।

ସତର୍କତା ଏକ ପ୍ରତିଷେଧକ ପରି କାର୍ଯ୍ୟ କରେ । ସ୍ଥାନ, କାଳ, ପାତ୍ରକୁ ବିଚାର କରି କଥା କହିଲେ, କ୍ରିୟା କଲେ ଦୁଃଖର ପରିମାଣ ବହୁ ଗୁଣରେ କମିଯାଏ । ସତର୍କ ରହିଲେ ଦୁଃଖ ଆମ ଭିତରକୁ ପଶିବାକୁ ବାଟ ପାଏ ନାହିଁ । ଅତଏବ ସତର୍କତା ହିଁ ଜାଗ୍ରତପ୍ରହରୀର ବଳିଷ୍ଠ ଏକାଗ୍ରତା । ସୁତରାଂ ଅନିଚ୍ଛାରେ ମିଳୁଥିବା ଦୁଃଖକୁ ହାଲକା କରିବା ଏବଂ ଇଚ୍ଛାକୃତ ଭାବରେ ଦୁଃଖକୁ ଟାଣିନଆଣିବା ହିଁ ଯଥାର୍ଥ ମାନବିକତା । ବର୍ତ୍ତମାନ ଉପରେ ଗୁରୁତ୍ୱ ଦେଇ ସର୍ବୋତ୍ତମ ଭାବରେ କର୍ମଗୁଡ଼ିକୁ ସମ୍ପାଦନ କରିବା ଏବଂ ଆଗକୁ ଯିବାର ମନୋଭାବ ରଖିବା ହିଁ ବଞ୍ଚିବାର କଳାର ଅନ୍ତର୍ଗତ । ଶେଷରେ ଏତିକି କହିବା ଯେ, ''କହି ଜାଣିଲେ କଥାସୁନ୍ଦର, ବାନ୍ଧି ଜାଣିଲେ ମଥା ସୁନ୍ଦର ଏବଂ ଜୀଇଁ ଜାଣିଲେ ଜୀବନ ସୁନ୍ଦର ହୁଏ ।''



# ବଞ୍ଚିବାର କଳା ଓ କୌଶଳ

ବ୍ୟକ୍ତିଜୀବନ ଓ ବିଶ୍ୱଜୀବନ ଗୋଟିଏ ମୁଦ୍ରାର ଦୁଇ ପାଖ ପରି ଓତପ୍ରୋତ ଜଡ଼ିତ । ବିଶ୍ୱଜୀବନରେ ଯାହା ଘଟେ ବ୍ୟକ୍ତି ଜୀବନରେ ତାହାର ପ୍ରତିଫଳନ ହୁଏ ପୁଣି ବ୍ୟକ୍ତି ଜୀବନରେ ଯାହା ସଂଗଠିତ ହୁଏ, ବିଶ୍ୱଜୀବନରେ ତାହାର ପ୍ରଭାବ ପଡ଼ିଥାଏ । ଏହି ଦୃଷ୍ଟିରୁ ବିଚାର କଲେ ଆତ୍ମଜ୍ଞାନ ଓ ବିଶ୍ୱଜ୍ଞାନ, ଆତ୍ମଚିନ୍ତନ ଓ ବିଶ୍ୱଚିନ୍ତନ, ଆତ୍ମବିଚାର ଓ ବିଶ୍ୱବିଚାର, ଆତ୍ମଶାନ୍ତି ଓ ବିଶ୍ୱଶାନ୍ତି ପ୍ରଭୃତି କଥା ଗୋଟିଏ ମୁଦ୍ରାର ଉଭୟ ପାର୍ଶ୍ୱ ପରି ଉପସ୍ଥାପିତ ।

ଆମର ଗୋଟିଏ ବାହାର ଜୀବନ ଅଛି, ପୁଣି ଗୋଟିଏ ଭିତରେ ଜୀବନ ଅଛି । କେବଳ ବାହାର ଜୀବନ ସୁସ୍ଥ ଓ ସମୃଦ୍ଧ ହୋଇଗଲେ ଚଳିବ ନାହିଁ, ଏଥିସହିତ ଭିତର ଜୀବନ ମଧ୍ୟ ସୁସ୍ଥ ଓ ସମୃଦ୍ଧ ହେବା ଦରକାର । ଉଭୟ ଜୀବନର ସମନ୍ୱୟରେ ଯେଉଁ ଜୀବନ ଆସେ, ତାହା ହିଁ ଯଥାର୍ଥରେ ପୂର୍ଣ୍ଣାଙ୍ଗ ବ୍ୟକ୍ତି ଜୀବନ ଯାହା ବିଶ୍ୱଜୀବନ ସହିତ ସମ୍ପର୍କିତ ।

ଆମେ ଆମର ବାହାର ରୂପକୁ ଦେଖୁଛୁ, ବାହାର ସ୍ୱରକୁ ଶୁଣୁଛୁ ମାତ୍ର ଭିତର ରୂପକୁ ଦେଖୁନାହୁଁ ଅଥବା ଭିତର ସ୍ୱରକୁ ଶୁଣୁନାହୁଁ । ଭିତର ରୂପକୁ ନ ଦେଖିଲା ପର୍ଯ୍ୟନ୍ତ ଦେଖିବା ପୂର୍ଣ୍ଣ ହେବ ନାହିଁ କିମ୍ବା ଭିତର ସ୍ୱରକୁ ନ ଶୁଣିଲା ପର୍ଯ୍ୟନ୍ତ ଶୁଣିବା ସମ୍ପୂର୍ଣ୍ଣ ହେବ ନାହିଁ । ଏ କଥା ଶୁଣିଲା ମାତ୍ରେ ମନରେ ଭୟ ଆସିବା ସ୍ୱାଭାବିକ ଯେ ଭିତର ରୂପ ଦେଖିବା ପାଇଁ ବା ଭିତର ସ୍ୱର ଶୁଣିବା ପାଇଁ ଆମକୁ ବୈରାଗୀ ହୋଇ ଗୁମ୍ଫା ବା ଜଙ୍ଗଲକୁ ଯିବାକୁ ବୋଧହୁଏ ପଡ଼ିବ । ନିର୍ଜନ ବାସ ନ କଲେ, ଜନପଦଠାରୁ ଦୂରରେ ନ ରହିଲେ ତ ଏହା ସମ୍ଭବ ନୁହେଁ ।

ପ୍ରକୃତରେ ନିଜକୁ ଭେଟିବା ପାଇଁ ଗିରିଗୁମ୍ଫାକୁ ଯିବାକୁ ପଡ଼ିବ ନାହିଁ । ନିଜକୁ ଶୁଣିବା ପାଇଁ ନିର୍ଜନ ସ୍ଥାନକୁ ଯିବାର ଆବଶ୍ୟକତା ନାହିଁ । ଏ ସବୁ ସ୍ଥାନକୁ ନ ଯାଇ ମଧ୍ୟ ଜଣେ ନିଜକୁ ଦେଖିପାରିବ ବା ଶୁଣିପାରିବ ଯଦି ସେ ଏଥିପାଇଁ ଆଗ୍ରହ ପ୍ରକାଶ କରିବ । ଜଣେ ଯେଉଁଠାରେ ଅଛି, ସେ ଏଥିପାଇଁ ଆଗ୍ରହ ପ୍ରକାଶ କରିବ । ଜଣେ ଯେଉଁଠାରେ ଅଛି, ସେହିଠାରେ ରହି ଯେଉଁ କାର୍ଯ୍ୟରେ ରହିଛି, ସେହି କାର୍ଯ୍ୟରେ ଥାଇ ମଧ୍ୟ ଏହା ସମ୍ଭବ ହେବ, ଯଦି ପ୍ରବଳ ଆଗ୍ରହ ଥିବ । ଏଠାରେ ଆଉ ଗୋଟିଏ ପ୍ରଶ୍ନ ଆମ ମନକୁ ଆସିବ ଯେ ଆମେ ତ ବାହାର ଜୀବନରେ ବେଶ୍ ଖୁସିରେ ଅଛୁ, ବାହାରକୁ ଦେଖୁଛୁ, ବାହାରକୁ ଶୁଣି ବେଶ୍ ଆରାମରେ ଅଛୁ । ଆମର ଭିତର ଜୀବନ, ଭିତର ଦର୍ଶନ ପୁଣି ଭିତର ଶ୍ରବଣର ଆବଶ୍ୟକତା କ'ଣ ? ଉତ୍ତରରେ କୁହାଯିବ ଯେ ବାହାର ଜୀବନର ଖୁସି ସ୍ଥାୟୀ ନୁହେଁ, ଭିତର ଜୀବନର ଖୁସି ହିଁ ଅଧିକ ସ୍ଥାୟୀ । ଭିତର ଜୀବନ ହେଉଛି ବିବେକ ବିଚାରର ଜୀବନ ଆଉ ବାହାରର ଜୀବନ ହେଉଛି ବହିଃ ମନ ସହିତ ପଞ୍ଚଇନ୍ଦ୍ରିୟର ଜୀବନ ।

ଏ କଥା କହି ବାହାର ଜୀବନକୁ ଅବମାନନା କରାଯାଉନାହିଁ, ମାତ୍ର ବାହାର ଜୀବନ ଯେ ଅପୂର୍ଣ୍ଣ ଜୀବନ ଏ କଥା କୁହାଯାଉଛି । କେବଳ ମନରେ ବଞ୍ଚିବା ପୂର୍ଣ୍ଣ ବଞ୍ଚିବା ନୁହେଁ, ଏହା ସହିତ ବିବେକରେ ବଞ୍ଚିବା ପାଇଁ ଆଗ୍ରହ ଓ ଆନ୍ତରିକତା ଏକାନ୍ତ କାମ୍ୟ ।

ମନ ନିଜର ନିର୍ଦ୍ଦେଶରେ ସବୁବେଳେ ଠିକ୍ କାମ କରାଏ ନାହିଁ, ଠିକ ବାଟରେ ନିଏ ନାହିଁ, ଏହା ଉନ୍ମତ୍ତ ଅଶ୍ୱ ସଦୃଶ ବଳବାନ ଓ ଚଳଚଞ୍ଚଳ । ଏହାର ଆବଶ୍ୟକତା ଅଛି ମାତ୍ର ଏହା ସହିତ ଲଗାମର ବି ଆବଶ୍ୟକତା ରହିଛି । ଲଗାମହୀନ ଅଶ୍ୱ ଅମଡ଼ା ମାଡ଼ି ଯାଇ ସଜଡ଼ା କଥାକୁ ଉଜାଡ଼ି ଦିଏ ମାତ୍ର ଲଗାମଯୁକ୍ତ ଅଶ୍ୱ ଠିକ୍ ବାଟରେ ଗତି କରେ ଓ ଜୀବନରେ ପ୍ରଗତି ଆଣିଦିଏ ।

ବିବେକ ବିଚାର ସହିତ ସବୁକ୍ଷେତ୍ରରେ ଉଚିତ କାର୍ଯ୍ୟ କରାଯାଇପାରିବ । କେବଳ ମଠ ଆଶ୍ରମ ଯେ ଏଥିନିମନ୍ତେ ଉପଯୁକ୍ତ ସ୍ଥାନ, ତାହା ନୁହେଁ । କାର୍ଯ୍ୟାଳୟର କାର୍ଯ୍ୟଧାରା, ବ୍ୟବସାୟରେ ସାଧୁତା, ସାମାଜିକ ଜୀବନର ସଂହତି, ପାରିବାରିକ ଜୀବନର ଏକତା, ବିଜ୍ଞାନର ଅନୁସନ୍ଧିତ୍ସା, କଳାର ନିପୁଣତା, କ୍ରୀଡ଼ାର କୁଶଳତା ପ୍ରଭୃତି ଭିତରେ ମଧ୍ୟ ବାହାର ଜୀବନ ସହିତ ଭିତର ଜୀବନର ସମନ୍ୱୟ ରଖାଯାଇପାରେ । ଏଥିପାଇଁ ଆବଶ୍ୟକ ଟିକିଏ ଅନ୍ତର୍ମୁଖୀ ହେବା । ଆମକୁ ଅଧିକରୁ ଅଧିକ ବହିର୍ମୁଖୀ କରୁଥିବା ବସ୍ତୁମାନଙ୍କ ପ୍ରତି ଟିକିଏ ସଚେତନା ରହିବା । ଲୋଭ, କ୍ରୋଧ, ଈର୍ଷା, ସ୍ୱାର୍ଥପରତା, ହିଂସା, ମିଥ୍ୟା, ଛଳନା, ପ୍ରତାରଣା, ଠକାମି ପ୍ରଭୃତି ଅନେକ କଥା ଆମକୁ ଅଧିକରୁ ଅଧିକ ବହିର୍ମୁଖୀ କରେ ।

ତହିଁରୁ ଯଥାର୍ଥ ସୁଖ ମିଳେ ନାହିଁ । ଯାହା ମିଳେ ତାହା ହେଉଛି ଦୁଃଖର ଅନ୍ୟ ନାମ ମାତ୍ର । କବିଙ୍କ କଳ୍ପନାରେ ଧୂଆଁ ମାତ୍ର । ଏମାନେ ଆମକୁ ବାଟ ବାଉଳା କରି ବହୁ କଷ୍ଟ ଦେଇଥାନ୍ତି ।

ବାହାର ଜୀବନ ସହିତ ଭିତର ଜୀବନକୁ ମିଶାଇ ବଞ୍ଚିବାର କେତେ କୌଶଳ ଅଛି । ତହିଁରୁ ଏକ କୌଶଳ ହେଉଛି ଟିକିଏ ପଶ୍ଚାତଗତିର ତତ୍ତ୍ୱ । ଏହାକୁ ମନୋବୈଜ୍ଞାନିକମାନେ ନାମ ଦେଇଛନ୍ତି ଷ୍ଟେପବ୍ୟାକ ଥିଓରି । ଅର୍ଥାତ୍ କୌଣସି କଥା କହିବା ଆଗରୁ ଟିକିଏ ଭାବିଚିନ୍ତି କହିବା, କୌଣସି କାର୍ଯ୍ୟ କରିବା ପୂର୍ବରୁ ଟିକିଏ ଭାବିଚିନ୍ତି ଆଗେଇବା ଏହି ତତ୍ତ୍ୱର ଅନ୍ତର୍ଭୁକ୍ତ । ଯାହା ମନକୁ ଆସିଲା, ତାହା କହିଯିବା, ଯାହା ମନକୁ ଆସିଲା, ତାହା କରିଯିବା ଆଦୌ ବୁଦ୍ଧିମାନର କାର୍ଯ୍ୟ ନୁହେଁ । ଯିଏ ଏପରି କରିଥାନ୍ତି, ସେମାନେ ବହୁ ଅସୁବିଧାରେ ପଡ଼ିଥାନ୍ତି । ଏହାଦ୍ୱାରା କାର୍ଯ୍ୟଟି ଅକାର୍ଯ୍ୟରେ ପରିଣତ ହୁଏ ଏବଂ କଥାଟି ଅକଥାରେ ରୂପାୟିତ ହୋଇଥାଏ । ଅକାର୍ଯ୍ୟ ଓ ଅକଥା ହାତରୁ ଖସି ଯାଇଥିବା ଅସ୍ତ୍ର ଭଳି । ତାହା ଆଉ ହାତକୁ ଫେରେ ନାହିଁ, ଯଦି ଫେରେ ବହୁ ଅଘଟଣକୁ ସାଙ୍ଗରେ ଆଣି ଫେରେ । ଫଳତଃ ମାନସିକ ଶାନ୍ତି ନଷ୍ଟ ହୁଏ ଏବଂ ସାମାଜିକ ସ୍ଥିତି ଦୋହଲିଯାଏ । ଏ ତତ୍ତ୍ୱ ଆମ ପାଇଁ ନୂଆ କଥା ନୁହେଁ, ଉପଦେଶ ଭାବରେ ଏହା ବହୁ ଆଗରୁ ଉଲ୍ଲେଖ କରାଯାଇଛି ଭକ୍ତି ମୁକୁଟ ଭାଗବତ ଗ୍ରନ୍ଥରେ ଯେ "ଆପଣା କଲା କର୍ମମାନ / ଆଗୁଁ ହୋଇବ ସାବଧାନ ।"

ଆଉ ଗୋଟିଏ କୌଶଳ ହେଉଛି ନିଜେ ଠିକ୍ ଥିଲେ ଅନ୍ୟମାନଙ୍କ କଥାରେ ନିଜକୁ ଉତ୍ପୀଡ଼ିତ ନ କରିବା । ଏପରି ବହୁ ସମୟରେ ଘଟେ ଯେ ନିଜେ ଠିକ୍ ଥିଲେ ଅନ୍ୟମାନେ ଅଧିକ ଭୁଲ ବୁଝନ୍ତି ଅର୍ଥାତ୍ ଅଧିକ ଭୁଲ ବୁଝାମଣାର ଶିକାର ହେବାକୁ ହୁଏ । ସେତେବେଳେ ବିବ୍ରତ ବା ବିଚଳିତ ହୋଇ ନ ପଡ଼ି ସ୍ଥିର ରହିବା ଆବଶ୍ୟକ । ସ୍ଥିରତା ହିଁ ସେତେବେଳେ ମହୌଷଧି ପରି କାମ କରେ । ସ୍ଥିରତା ଆସିଲେ ସବୁ ଭୁଲ ବୁଝାମଣା ଲହରୀ ପରି ଚାଲିଯାଏ, କିଛି କ୍ଷତି କରିପାରେ ନାହିଁ । ଆଉ ଗୋଟିଏ କୌଶଳ ହେଉଛି ହତାଶା ଆସିବା ମାତ୍ରେ ତାକୁ ମନରୁ ତଡ଼ିବା । ବେଶୀ ସମୟ ରହିଗଲେ ହତାଶାକୁ ତଡ଼ିବା କଷ୍ଟ ହୁଏ । ହତାଶାକୁ ତଡ଼ିବାର ଏକ ମାର୍ଗ ହେଉଛି ସେତେବେଳେ ମନକୁ ଆଉ ଏକ ଗଠନମୂଳକ କାର୍ଯ୍ୟରେ ନିଯୁକ୍ତ କରିଦେବା । ଆଉ ଏକ ମାର୍ଗ ହେଉଛି ଆଶାର ଆଲୋକକୁ ଆବାହନ କରିବା । ପ୍ରବଳ ଆଶା ପୋଷଣ କଲେ ହତାଶା ଦୂର ହୋଇଯାଏ । ହତାଶା ଅନ୍ଧାରକୁ ତଡ଼ିବା ପାଇଁ ଆଶା ଆଲୋକ ପରି କାର୍ଯ୍ୟ କରିଥାଏ ।

ସବୁଠାରୁ ବଡ଼ କୌଶଳଟି ହେଉଛି ମନୋବଳ । ଧନବଳ, ଜନବଳ, ଯଶବଳ ପ୍ରଭୃତିଠାରୁ ମନର ବଳ ଅଧିକ ଶକ୍ତିଶାଳୀ । ଯାହାର ମନୋବଳ ଅଛି, ତାହାର ସବୁ ଅଛି । ସେ ଅସାଧ୍ୟ ସାଧନ କରିପାରେ, ଅସମ୍ଭବ ବୋଲି ତା' ପାଖରେ କିଛି ନଥାଏ । ଯେତେ ବିପଦ ଆସିଲେ ମଧ୍ୟ ତାକୁ ଭାଙ୍ଗିପାରେ ନାହିଁ, ସେ ବରଂ ବିପଦକୁ ଭାଙ୍ଗି ଦିଏ ।

ଏସବୁ ହେଉଛି ବଞ୍ଚିବାର କଳାର ଅନ୍ତର୍ଭୁକ୍ତ । ପ୍ରକୃତରେ ବଞ୍ଚିବାର କଳା ହିଁ ଯଥାର୍ଥ କଳା ଯାହା ବ୍ୟକ୍ତି ଜୀବନକୁ ସୁସ୍ଥ, ସୁନ୍ଦର ଓ ପରିପୂର୍ଣ୍ଣ କରିବା ସହିତ ବିଶ୍ୱଜୀବନକୁ ମଧ୍ୟ ସମୃଦ୍ଧ କରିପାରେ । ବାସ୍ତବରେ ଜୀବନ ଜୀଇଁବା ସହଜ ହୋଇପାରେ । ମାତ୍ର ଜୀବନ ବଞ୍ଚିବା ଏତେ ସହଜ ନୁହେଁ । ବଞ୍ଚିବା ପାଇଁ ବଞ୍ଚିବାର କଳାକୁ ଯେ ନିହାତି ଜାଣିବା ଦରକାର, ଏଥିରେ ସନ୍ଦେହର ଅବକାଶ ନାହିଁ ।

❑❑

# ଯୁବମାନସର ଗତି ଓ ପ୍ରଗତି

ଯୌବନ ହିଁ ଜୀବନର ବସନ୍ତ ସମୟ । ସେତେବେଳେ ଥାଏ ଦେହରେ ଅମାପ ଶକ୍ତି, ପ୍ରାଣରେ ଅସୀମ ଆନନ୍ଦ ଆଉ ମନରେ ଅଶେଷ ସାହସ । ପ୍ରଫୁଲ୍ଲତା ଯେତିକି ଥାଏ, ପ୍ରସନ୍ନତା ସେତିକି ଥାଏ । ଆଗେଇ ଯିବାର ପ୍ରେରଣା ଭିତରୁ ଆସେ । ଚାରିଆଡ଼ ସୁନ୍ଦର ଦିଶେ, ଫୁଟିଲା ଫୁଲ ପରି ସକାଳ ଦେଖାଯାଏ, ଦ୍ୱିପହର ଦିଶେ ଝଲସୁଥିବା କମକଟା ହୀରା ପରି । ଅଶିଣର ଚକାଜହ୍ନପରି ମନ ଛନ୍ନଛନ୍ନ ଥାଏ, ଫୁଲମାନେ ପାରିଜାତ ଫୁଲ ପରି ଦିଶନ୍ତି ଓ ମହମହ ବାସନ୍ତି । ସବୁ କଥା ଭଲ ଲାଗେ । ଚାଲିବାକୁ ଥିଲେ ଦଉଡ଼ିବାକୁ ମନ ହୁଏ, ଗୁଣୁଗୁଣୁ ନୁହେଁ ଗାଇବା ପାଇଁ ଇଚ୍ଛା ହୁଏ । କଥା କଥାରେ ଓଠରେ ମିଠା ହସ ଉକୁଟି ଉଠେ । ଅନ୍ତର ସେତେବେଳେ ସମୁଦ୍ର ପରି ପ୍ରଶସ୍ତ ଓ ପରିବ୍ୟାପ୍ତ, ହୃଦୟ ଆକାଶ ପରି ବିସ୍ତୃତ ଥାଏ । ସମସ୍ୟାର ଢେଉ ଭାଙ୍ଗିବା ପାଇଁ ମନରେ ଉତ୍ସାହ ଓ ଆଗ୍ରହ । ସେତେବେଳେ ସମସ୍ୟା ଡରାଇପାରେ ନାହିଁ, ବରଂ ଡରିଯାଏ । ବିପଦ ଦାବିପାରେ ନାହିଁ ବରଂ ଦବିଯାଏ । ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, ଧୈର୍ଯ୍ୟ ଓ ସୌକୁମାର୍ଯ୍ୟ ମିଶିଥିବା ଯୁବମାନସର ବର୍ଣ୍ଣବିଭା ଅବର୍ଣ୍ଣନୀୟ । ତାହା କେବଳ ଅନୁଭବ୍ୟ, ବଚନର ବିଷୟ ନୁହେଁ ।

ଏଡ଼େ ସୁନ୍ଦର ଫୁଲର ପାଖୁଡ଼ାକୁ ଯଦି ପୋକକାଟି ଦିଏ, ତେବେ କଥା ସରେ, ସେ ଅଲୋଡ଼ା ହୁଏ, ଶୁଖି ଶୁଖି ଝଡ଼ିପଡ଼େ । କେହି ଆଦର କରନ୍ତି ନାହିଁ, କାରଣ ତାହା ପୂଜାଡାଲା ମଣ୍ଡନ କରିପାରେ ନାହିଁ । ସବୁ ଗୋଳମାଳ ଧରିଯାଏ, ନାବିକ ଦିଗହରା ହୁଏ, ନାଆ ଭିତରେ ପାଣିପଶେ । ଥରେ ନାଆ ଭିତରେ ପାଣି ପଶିଲେ

ସବୁ କଥା ସର୍ବନାଶ ଆଡ଼କୁ ଯାଏ । ଓଠରୁ ହସ ଲିଭିଯାଏ, ଆଖିରୁ ନିଦ ହଜିଯାଏ, ମନରୁ ସରସତା ଲୋପ ପାଇଯାଏ । ସେ କାହାର ହୋଇପାରନ୍ତି ନାହିଁ କିମ୍ବା ନିଜର ମଧ ହୋଇପାରନ୍ତି ନାହିଁ । ତାଙ୍କ ଉପରେ ଭରସା ରଖିଥିବା ପିତାମାତା ହତାଶ ହୋଇପଡ଼ନ୍ତି । ସେମାନେ ପିତାମାତାଙ୍କ ଦାୟିତ୍ୱ ଭବିଷ୍ୟତରେ ନେବେ କ'ଣ ବରଂ ପିତାମାତାଙ୍କ ଉପରେ ବୋଝ ହୋଇଯାଆନ୍ତି । ମାନସିକତାରେ ଅକ୍ଷମତା ତାଙ୍କୁ ବୋଝରେ ପରିଣତ କରିଦିଏ । ନଚେତ୍ ଦୁର୍ନୀତି କରନ୍ତି, ଦୁଷ୍କର୍ମ କରନ୍ତି, ଚୋରି କରନ୍ତି, ଡକାୟତି କରନ୍ତି ଇତ୍ୟାଦି ଇତ୍ୟାଦି । ଏଥିରେ ପିତାମାତା ମର୍ମାହତ ହୁଅନ୍ତି, ଭାଗ୍ୟକୁ ନିନ୍ଦନ୍ତି, ଅସୁବିଧାରେ ପଡ଼ନ୍ତି ଓ ଅସୁସ୍ଥ ହୁଅନ୍ତି । ଭଲକଥା ବୁଝେଇଲେ ଗାଳି ଖାଆନ୍ତି, ଲୁହ ଝରାନ୍ତି, ନୀରବ ରହନ୍ତି, ଅଧିକ ବୁଝାଇଲେ ଅବସ୍ଥା ଅସମ୍ଭାଳ ହୁଏ ଯାହା କହି ହୁଏନି କି ସହି ହୁଏନି । ଅବଶ୍ୟ ଏକଥା ସମସ୍ତଙ୍କ ପାଇଁ ସତ୍ୟ ନୁହେଁ ଅଥବା ସମସ୍ତଙ୍କ ଘର ପାଇଁ ସତ୍ୟ ନୁହେଁ । ତଥାପି ଅଛନ୍ତି ସ୍ନେହଶୀଳ, ସହାନୁଭୂତିଶୀଳ, ସଂସ୍କୃତିସଂପନ୍ନ, କର୍ମଠ, ସଚ୍ଚୋଟ, କର୍ତ୍ତବ୍ୟ ପରାୟଣ ଯୁବଶକ୍ତି, ନହେଲେ ସଂସାର ଚଳନ୍ତା ନାହିଁ, ପବନ ବହନ୍ତା ନାହିଁ କି ବର୍ଷା ଝରନ୍ତା ନାହିଁ ।

ତେବେ ଯେଉଁମାନେ ଦିଗହରା ହୋଇଯାଇଛନ୍ତି ତାହାର କେତେକ କାରଣ ରହିଛି । ଅପ୍ରିୟ ହେଲେ ମଧ ସତ୍ୟ ଯେ ପିତାମାତା ସେମାନଙ୍କ ପାଇଁ ଯଥେଷ୍ଟ ଧ୍ୟାନ ଦେଇ ନାହାନ୍ତି । ଧ୍ୟାନ ଦେବା ଅର୍ଥ ଯଥେଷ୍ଟ ସମୟ, ଧୈର୍ଯ୍ୟ, ସହନଶୀଳତା ରଖି ନାହାନ୍ତି । ତାଙ୍କ ମାନସିକତାକୁ ଆସି ନାହାନ୍ତି, ତାଙ୍କ ସ୍ତରକୁ ଓହ୍ଲାଇ ନାହାନ୍ତି । ତାଙ୍କ କଥାକୁ ଧୈର୍ଯ୍ୟରସହ ଶୁଣି ନାହାନ୍ତି, ପିଲାଳିଆ କଥା ଭାବି ତାଙ୍କୁ ଚୁପ କରାଇ ଦେଇଛନ୍ତି । କଥା କଥାକେ ଗାଳି ଦେଇଛନ୍ତି, ମାଡ଼ ମଧ ମାରିଛନ୍ତି । ମାତ୍ର କେବେ ବୁଝାଇ ଦେଇନାହାନ୍ତି କେଉଁଠି ଭୁଲ୍, ଆଉ କେଉଁଠି ଠିକ୍ । କାହାକୁ କେମିତି କଥା କୁହାଯାଏ ଶିଖାଇ ନାହାନ୍ତି, ବତାଇ ନାହାନ୍ତି ଅଥବା ବୁଝାଇ ନାହାନ୍ତି । କିଛି ଛୋଟ ଜିନିଷଟିଏ ଭାଙ୍ଗି ଦେଲେ ବହୁତ ଗାଳି ଦେଇଛନ୍ତି । ପିଲାଟି ସତ କଥାଟିଏ କହିଲେ ତାଙ୍କୁ ଧନ୍ୟବାଦ ନ ଦେଇ ଓଲଟା ଗାଳି ଆରମ୍ଭ କରିଛନ୍ତି । ଘରେ ଚାପମୁକ୍ତ ପରିବେଶ ତିଆରି କରି ନାହାନ୍ତି । ଅନ୍ୟମାନଙ୍କ ପ୍ରତି ବ୍ୟବହାରରେ ତ୍ରୁଟି ରହିଯାଇଛି, ହୁଏତ ଜାଣିପାରି ନାହାନ୍ତି । ନ ଜାଣିପାରିବାର ପ୍ରଭାବ ମଧ ପିଲାଟି ଉପରେ ପଡ଼ି ଥାଇପାରେ ବୋଲି କୁହାଯାଇପାରେ ।

ଘରେ ସବୁକଥା ଠିକ୍ ଥିଲେ ମଧ ଯୁବଶକ୍ତି ମାର୍ଜିତ, ଶୃଙ୍ଖଳିତ ସଂଯତ ନ ହେବାର ଅନ୍ୟତମ ବଡ଼ କାରଣ ହେଉଛି ସଙ୍ଗଦୋଷ । ସାଙ୍ଗ ମେଳରେ ଅଲଗା ଭାଷାରେ କଥା ଚାଲେ, ତାହା କେଉଁ ଅଭିଧାନରେ ନ ଥାଏ କିମ୍ବା କୌଣସି ଅବଧାନ ପଢ଼ାଇ ନ

ଥାନ୍ତି । ଏପରି ସବୁ ଯୋଜନା ହୁଏ ଯାହାକୁ ବେଳେବେଳେ ଚିନ୍ତା କରିହୁଏ ନାହିଁ । ସେ ନଈଗାଧୁଆ ହେଉ ଅଥବା ସମୁଦ୍ରସ୍ନାନ ହେଉ । ମହାବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟରେ ଉପସ୍ଥାନ ଖାତାରେ ନାଁ ରହିଗଲେ ତ ପାଠ ଆପେ ଆପେ ହୋଇଯିବ ନାହିଁ, ସେଥିପାଇଁ ପରିଶ୍ରମ ଲୋଡ଼ା । ପରିଶ୍ରମ ପାଇଁ ସମୟ, ଏକାଗ୍ରତା, ଆଗ୍ରହ ଆବଶ୍ୟକ । ସେଇଥିପାଇଁ କଥାରେ ଅଛି 'ପାଠ ପଢ଼ା ବଡ଼ ଦୁଃଖ, ପଢ଼ନ୍ତେ ବଡ଼ ସୁଖ' । ମୋବାଇଲ୍‌ରେ ନୀରବ ଆମନ୍ତ୍ରଣ ସାଙ୍ଗମାନଙ୍କ ଠାରୁ ଆସିଲେ ସବୁ ପିତା ଲାଗେ, ପାଠପଢ଼ା ତ ଅଧିକ ପିତାଲାଗେ । ପିତାମାତାଙ୍କଠାରୁ ଦୂରରେ ରହି ପାଠ ପଢୁଥିଲେ, ଶରଦଶଶୀ ହାତରେ ଖସେ । ନିଜ ହାତରେ ନିଜକୁ ମାପିବା ସହଜ ହୋଇଥାଏ । ଇନ୍ଦ୍ରପଦ ତଳକୁ ଖସି ଆସେ ଓ ତହିଁରେ ଦମ୍ଭରେ ବସିଗଲା ପରି ଲାଗେ ।

ଆମ ପାଠକଥା ନକହିଲେ ଭଲ । ତାହା କେବଳ ନମ୍ବର ରଖା ପାଠପଢ଼ା ଯାହାର ଜୀବନ ସହିତ ବିଶେଷ କିଛି ସଂପର୍କ ନାହିଁ । ଜୀବନର ମହତ୍ତ୍ୱ ଗୋଟିଏ ଦିଗରେ ଆଉ ପାଠ ଓ ପାଠପଢ଼ା ଆଉ ଏକ ଦିଗରେ । କାହା ସହିତ କାହାର ତାଳମେଳ ନାହିଁ । ଯେତେ ଅଧିକ ନମ୍ବର ରଖିବ ସେତେ ଅଧିକ ଆଦର ମିଳିବ । ଘରେ ଓ ବାହାରେ ମିଳିବ । ଜୀବନ ସହିତ ସେ ପାଠର ସଂପର୍କ ଥାଉ କି ନ ଥାଉ, ସେ ପାଠ ଜୀବନକୁ ଉଚିତ ମାର୍ଗରେ ଗଢୁ କି ନଗଢୁ ସେଥିରେ କିଛି ଯାଏ ଆସେ ନାହିଁ । ଦୃଷ୍ଟିକୋଣ ପ୍ରସାରିତ ହେଉ କି ନ ହେଉ, ଅନ୍ତର ବିକଶିତ ହେଉ କି ନ ହେଉ, ସେଥିରେ କିଛି ଯାଏ ଆସେ ନାହିଁ । ସେଥିରେ ଜୀବନର ମୂଲ୍ୟବୋଧ ଥାଉ କି ନ ଥାଉ ତହିଁରେ କିଛି ଯାଏ ଆସେ ନାହିଁ । ମୂଲ୍ୟ କେବଳ ରହିଲେ ଯଥେଷ୍ଟ । ମୂଲ୍ୟ ସହିତ ମୂଲ୍ୟବୋଧର ମିଶ୍ରଣ ହିଁ ଅସଲ ଶିକ୍ଷାର ଲକ୍ଷ୍ୟ । ଯାହାକୁ ଶ୍ରୀଅରବିନ୍ଦ କହିଲେ 'ଜ୍ଞାନ ପାଇଁ ଜ୍ଞାନ' ଏବଂ ସ୍ୱାମୀ ବିବେକାନନ୍ଦ କହିଲେ, 'ଉତ୍ତମ ଚରିତ୍ର ଗଠନ' । ଶ୍ରୀମାଙ୍କ ମତରେ – ''ନିଜ ଉପରେ ପ୍ରଭୁତ୍ୱ ଅର୍ଜନ କରିବା, ନିଜ ଜୀବନକୁ ଶୃଙ୍ଖଳିତ କରିବା, ନିଜର ଦୋଷ ଦୁର୍ବଳତା ଗୁଡ଼ିକୁ ଅତିକ୍ରମ କରିବା ହେଉଛି ଶିକ୍ଷାର ଲକ୍ଷ୍ୟ ।''

ଏଇ ଅବକାଶରେ ମନେପଡ଼େ ସ୍ୱାମୀ ବିବେକାନନ୍ଦଙ୍କର କଥାଟିଏ । ସାରା ଭାରତ ପ୍ରଦକ୍ଷିଣ କରି ତାହାର ଶିରାପ୍ରଶିରାକୁ ଅନୁଧାନ କରି ସ୍ୱାମୀଜୀ ବେଲୁଡ଼ ମଠକୁ ଫେରିଲେ । ବିଷର୍ଣ୍ଣ ବଦନରେ ବସିଛନ୍ତି, ପାଖରେ କେହି ନାହାନ୍ତି । ହଠାତ୍ ଜଣେ ଗୁରୁ ଭାଇ ଆସିଲେ ଓ ତାଙ୍କୁ ଦେଖି ପଚାରିଲେ ଯେ ସେ ଏଡ଼େ ଉଦାସ କାହିଁକି ? ସ୍ୱାମୀଜୀ ଉତ୍ତର ଦେଲେ ଯେ ସାରା ଭାରତରେ ଅନେକ ସମସ୍ୟା ଦେଖି ମର୍ମାହତ ହେଲି । ଗୁରୁଭାଇ ସମାଧାନର ସୂତ୍ର କଥାଟି ପଚାରନ୍ତେ ସ୍ୱାମୀଜୀ କହିଲେ ଯେ ଉପଯୁକ୍ତ ଶିକ୍ଷା ହିଁ ସମସ୍ତ ସମସ୍ୟାର ଆରୋଗ୍ୟ ନିମନ୍ତେ ମହୌଷଧି ।

ବାସ୍ତବରେ ଶିକ୍ଷା ଜୀବନଧର୍ମୀ ହେବା ଆବଶ୍ୟକ ଏବଂ ସମୟୋପଯୋଗୀ ହେବା ଆବଶ୍ୟକ । କେବଳ ସମୟୋପଯୋଗୀ ହେଲେ ଯଥେଷ୍ଟ ହେବ ନାହିଁ । କେବଳ ଧନ ଅର୍ଜନ ନୁହେଁ, ତା' ସହିତ ମନର ବିକାଶ, ଜାତୀୟତାବୋଧର ବିକାଶ, ବିଶ୍ୱାତ୍ମକତାର ବିକାଶ ହିଁ ଯଥାର୍ଥରେ ଶିକ୍ଷାର ଲକ୍ଷ୍ୟ । କେବଳ ସମ୍ବାଦ ସଂଗ୍ରହ ଶିକ୍ଷାର ଲକ୍ଷ୍ୟ ନୁହେଁ, ଏଥିସହିତ ମନୁଷ୍ୟ ନିର୍ମାଣ ହେଉଛି ଶିକ୍ଷାର ଲକ୍ଷ୍ୟ । ସ୍ୱାମୀ ବିବେକାନନ୍ଦଙ୍କର ପଦେ ଦୁଇପଦ କଥା ସହିତ ଉପସଂହାରକୁ ଆସିବା । ତାଙ୍କ ମତରେ- ''ମୁଣ୍ଡରେ କେତେ ଗୁଡ଼ିଏ ତଥ୍ୟ ପୂରାଇ ଦିଆଗଲା, ଯାହା ସାରା ଜୀବନ ଅସମ୍ବନ୍ଧ ଭାବରେ ଘୂରିବାକୁ ଲାଗିଲା - ଏହାକୁ ଶିକ୍ଷା କୁହାଯାଏ ନାହିଁ । ଆମମାନଙ୍କୁ ବିଭିନ୍ନ ଭାବ ସମୂହକୁ ଏପରି ଭାବରେ ନିଜର କରି ନେବାକୁ ହେବ, ଯାହା ଆମମାନଙ୍କୁ ଜୀବନ ଗଠନ, ମନୁଷ୍ୟ ନିର୍ମାଣ ଓ ଚରିତ୍ର ଗଠନରେ ସାହାଯ୍ୟ କରିବ ।''

ଅତଏବ ସବୁକଥା ପାଇଁ ଯୁବଶକ୍ତିକୁ ଦୋଷ ଦେଲେ ଚଳିବ ନାହିଁ । ଶେଷରେ ଏତିକି କୁହାଯାଇ ପାରେ ଯେ ପିଲାମାନେ ପାଖରେ ଥିଲେ ପିତାମାତାଙ୍କର ସେମାନଙ୍କ ପ୍ରତି ସ୍ଥୁଳଦୃଷ୍ଟି ଓ ସୂକ୍ଷ୍ମଦୃଷ୍ଟି ଏବଂ ଦୂରରେ ଥିଲେ ସେମାନଙ୍କ ପ୍ରତି ସୂକ୍ଷ୍ମଦୃଷ୍ଟି ରହିବା ଉଚିତ । ଶିକ୍ଷାନୀତିରେ ପରିବର୍ତ୍ତନ ଆସିଲେ ବହୁ ପାରିବାରିକ ଓ ସାମାଜିକ ସମସ୍ୟାର ସମାଧାନ ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।



# ସତେ ! ମେରୁଦଣ୍ଡ ଭାଙ୍ଗି ଦେଲେ

ନୈତିକତା ଥିଲା ଯେଉଁ ଦେଶର ଲୋକମାନଙ୍କର ଚଳଣିର ମେରୁଦଣ୍ଡ, ନ୍ୟାୟ ଅନ୍ୟାୟ ବିଚାରର ଯେଉଁ ଲୋକମାନଙ୍କର ଚଳିବାର ମାନଦଣ୍ଡ ଥିଲା, ସେ ସବୁ ଭାଙ୍ଗିଗଲା, ଭାଙ୍ଗିଗଲା ଯେ ଗଲା ଆଉ ଯୋଡି ହେଉ ନାହିଁ । କିପରି ଭାଙ୍ଗିଲା ସେକଥା କିଛି ଲୋକ ଜାଣନ୍ତି । ସମସ୍ତେ ଜାଣନ୍ତି ନାହିଁ । ଏବେ ମଧ୍ୟ ବହୁଲୋକ ଅଛନ୍ତି ଯେଉଁମାନଙ୍କର ଧାରଣା ଯେ ଆମର ମେରୁଦଣ୍ଡ ବୋଲି କିଛି ନଥିଲା । ଆମ ପୂର୍ବପୁରୁଷ ଖାଇ ପିନ୍ଧି ରହୁଥିଲେ, ଆମେ ତ ଖାଇପିନ୍ଧି ରହୁଛୁ । ମେରୁଦଣ୍ଡ ପୁଣି କ'ଣ ? ଯୁବକ କହୁଛି ଯେ ମେରୁଦଣ୍ଡ ସଂପର୍କରେ ଜାଣିବା ତ ଦୂରର କଥା ଶୁଣିବାକୁ ତାକୁ ବେଳ ନାହିଁ । କାନ ତ ଭର୍ତ୍ତି ମାଗଣା ଫୋନର ଶବ୍ଦରେ । ମନ ତ ଭର୍ତ୍ତି ହ୍ୱାଟସ୍ ଆପରେ ଫେସ୍‌ବୁକ୍‌ରେ । ମନ କହୁଛି କେଡ଼େ ଭାଗ୍ୟବାନ ଆମେ, ଆମେ ଏକା ନୋହୁ ଆମ ଘରିପଟେ ମିଛ ହେଉ କି ସତ ହେଉ ରହିଛି ସମ୍ବନ୍ଧର ଛନ୍ଦାଛନ୍ଦି ମାୟାଜାଲ । ଆଃ, ଆମେ ତ ଭାଗ୍ୟବାନ ପିଲାରେ...।

ଭଙ୍ଗା ମେରୁଦଣ୍ଡରେ ଆମେ କେତେ ଖୁସି, ଆମକୁ ଦେଖି ଆମଠାରୁ ବହୁଦୂରରେ ରହି ସେମାନେ କେଡ଼େ ଖୁସି ହେଉଥିବେ, ଯେଉଁମାନେ କେତେ ସହଜରେ ଆମ ମେରୁଦଣ୍ଡ ଭାଙ୍ଗିଦେଲେ । କେତେ ଦୂରଦୃଷ୍ଟି ତାଙ୍କର । ସୂକ୍ଷ୍ମଦୃଷ୍ଟି ବୋଲି କହିବା ନାହିଁ, ଦୂରଦୃଷ୍ଟି ବୋଲି କହିବା । ମେକଲେଙ୍କୁ ଲଗାଇ ଦେଲେ ଆମ ଦେଶର ଜନଜୀବନକୁ ନିରୀକ୍ଷଣ କରିବାର କାର୍ଯ୍ୟରେ । ସେ ନିରୀକ୍ଷଣ କଲେ ଏବଂ କହିଲେ ଯେ ଏ ଦେଶରେ ଚୋରି ନାହିଁ, ଅନ୍ୟାୟ ନାହିଁ, ଅନୀତି ନାହିଁ । ଏ ଦେଶକୁ ପଦାନତ କରି ରଖିବା କଷ୍ଟ

ସାଧ ତଥାପି ଗୋଟିଏ ବାଟ ଅଛି । ଏହାର ନୈତିକତା, ପ୍ରଶାନ୍ତି, ଆନନ୍ଦର ମୂଳକଥା ଯେଉଁ ଶିକ୍ଷା ଓ ଶିକ୍ଷା ବ୍ୟବସ୍ଥା ତାହାକୁ ଭାଙ୍ଗି ଦେବାକୁ ପଡ଼ିବ । ଭାଙ୍ଗି ଦେଲେ ଏ ଜାତିର ମେରୁଦଣ୍ଡ ଭାଙ୍ଗିଯିବ ଏବଂ ସେ ପଦାନତ ହୋଇଯିବ । ତାହା ହେଲା । ଏମିତି ବ୍ୟବସ୍ଥା କରାଗଲା ଏବଂ ବ୍ୟବସ୍ଥା ମାଧ୍ୟମରେ ଆମର ଉତ୍ତର ଦାୟାଦମାନଙ୍କୁ ସେତେବେଳେ ଜଣାଇ ଦେବାକୁ ହେଲା ଯେ ଆମେ ଆମାର୍ଜିତ, ଅଶିକ୍ଷିତ ଜାତି, ଆମର ପରଂପରା ବୋଲି କିଛି ନାହିଁ । ଆମେ ଧର୍ମଭୀରୁ ଦରିଦ୍ର ଜାତି ବୋଲି ଆମକୁ ପ୍ରମାଣ କରାଗଲା । ଆମେ ନିରୁପାୟ ହୋଇ ମାନି ନେଲୁ, କାରଣ ଅନ୍ୟପନ୍ଥା ନଥିଲା । ଆମେ ସ୍ୱାଧୀନ ନଥିଲୁ ନା ଚିନ୍ତାରେ ନା କାର୍ଯ୍ୟରେ । ଯଦିଓ କିଛି ବ୍ୟକ୍ତି ଜାଣିଥିଲେ ଯେ ଆମେ ଏକ ସଂସ୍କୃତି ସଂପନ୍ନ, ଐତିହ୍ୟ ସଂପନ୍ନ ଜାତି ତଥାପି ପରିସ୍ଥିତିର ଚାପରେ ନିଜକୁ ଜାହିର କରିବା ସମ୍ଭବ ହେଲା ନାହିଁ । ଜାଣତରେ ହେଉ ଅଥବା ଅଜାଣତରେହେଉ, ଇଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ କେତେ ପୀଢ଼ି ମାନି ନେଲା ଯେ ଆମେ କିଛି ନୋହୁ, ଆମର କିଛି ନଥିଲା । ସତେ ଆମେ ହୀନବଳ, ଦୁର୍ବଳ ବୋଲି । ସବୁବେଳେ ଚୋର ଘର ଅନ୍ଧାର ଯାଏନି, କିଛି ସଚେତନ ସାହସୀ ବ୍ୟକ୍ତି ଏକାଠି ହେଲେ, ନିଜକୁ ଚିହ୍ନିବାକୁ ପ୍ରୟାସ କଲେ, ନିଜର ସ୍ଥିତିକୁ ଜାହିର କଲେ, ଅନ୍ୟାୟର ପ୍ରତିବାଦ କଲେ, ସତ୍ୟାଗ୍ରହ କଲେ, ଅହିଂସା ଅସ୍ତ୍ରଧରି ସଂଗ୍ରାମ କଲେ । ସଂଗ୍ରାମରେ ଜୟଯୁକ୍ତ ହେଲେ । ପରାଧୀନତାରେ ନଇଁ ଯାଇଥିବା ମୁଣ୍ଡ ଉଠିଲା, ମାତ୍ର ମୁଣ୍ଡ ଯେତେ ଉଠିବା କଥା ଉଠିଲା ନାହିଁ କାରଣ ମେରୁଦଣ୍ଡ ସିଧା ହେଲା ନାହିଁ । ଦୁଃଖ ରହିଲା ଯେ ନିଜେ ମୁଣ୍ଡ ସିଧା ଟେକି ପାରିଲେ ନାହିଁ କି ପରପୀଢ଼ିକୁ ମୁଣ୍ଡ ସିଧା କରିବାକୁ ପ୍ରେରଣା ଦେଲେ ନାହିଁ । ଅସୁବିଧାରେ ପଡ଼ି ଅଭ୍ୟାସବଶରୁ ସେମାନଙ୍କ ମେରୁଦଣ୍ଡସିନା ବଙ୍କା ହୋଇଯାଇଥିଲା, ପର ପୀଢିରତ ବଙ୍କା ହେବାର ଆବଶ୍ୟକତା ବା ଅବକାଶ ନଥିଲା । ସତ ଭୟ ତ ନଥିଲା, ମିଛ ଭୟରେ ଭୟଭୀତ ହୋଇ ପରପୀଢ଼ିକୁ ମୁଣ୍ଡ ଉଠାଇବାକୁ ସୁବିଧା ଦେଲେନି, ସାହସ ଦେଲେନି, ଦମ୍ଭ ଦେଲେନି, ଚେଷ୍ଟା ତ ଦୂରର କଥା ।

ବର୍ତ୍ତମାନ କେଡ଼େ ସଙ୍କଟର ସମୟ । ଏ ସଙ୍କଟ ଖାଦ୍ୟର ନୁହେଁ, ଚେତନାର, ସ୍ୱାଭିମାନର । ସବୁଥାଇ କିଛି ନଥିବାର ଦଂଶନ ଜ୍ୱାଳା । ନିଜକୁ ନ ଚିହ୍ନିବାର ସଂକଟ, ଭାସମାନ ଅବସ୍ଥାର ସଙ୍କଟ । ବର୍ତ୍ତମାନ ଯୁବଶକ୍ତି ପାଖରେ ଶିକ୍ଷାଗତ ଡିଗ୍ରୀ ଥାଉ କି ନଥାଉ ଅଛି ଫୁଲାଏ ଅହଂକାର । ଦେହରେ ବଳ ପ୍ରବଳ, ମନରେ ଅନ୍ୟକୁ ଠକି ଦେବାର ଚିନ୍ତା ଆହୁରି ପ୍ରବଳ । ମଥା ଭିତରେ, ଅଛି 'ମୁଁ', 'ମୁଁ' ଚିନ୍ତା । ମଥା ଭିତରେ ଦେଶକଥା ନାହିଁ, ସଂସ୍କୃତି କଥା ନାହିଁ, ସଭ୍ୟତାର କଥା ନାହିଁ, ନୈତିକତାର କଥା ନାହିଁ । ସେ ଭାରତ ଏ ଭାରତ, ସେ ଭାରତୀୟ ଏ ଭାରତୀୟ ମଝିରେ ଏବେ ଗଡ଼ଖାଇ, ଗଡ଼ଖାଇ

ନୁହେଁ କେଡ଼େ ଗଭୀର ଉପସାଗର, ସତେ ଭାବି ହେଉ ନାହିଁ । ଭାବିବା ପାଇଁ ବେଳ ଯଥେଷ୍ଟ ଅଛି ଆମ ପାଖରେ ମାତ୍ର ଆମର ସେ ମାନସିକତା ନାହିଁ । ମନରେ ଆସୁଛି ବାୟାର କି ଯାଏ, ବାଆ କଲେ ବସା ଦୋହଲୁଥାଏ ।

ଯାହାତ ଗଲାଣି ଗଲାଣି, ଯାହା ତ ହେଲାଣି ହେଲାଣି । ଏବେ ସମୟ ଆସିଛି ମେରୁଦଣ୍ଡ ସଳଖିବା ପାଇଁ । ଯେଉଁ ବ୍ୟବସ୍ଥାକୁ ଅବ୍ୟବସ୍ଥା କରି ମେରୁଦଣ୍ଡ ଭାଙ୍ଗି ଦିଆଯାଇଥିଲା ବିଦେଶୀ ଶାସନରେ, ସେହି ଶିକ୍ଷାର ସୁବ୍ୟବସ୍ଥାର ସମୟ ଆସିଛି ସ୍ୱଦେଶୀ ଶାସନରେ । ମନେ ପଡୁଛି ସ୍ୱାମୀ ବିବେକାନନ୍ଦଙ୍କର ହୃଦୟସ୍ପର୍ଶୀ ଶବ୍ଦଟି, ଶବ୍ଦ ନୁହେଁ ଭାରତୀୟ ମାନସିକତାର ଅସୁସ୍ଥତାର ଦୂରୀକରଣ ନିମନ୍ତେ ଅଭିପ୍ରେତ ଔଷଧଟି-ତାହା ହେଉଛି 'ଶିକ୍ଷା' । ପରାଧୀନ ଭାରତ ବର୍ଷରେ ପଦବ୍ରଜରେ ବୁଲିବୁଲି ସ୍ୱାମୀଜୀ ଆସି ପହଞ୍ଚିଲେ ବେଲୁର ମଠରେ । ଉଦାସ ଅପରାହ୍ଣରେ ଏକାକୀ ଚିନ୍ତାମଗ୍ନ । ଗୁରୁଭାଇଙ୍କର ପ୍ରଶ୍ନରେ ପ୍ରକୃତିସ୍ଥ ହେଲେ । ପ୍ରଶ୍ନ ଥିଲା-'ଆପଣ ତ ଭାରତ ଭ୍ରମଣ କଲେ, ଭାରତର ସମସ୍ୟା ଗୁଡିକୁ ଅନୁଭବ କଲେ, ଏହାର ସମାଧାନ କ'ଣ ବୋଲି ଆପଣ ଭାବୁଛନ୍ତି ?' ସ୍ୱାମୀଜୀଙ୍କ ଉତ୍ତର ଥିଲା ଯେ ଶିକ୍ଷା ହେଉଛି ସମସ୍ତ ସମସ୍ୟାର ସମାଧାନର ଋବିକାଠି ।

ଶିକ୍ଷାର ସୁବ୍ୟବସ୍ଥା ମାଧ୍ୟମରେ ଭାରତୀୟ ମେରୁଦଣ୍ଡ ସଳଖିବାର ସମୟ ଆସିଛି । ଆଉ ବିଦେଶୀ ନାହାନ୍ତି ଶାସକ ଭାବରେ, ସେମାନଙ୍କର ଋପ ନାହିଁ, ତେବେ ଏତେ ଭୟ କାହିଁକି ଓ କାହାକୁ ? ଏକଥା ପଢ଼ିଲା ପରେ କେହି ନ ଭାବନ୍ତୁ ଯେ ଇଂରାଜୀ ଭାଷା ଆମେ ପଢ଼ିବୁ ନାହିଁ ବା ଶିଖିବୁ ନାହିଁ । ଆମେ ଇଂରାଜୀ ଭାଷା ଶିଖିବୁ, ପଢ଼ିବୁ, କିଛି ଅସୁବିଧା ନାହିଁ । ଇଂରାଜୀ ଭାଷା ପଢିଲେ ଆମର କିଛି କ୍ଷତି ହେବ ନାହିଁ । କେବଳ ଯେଉଁ ମାନସିକତା ଆମର ରହିଛି ଆମର ମାତୃଭାଷା ପ୍ରତି ତାହାକୁ ବଦଳାଇବାକୁ ପଡ଼ିବ । ମାତୃଭାଷା ପ୍ରତି ଶ୍ରଦ୍ଧା, ଆଦର ଓ ସମ୍ମାନ ରଖି ଇଂରାଜୀ ଭାଷାକୁ ପଢ଼ିବାରେ ତ କିଛି ଅସୁବିଧା ନାହିଁ । ଏକାଧିକ ଭାଷାଜ୍ଞାନ ତ ବିଜ୍ଞତାର ଚିହ୍ନ ।

ଆମ ଅତୀତର ବହୁ ସୁବର୍ଣ୍ଣ ସ୍ମାରକୀ ବିଦେଶୀମାନେ ନଷ୍ଟ କରିଦେଲେ । ହଜାର ହଜାର ପୋଥି ଯାହା ମଧ୍ୟରେ ଆମ ନାଡ଼ିର ଗତି ଥିଲା, ତାକୁ ଧ୍ୱଂସ କରିଦେଲେ । ଜାହାଜରେ ଲଦି କେତେ ନେଇଗଲେ । ଆମଠାରୁ ଆମକୁ ଦୂରେଇ ଦେଲେ । ତଥାପି କିଛି ପୋଥିପତ୍ର ରହିଗଲା ଓ ରହି ଯାଇଛି । ସେ ସବୁ ପୁରୁଣା ହୋଇ ନଷ୍ଟ ହେବାକୁ ବସିଲାଣି । ପୋଥି ଗୁଡିକର ସଂରକ୍ଷଣ ଓ ପୁନରୁଦ୍ଧାର ନିମନ୍ତେ ବ୍ୟବସ୍ଥା ସରକାରୀ ସ୍ତରରେ ହେଉଥିବା ଅଭିନନ୍ଦନୀୟ । ଆଉ ଟିକିଏ ଅଧିକ ଏ ଦିଗରେ ପଦକ୍ଷେପ ଗ୍ରହଣ ଆବଶ୍ୟକ ।

ପାଠ୍ୟକ୍ରମରେ ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା ସହିତ ସଂସ୍କୃତିର କଥା କିଛି କିଛି ରହୁ । ସଂସ୍କୃତିର କଥାମାନେ ଆମ ଭାରତୀୟ ସଂସ୍କୃତିର କଥା ଯାହାର ମୂଳକଥା ହେଉଛି ମାନବିକ ମୂଲ୍ୟବୋଧ । ଏଠାରେ 'ଧର୍ମ' କଥା କୁହାଯାଇ ନାହିଁ । ମାନବିକତାର କଥା କୁହାଯାଉଛି, ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପ୍ରତି ଶ୍ରଦ୍ଧାର କଥା କୁହାଯାଉଛି । ବଞ୍ଚିବାର କଳାର କଥା କୁହାଯାଉଛି । ଭାରତୀୟତାର ସ୍ୱାଭିମାନର କଥା କୁହାଯାଉଛି, ଦେଶାତ୍ମବୋଧର କଥା କୁହାଯାଉଛି ।

ମନରେ ଆଶା ଅଛି ଭାରତବର୍ଷ ଜାଗ୍ରତ ହେବ । ବିଶ୍ୱଦରବାରରେ ତାହାର ମର୍ଯ୍ୟାଦା ବୃଦ୍ଧି ପ୍ରାପ୍ତ ହେବ । ମହାଯୋଗୀ ଶ୍ରୀଅରବିନ୍ଦଙ୍କ କଥା ନିଶ୍ଚୟ ସତ୍ୟ ହେବ ଯେ ଭାରତ ହେବ ସମଗ୍ର ବିଶ୍ୱର ଗୁରୁ କାରଣ ଭାରତ ହେଉଛି ପୃଥିବୀର ଆତ୍ମା ।

□□

# ଦେଶର ସମସ୍ୟା ଓ ଆଜିର ଶିକ୍ଷାବ୍ୟବସ୍ଥା

ଦେଶ ଅଛି ଅର୍ଥ ସମସ୍ୟା ଅଛି । ଅତୀତରେ ସମସ୍ୟା ଥିଲା, ଆଜି ମଧ୍ୟ ଅଛି ଏତିକି କହିଦେଲେ ଯଥେଷ୍ଟ ନୁହେଁ, କେଉଁ କେଉଁ ସମସ୍ୟା ରହିଛି ତାହାର ତାଲିକା କରିବା ଦରକାର । ତାଲିକା ପରେ ସେଗୁଡ଼ିକର ବର୍ଗୀକରଣ କରାଯିବା କଥା । ତା'ପରେ ସମାଧାନର ସୂତ୍ର ବିଷୟରେ ଭାବନା, ଆଲୋଚନା, ପର୍ଯ୍ୟାଲୋଚନା ଏବଂ ପଦକ୍ଷେପ ଗ୍ରହଣର ବ୍ୟବସ୍ଥା । ଯେହେତୁ ଆଜିକାଲି ସମସ୍ତ କ୍ଷମତା ରାଜନେତାମାନଙ୍କ ହାତରେ ଠୁଳ, ସେମାନଙ୍କ ପକ୍ଷରେ ଏସବୁ ସର୍ବାଦୌ କରଣୀୟ । ସେମାନଙ୍କୁ ବୁଦ୍ଧିଜୀବିମାନେ ସହଯୋଗ କରିପାରନ୍ତି ଯଦି ରାଜନେତାମାନେ ଋହାନ୍ତି ।

କହିବାର ତାତ୍ପର୍ଯ୍ୟ ହେଉଛି ରାଜନେତାମାନଙ୍କର ଦାୟିତ୍ୱ ହେଉଛି ଦେଶର ବିକାଶର ଅନୁଚିନ୍ତା । କେଉଁ କେଉଁ ସମସ୍ୟା ଦେଶର ସାମଗ୍ରିକ ବିକାଶରେ ବାଧାସୃଷ୍ଟି କରୁଛି, ସେହି ବିଷୟରେ ଗଭୀର ଭାବରେ ଅନୁଧ୍ୟାନ କରିବା । ଦଳର ପ୍ରଋର, ଗାଦିରକ୍ଷାର ବିକଳଭାବ, ଆତ୍ମବିଜ୍ଞାପନ, ସ୍ୱାର୍ଥସିଦ୍ଧିର ଚିନ୍ତାରେ ନେତା ବ୍ୟସ୍ତ ରହିଲେ ଦେଶ ଆଗେଇ ପାରେ ନାହିଁ, ପଛେଇଯାଏ । ଦେଶର ସମସ୍ୟାର ସମାଧାନ ପୂର୍ବକ ବିକାଶ ପାଇଁ ଚିନ୍ତା କରିବା ହିଁ ନେତାପଣର ସାର୍ଥକତା । ମୁଦ୍ରାସ୍ଫୀତି, ବସ୍ତିରେ ଜନବିସ୍ଫୋରଣ, ଦେଶବାସୀଙ୍କ ମନରେ ଦେଶାତ୍ମବୋଧର ଅଭାବ, ବିଭିନ୍ନ ପ୍ରଦେଶରେ ନଦୀ ଜଳ ବଣ୍ଟନ, ସୀମାପାର ବିବାଦ, ଅଶିକ୍ଷାର ପ୍ରାବଲ୍ୟ ଉଗ୍ରବାଦ, ଆତଙ୍କବାଦ ସମେତ ବହୁ ସମସ୍ୟାରେ ସମାଜ ଓ ଦେଶ ଆକ୍ରାନ୍ତ । ସମସ୍ୟାର ସମାଧାନ ପାଇଁ ସୀମିତ ସମୟ ସୀମା ଭିତରେ ଯଥାଯଥ ପଦକ୍ଷେପ ଏକାନ୍ତ ଜରୁରୀ । ଦୃଢ଼ ମନୋବଳ ମାଧ୍ୟମରେ କ୍ଷମତାର ଉଚିତ ପ୍ରୟୋଗ ହିଁ ବିକାଶର

ଛବିକାଠି । କେବଳ ଭୋଟକୁ ଦୃଷ୍ଟିରେ ରଖି ଗଛରେ ପାଣି ସିଞ୍ଚିଦେଲେ ବିଶେଷ କିଛି ଲାଭ ନାହିଁ, ଗଛ ମୂଳରେ ପାଣି ଦେଲେ ଗଛ ବଢ଼େ ଓ ଫୁଲ ଫଳରେ ଭରିଯାଏ ।

ଯେତିକି ସୁବିଧା ଦେଶ ତରଫରୁ ସେମାନଙ୍କୁ ମିଳୁଛି ତଦନୁସାରେ ଦେଶ ପ୍ରତି କର୍ତ୍ତବ୍ୟ କରିବା ବିବେକର କାର୍ଯ୍ୟ । ଦେଶର କଲ୍ୟାଣ ପାଇଁ ଯେତେ ସୁଯୋଗ ସେମାନଙ୍କୁ ମିଳିଛି ତାହାର ସଦ୍‌ବ୍ୟବହାର ହିଁ ଯଥାର୍ଥ ନେତାପଣ । ସମସ୍ତଙ୍କୁ ସେ ସୁଯୋଗ ମିଳି ନାହିଁ ଯାହା ନେତାଙ୍କୁ ପ୍ରାପ୍ତ ହୋଇଛି । ସେମାନେ ଦେଶ ବିକାଶର ଛବିକାଠି–ଏକଥା ବୁଝି ନିଜକୁ ଭାଗ୍ୟବାନ ମନେ କରିବା ଉଚିତ । ପୋଲିସ କର୍ମଚାରୀମାନଙ୍କର, କାର୍ଯ୍ୟଦକ୍ଷତା, ଲୋକପ୍ରିୟତା ପାଇଁ ଅନେକ ସୁବିଧା ସୁଯୋଗ ରହିଛି । ସେମାନଙ୍କର ସଚ୍ଚୋଟପଣିଆ ହିଁ ସେମାନଙ୍କର ଲୋକପ୍ରିୟତା ଓ କାର୍ଯ୍ୟଦକ୍ଷତାର ଏକ ବଡ଼ ମାନଦଣ୍ଡ । ମାତ୍ର ତାହା ରଖିବା ସମସ୍ତଙ୍କ ପାଖରେ ସମ୍ଭବ ହୁଏ ନାହିଁ । ରାଜନେତାମାନଙ୍କର ପ୍ରଭାବ ସେମାନଙ୍କର କାର୍ଯ୍ୟଦକ୍ଷତାକୁ କେତେକାଂଶରେ ସଙ୍କୁଚିତ କରିଦିଏ ।

ଏସବୁ କଥା ଔଷଧ ସ୍ୱରୂପ ରହିଛି ମାତ୍ର ପ୍ରତିଷେଧକ କଥା କେହି ଭାବୁ ନାହିଁ । ଦେଶରେ ଜନସଂଖ୍ୟା ବଢ଼ି ଚାଲିଛି । ଏଇ କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାକୁ ଶୃଙ୍ଖଳିତ, ମାର୍ଜିତ କରିବାର ପ୍ରୟାସ ନାହିଁ । ନୈତିକତାର ମଞ୍ଜି କିଶୋର ଓ ଯୁବକ ମନରେ ବୁଣିବାର ବ୍ୟବସ୍ଥା ନାହିଁ । ସ୍ୱାଧୀନତା ମିଳିଛି ବୋଲି ଯିଏ ଯାହା ଇଚ୍ଛା ତାହା କରିବା ସ୍ୱାଧୀନତାର ଚିହ୍ନ ବୋଲି ଭାବନା ମନ ଭିତରେ ବସା ବାନ୍ଧୁଛି । ଯୁବକଟିଏ ରାସ୍ତାକଡ଼ ଦୋକାନରୁ ଚା' ପିଇ ପ୍ଲାଷ୍ଟିକ କପ୍‌ଟିକୁ ରାସ୍ତାକୁ ଫିଙ୍ଗି ଦେବା ସ୍ୱାଧୀନତାର ଅନ୍ୟନାମ କି ? କହିବ ବା କିଏ ? ଯଦି କିଏ କହିବ ତେବେ ଉତ୍ତର ମିଳିବ–'ମୁଁ କାହା ଦୁଆର ମୁହଁରେ ପକାଇନାହିଁ, ମ୍ୟୁନିସିପାଲିଟି ରାସ୍ତାରେ ପକାଇଛି, କହିଲେ ମ୍ୟୁନିସିପାଲିଟି କହିବ ଇତ୍ୟାଦି ଇତ୍ୟାଦି । ଶିକ୍ଷିତ ବୋଲାଉଥିବା ଯୁବକତ ଏହିପରି ଆଉ ଠେଲାଟ୍ରଲି ଭିଡ଼ା ଲୋକଙ୍କ କଥା କ'ଣ କହିବା ?

ସତ ଗାଳି ହେଉ ଅଥବା ମିଛ ଗାଳି ହେଉ ଏପରିକି ସାଧାରଣ କଥା ଭିତରେ ଦୋଅକ୍ଷରୀ ଶବ୍ଦ ମାନ ପୁଞ୍ଜାପୁଞ୍ଜା, ସତେ ଅବା ଖାଦ୍ୟ ପରେ ପାଣିପରି ନିହାତି ଦରକାର । ବଡ଼ପାଟିରେ ଅଶ୍ଳୀଳ କଥାବାର୍ତ୍ତା, ପାଖଆଖରେ ବୟସ୍କ ଲୋକ ଆତଯାତ, ଏହା କ'ଣ ସ୍ୱାଧୀନତାର ଅନ୍ୟରୂପ କି ? କିଏ କହିବ, ଯିଏ କହିବ ଗାଳି ଖାଇବ, ଟିକିଏ ଅଧିକ ହେଲେ ଗୁଳି ଖାଇବ ।

ଯିଏ କହନ୍ତା, ଯାହାର କହିବାର ଅଧିକାର ଅଛି ସିଏ ତ ତୁନୀ, ମୌନବ୍ରତ କରିଛି । ସେ ମୌନବ୍ରତ ସ୍ୱଇଚ୍ଛାରେ କରିନାହିଁ, ତାକୁ ମୌନବ୍ରତ କରାଇ ଦିଆଯାଇଛି । ସେ ଆଉ କେହି ନୁହେଁ, ସେ ହେଉଛି ଶିକ୍ଷା । ଶିକ୍ଷା ବ୍ୟବହାର ଶିଖାନ୍ତା, ରୁଚି ଶିଖାନ୍ତା,

ସ୍ଥାନକାଳ ପାତ୍ରର ବିଚାର ଶିଖାନ୍ତା, ଦେଶପ୍ରେମ ଶିଖାନ୍ତା, ଉଦାରତା ଶିଖାନ୍ତା, ବିଶ୍ୱ ନାଗରିକତ୍ୱର ଦୀକ୍ଷା ଦିଅନ୍ତା । ଏଇସବୁ ହେଉଛି ନୈତିକତାର କଥା, ଧର୍ମ ସହିତ ଏସବୁର ସଂପର୍କ ନାହିଁ, ପ୍ରତ୍ୟେକ ମଣିଷ ସହିତ ଏହାର ସଂପର୍କ ରହିଛି, ଏହା ମାନବିକତାର କଥା ।

ପ୍ରକୃତରେ ଆଜିକାଲିର ଶିକ୍ଷା ଭିତରେ ଏସବୁ କଥା ନାହିଁ । ଶିକ୍ଷା କହିଲେ ତଥ୍ୟ ଓ ସମ୍ବାଦ ସଂଗ୍ରହକୁ ବୁଝାଉଛି । ଏହା ଶିକ୍ଷାର ବାହାର ଦିଗ, ଆଉ ଏକ ଦିଗ ରହିଛି ଶିକ୍ଷାର । ତାହା ହେଉଛି ଭିତର ଦିଗ ଯାହାର ଅନ୍ତର୍ଭୁକ୍ତ ହେଉଛି ନୈତିକ ଶିକ୍ଷା ଅଥବା ମାନବିକତାର ଶିକ୍ଷା । ବାହାର ଦିଗ ରହୁ ଏହା ସହିତ ଭିତର ଦିଗରହୁ, ତେବେ ଶିକ୍ଷା ଗଠନମୂଳକ ହେବ ଏବଂ ଆଶାନୁରୂପ ଭାବରେ କ୍ରିୟାଶୀଳ ହୋଇପାରିବ । ଖାଲି ଦୁଇ ଚାରି ଛଅ, ତିନି ତିନି ଛଅ, ଚାରି ଦୁଇ ଛଅ ହେଲେ ତାହା ଶିକ୍ଷା ସଂସ୍କାର ନୁହେଁ, ଶିକ୍ଷା ସଂସ୍କାରର ଅର୍ଥ ହେଉଛି ବ୍ୟକ୍ତି ଚରିତ୍ର ଗଠନର ଶିକ୍ଷା, ଦେଶ ଗଠନର ଶିକ୍ଷା, ବିଶ୍ୱ ପରିବାରର ସହ ଶିକ୍ଷାର ସଂପୃକ୍ତି । କିଏ କାହାକୁ ବୁଝାଇବ, କିଏ ବା ବୁଝିବ ?

ଶିକ୍ଷାବ୍ୟବସ୍ଥା ଏକ ପ୍ରକାର ବିପର୍ଯ୍ୟସ୍ତ । ଶିକ୍ଷାନୁଷ୍ଠାନରେ ଭୋଟ ରାଜନୀତି କ'ଣ ନିହାତି ଦରକାର ? ଶିକ୍ଷକମାନଙ୍କ ଅବସ୍ଥା ମଧ୍ୟ ବିଭିନ୍ନ ଦୃଷ୍ଟିରୁ ଅସମ୍ଭାଳ । ଦୀର୍ଘ ଦିନର ଶିକ୍ଷକତା ପରେ ଛତା ଥିଲେ ଜୋତା ନାହିଁ କି ଜୋତା ଥିଲେ ଛତା ନାହିଁ । ଶିକ୍ଷକମାନଙ୍କ ଭିତରେ କେତେକ କ୍ଷେତ୍ରରେ ନିଯୁକ୍ତି ବଡ଼ ବିଚିତ୍ର ଧରଣର । କବିମାନେ ଜନ୍ମ ହେଲା ପରି ଶିକ୍ଷକମାନେ ଜନ୍ମ ହୋଇଥାନ୍ତି । ଅର୍ଥାତ ଶିକ୍ଷକତା ଏକ ପ୍ରବୃତ୍ତି । ବୃତ୍ତି ସହିତ ପ୍ରବୃତ୍ତି ମିଶିଲେ ଶିକ୍ଷକତା ସାର୍ଥକ ହୁଏ । ଆଜିକାଲି ପ୍ରବୃତ୍ତି ନଥାଇ ବୃତ୍ତିର ଶିକ୍ଷକଙ୍କର ସଂଖ୍ୟା ଅଧିକ । ବିଶେଷତଃ ଗାଁ ଗହଳରେ ଡିଗ୍ରୀଗତ ଯୋଗ୍ୟତା ଥିଲେ ପାଖ ଆଖ ସ୍କୁଲ କଲେଜରେ 'ଯା ରହିଯା', ଭବିଷ୍ୟତ ଆଶାରେ ରହି ଯା । ଖାଲି ବୃତ୍ତି ପାଇଁ ଯା ରହିଯା, ପ୍ରବୃତ୍ତି ଥାଉ କି ନଥାଉ ।

ବ୍ୟବସ୍ଥା ଏହିପରି, ଅବସ୍ଥା ମଧ ଏହିପରି । ବ୍ୟବସ୍ଥାରୁ ଅବସ୍ଥା ଅଥବା ଅବସ୍ଥାରୁ ବ୍ୟବସ୍ଥା, ବୁଝି ହେଉନାହିଁ । ସତରେ ଶ୍ରୋତା ବକ୍ତା କେହି ନାହିଁ, ରୋଦନ କରୁ କାହା ପାଇଁ । ବ୍ୟବସ୍ଥା ବଦଳିବ, ତେଣୁ ଅବସ୍ଥା ବଦଳିବ, ଏହି ଆଶା ଓ ବିଶ୍ୱାସ ରହିଛି ।

□□

# ଆଧୁନିକତା ବନାମ ସାମାଜିକତା

ବିଜ୍ଞାନ ଚଳିବାକୁ ବହୁ ସୁବିଧା ଯୋଗାଇ ଦେଲା, ହେଲେ ମଣିଷ ମନକୁ ବଡ଼ କରି ପାରିଲାନି । ସାହିତ୍ୟ କିଛି କିଛି ଭାବପ୍ରବଣତା ହୁଏତ ଆଣି ଦେଲା । ମାତ୍ର ମଣିଷର ମନକୁ ପ୍ରଶସ୍ତ କରିପାରିଲାନି । ଦର୍ଶନ ସାମୟିକ ଭାବରେ ଜୀବନର ବାସ୍ତବତା ସମ୍ବନ୍ଧରେ ହୁଏତ ସୂଚନା ଦେଲା, ମାତ୍ର ଜୀବନକୁ ପୂର୍ଣ୍ଣାଙ୍ଗ କରିପାରିଲା ନାହିଁ ।

ମଣିଷର ବଞ୍ଚିବାର ମାନ ବଢ଼ିଲା, ମାତ୍ର ମନ ବଢ଼ିଲା ନାହିଁ, ଏହା ଅନୁଭବର ବିଷୟ, ଅନୁମାନର ବିଷୟ ନୁହେଁ । ଅହଂକାର କମିଲା ନାହିଁ, ବରଂ ବଢିଲା । 'ଅଭାବରେ ସ୍ୱଭାବ ନଷ୍ଟ'କଥାଟି ପୁରୁଣା ହୋଇ ଅଚଳ ହୋଇଗଲା, ବରଂ ନୂଆ କଥାଟି ହେଲା 'ଭାବରେ ସ୍ୱଭାବ ନଷ୍ଟ ।' ଯିଏ ଯେତେ ସମ୍ପଦର ଅଧିକାରୀ ହେଲା, ସୁଖ ସୁବିଧାରେ ଚଳିଲା ତା'ର ଲୋଭ ସେତେ ବଢ଼ିଲା, ତା'ର ଈର୍ଷା ସେତେ ବଢିଲା, ତାର ଗର୍ବ ସେତେ ବଢ଼ିଲା । ସେ ନିଜେ ସନ୍ତୁଷ୍ଟ ହେଲା ନାହିଁ ଅଥବା ଅନ୍ୟ କାହାକୁ ସନ୍ତୋଷରେ ରଖାଇ ଦେଲା ନାହିଁ । ଭିତରକୁ ଗମିଲା ନାହିଁ, ବାହାରେ ବାହାରେ ଭାସି ବୁଲିଲା । ଭାବନା ଶକ୍ତି ହରାଇ ବସିଲା, କହୁକହୁ କହିଲା, ଧାଉଁ ଧାଉଁ ଧାଇଁଲା । ଆଗପଛ ବିଚାରିଲା ନାହିଁ ଭଲମନ୍ଦ ତଉଲିଲା ନାହିଁ । ନିଜ କଥା ଯେ ଶହେଭାଗ ଠିକ୍ ବୋଲି ବିଚାରିଲା ଓ ଜାହିର କଲା ।

ସେଦିନ ଯାହା ଅଭିରାମବାବୁ କହୁଥିଲେ ତାହା ଅଯଥାର୍ଥ ନୁହେଁ । ସତେ ସେ ରାମ ନାହାନ୍ତି କିବା ସେ ଅଯୋଧ୍ୟା ନାହିଁ । ସବୁ କିମିତି ବଦଳିଯାଉଛି । ବିବ୍ରତଭାବ, ବିରକ୍ତି ଭାବ, କ୍ରୋଧଭାବ, ବିଷର୍ଣ୍ଣଭାବ ବାସଗୃହ କରି ଦେଲାଣି ଏ ପୃଥିବୀକୁ । ଏଇ ପବନରେ ଏତେସବୁ ନକାରାତ୍ମକତା ଏମିତି ଭାସି ବୁଲୁଛି ଯେ ଏହାର ସଂସ୍ପର୍ଶରେ ଆସିଲେ ସରଳତା ପରିଣତ

ହୋଇଯାଉଛି ଜଟିଳତାରେ । ବିଶ୍ୱାସ ପରିଣତ ହୋଇଯାଉଛି ବିଶ୍ୱାସଘାତକତାରେ । ନିର୍ଭରତା ପରିଣତ ହୋଇଯାଉଛି ଚଞ୍ଚକତାରେ । ବାତାବରଣରେ ଈର୍ଷା, ହିଂସା, ଆତଙ୍କବାଦ, କ୍ରୋଧ, ଠକାମି, ଛଳନାର ଭାବତରଙ୍ଗ ପ୍ରବଳ ଭାବରେ ଉଡ଼ିବୁଲୁଛି ।

ସ୍ୱାର୍ଥରେ ବୁଡି ରହିଛନ୍ତି ପ୍ରାୟ ମଣିଷ । ସ୍ୱାର୍ଥରେ ଟିକିଏ ଆଞ୍ଚ ଆସିଲେ ହଠାତ୍ ରୁଦ୍ରମୂର୍ତ୍ତି ଧାରଣ କରୁଛନ୍ତି । ଦୋ ଅକ୍ଷରୀ ଅଶ୍ଳୀଳ କଥା ପାଟିରେ ବସାବାନ୍ଧିଛି, ମଥାରେ ଜମା କରାଯାଇ ରଖାଯାଇଛି । ପରିବାରର ଆଭିଜାତ୍ୟ, ସଂସ୍କାରର ପ୍ରଭାବ ବିଶେଷ କିଛି କାର୍ଯ୍ୟକାରୀ ହେଉ ନାହିଁ । ଦିବ୍ୟଗୁଣ ସବୁ କରପତ୍ର ଯୋଡ଼ି ସତେ ଯେମିତି ପଳାୟନ କରିଛନ୍ତି ଦୂର ଦିଗନ୍ତକୁ । ନିଜ ସୁଖ ନିଜସୁବିଧା ପାଇଁ ଅନ୍ୟର ଅସୁବିଧା କରିବାକୁ ପଛଉନାହାନ୍ତି ମଣିଷମାନେ । ନିର୍ମଳ ହସିଟିଏ ପ୍ରାୟ କାହା ମୁଖରେ ନାହିଁ, ମଧୁର କଥାଟିଏ ପ୍ରାୟ କାହା ତୁଣ୍ଡରେ ନାହିଁ, ସ୍ନେହଲଳିତ ଭାବଟିଏ ପ୍ରାୟ କାହା ମନରେ ନାହିଁ । ସବୁକିଛି ଅଭିସନ୍ଧିମୂଳକ, ଲାଭକ୍ଷତିର ଅଙ୍କକଷା ମୂଳକ । ଖାଲି ଲୋଡ଼ା ପଇସା, ତାହା ପୁଣି ପରିଶ୍ରମ ଯୋଗୁଁ ନୁହେଁ, ମାଗଣାରେ ଅଥବା ଠକାମି ଦ୍ୱାରା ମିଳିଗଲେ ଖୁସି କହିଲେ ନସରେ । ବହୁଲୋକ ଠକିଦେବା ପାଇଁ ଜାଲ ପକାଇ ବସିଛନ୍ତି । ଠକ୍ ହାବୁଡ଼ରେ ପଡ଼ି ହଇରାଣ ହେବାର ନଜିର ବହୁତ ରହିଛି । ବେଳେବେଳେ ଦୁଇଠକ୍ ମୁହାଁମୁହିଁ ହୋଇଯାଆନ୍ତି ଠକାମିର ବାଟରେ । ସେତେବେଳେ କଥା ସରେ, ଠିଆପାଲା ଚାଲେ, ଯେସାକୁ ତେସା ନୀତିରେ ଭୂମି ଦୋହଲେ ।

ମଣିଷମାନଙ୍କ ସାଧାରଣ ବ୍ୟବହାର ଦେଖିଲେ ହସ ମାଡ଼େ । କାମଥିଲେ କେତେ ବାଗରେ କଥା, କଥା ନୁହେଁ କଥାର ଜାଲ, ଫୋନ୍ ଉପରେ ଫୋନ ଆଉ କାମ ସରିଗଲେ ଚିହ୍ନି ନ ଚିହ୍ନିଲା ପରି କାରବାର । ଟଙ୍କା ପଇସା ଧାର ଉଧାର ନେଇଥିଲେ ସବୁକ୍ଷେତ୍ରରେ ନୁହେଁ ପ୍ରାୟ କ୍ଷେତ୍ରରେ ଅପ୍ରିୟ ହେବା ଥୟ, ମନସ୍ତାପ ନିଶ୍ଚିତ, କାରଣ କୁହାଯାଇଛି 'ଟଙ୍କା, ଯାଏ ସିଧା, ଆସେ ବଙ୍କା ।'

ଅନ୍ୟର ସମସ୍ୟାରେ ଆଗୁଆ ମୁଣ୍ଡ ପୂରାଇବା ଅମାର୍ଜିତ ଚେତନାର ଚିହ୍ନ । ଆଗୁଆ ଉପରେ ପଡ଼ି ଉପଦେଶ ମେଞ୍ଚାଏ ଦେବା ଅତ୍ୟନ୍ତ ହାସ୍ୟାସ୍ପଦ କଥା, ଜଣେ ଉପଦେଶ ବା ଦିଗ୍‌ଦର୍ଶନ ନ ମାଗିଲେ ଆଗୁଆ ଉପଦେଶ ଦେବା ଭୁଲକଥା । ଅପାତ୍ରରେ ଦାନ ପରି କଥାଟି ହୁଏ, ଯହିଁରେ ଲାଭ ଅପେକ୍ଷା କ୍ଷତି ଅଧିକ ଥାଏ । ଅପାତ୍ରରେ ଦାନ ଅର୍ଥାତ ଅଯଥା ଉପଦେଶ ପ୍ରଦାନ ସର୍ବାଦୌ ଅନାବଶ୍ୟକ ।

ଭାବପ୍ରବଣତା ଏତେ କମି ଗଲାଣି ଯେ ତାହା ପ୍ରାୟ ନାହିଁ କହିଲେ ଚଳେ । ଭାବକଥା ପଚାରେ କିଏ । ଭାବର ଅଭାବ ଚତୁର୍ଦ୍ଦିଗରେ ଘରେ ଓ ବାହାରେ । ବେଗ ଏତେ ବଢ଼ିଯାଇଛି ଯେ ତାହା ଆବେଗକୁ ଗିଳିପକାଉଛି । ଜଣେ ବନ୍ଧୁ କହିଲେ ବେଗ ବଢ଼ିଲେ ଆବେଗ କମିବା ସ୍ୱାଭାବିକ । ମାତ୍ର ଏକଥାଟି ଠିକ୍ ନୁହେଁ । ବେଗର ବିପରୀତ ପନ୍ଥା ତ ନୁହେଁ ଆବେଗ ।

ଉଭୟ ଏକ ଆଧାରରେ ରହିବାରେ କିଛି ଅସୁବିଧା ନାହିଁ । ବେଗକୁ ଯଦି ଅନୁପ୍ରସ୍ଥ ଗତି ବୋଲି କୁହାଯିବ ତେବେ ଆବେଗକୁ ଅନୁଲମ୍ବଗତି କୁହାଯିବ । ଅନୁପସ୍ଥ ଗତି ଓ ଅନୁଲମ୍ବଗତି ଏକ ସମୟରେ ରହିପାରେ । ତହିଁରେ କିଛି ଅସୁବିଧା ନାହିଁ । ଯେପରି ବୁଦ୍ଧି ଓ ହୃଦୟର କଥା ପଡ଼ିଲେ କିଏ କଏ କହନ୍ତି ବୁଦ୍ଧି ବଢ଼ିଲେ ହୃଦୟବତ୍ତା କମିଯିବା ସ୍ୱାଭାବିକ । ମାତ୍ର କଥାଟି ସେପରି ଆଦୌ ନୁହେଁ । ବୁଦ୍ଧି ଏବଂ ହୃଦୟବତ୍ତା ଏକାଠି ରହିବାରେ କୌଣସି ଅସୁବିଧା ନାହିଁ ବରଂ ଏକତ୍ର ସହାବସ୍ଥାନରେ ପୂର୍ଣ୍ଣତାର ସ୍ଥିତି । ସହରୀ ଜୀବନ ଚିହ୍ନା, ଅଚିହ୍ନା ଓ ଦୋଦଚିହ୍ନାର ଜୀବନ, ଯାନ୍ତ୍ରିକ ଜୀବନ ମାତ୍ର ଗାଁର ଜୀବନ ଚିହ୍ନା ଜୀବନ, ଈର୍ଷାର ଜୀବନ । ତାହା ଆଜିକାଲି ସରଳତାର ଜୀବନ ନୁହେଁ ଜଟିଳତାର ଜୀବନ । ଉଦାରତାର ନୁହେଁ ସଂକୀର୍ଣ୍ଣତାର ଜୀବନ । ଗାଁ ଗହଳରେ ଧନ ବଢ଼ିଛି, ଚଳଣିର ସୁବିଧା ବଢିଛି, ଗମନାଗମନର ସୁବିଧା ଯଥେଷ୍ଟ ବଢ଼ିଛି, ମାତ୍ର ତଦନୁସାରେ ମନ ବଢ଼ି ନାହିଁ । ମଣିଷର ମନ ଯେପରି ସୁକୁଟା ଧେଡ଼ିଆ ଥିଲା, ସେହିପରି ରହିଯାଇଛି, ଅଧିକ ତଳକୁ ତଳ ଯାଉଛି କହିଲେ ବିଶେଷ ଭୁଲ ହେବ ନାହିଁ । ଆହା ପଦ ଆଉ ଗାଁ ଗହଳରେ ନାହିଁ, ଅନ୍ୟର କ୍ଷତିରେ ଖୁସି ହେବାର ବିକୃତମାନସିକତା ବଢ଼ିଯାଉଛି । ସାନବଡ଼ର ବିଚାର କେତେଦିନରୁ ଚାଲିଗଲାଣି । ବଡ଼ମାନଙ୍କୁ ସମ୍ମାନ ଦେବା ଆଜିକାଲି ଦୁର୍ବଳତାର ଚିହ୍ନ ହୋଇଗଲାଣି । ଧାରଣା ସ୍ପଷ୍ଟ ହୋଇଗଲାଣି ଯେ ଆମେ ଅର୍ଥାତ ସାନମାନେ ବଡ଼ମାନଙ୍କଠାରୁ ଯଥେଷ୍ଟ ଅଧିକ ଜାଣିଛୁ । ସାନମାନଙ୍କର ବୁଦ୍ଧିମତ୍ତା ଏବଂ ପ୍ରଯୁକ୍ତି ବିଦ୍ୟାର ଜ୍ଞାନ ଅଧିକ, ଏକଥା ସ୍ୱୀକାର୍ଯ୍ୟ ମାତ୍ର ଜୀବନର ଅଭିଜ୍ଞତା ଅଧିକ ନୁହେଁ ଯାହା ବଡ଼ ମାନଙ୍କ ପାଖରେ ଅଛି । ଆଉ କିଛି ଅଧିକା କଥା ଥାଉ କି ନଥାଉ ବଡ଼ମାନେ ଅଭିଜ୍ଞତାର ଆଧିକ୍ୟ ହେତୁ ସମ୍ମାନର ଯୋଗ୍ୟ । ସମ୍ମାନ ନପାଇବାରୁ ବଡ଼ମାନେ ମଧ୍ୟ ସାନମାନଙ୍କୁ ଶ୍ରଦ୍ଧା କରିବାରେ ବଡ଼ କୁଣ୍ଠିତ ହେଲେଣି ।

ବଡ଼ମାନଙ୍କର ସାନମାନଙ୍କ ପ୍ରତି କେମିତି ଗୋଟାଏ ଖାପଛଡ଼ା ମାନସିକତା ଏବଂ ସାନମାନଙ୍କର ବଡ଼ମାନଙ୍କପ୍ରତି କେମିଟି ଗୋଟାଏ ବିରୋଧ ମନୋଭାବ ରହିଛି । ଏହା ଆଦୌ ଯଥାର୍ଥ ନୁହେଁ । ବଡ଼ ଓ ସାନ ଉଭୟ ପରସ୍ପରର ପରିପୂରକ । ସମାଜରେ ବଡ଼ମାନଙ୍କର ଗୁରୁତ୍ୱ ଅଛି ପୁଣି ସାନମାନଙ୍କର ମହତ୍ତ୍ୱ ରହିଛି । ସମାଜ ବିଜ୍ଞାନ କହେ ଯେ ଉଭୟଙ୍କର ଯଥାଯଥ ସ୍ଥିତିରେ ସମାଜର ଯଥାର୍ଥ ପ୍ରଗତି । ଏକଥା ବୁଝିବାର ସମୟ ଆସିଛି ।

ବାସ୍ତବରେ ସାମାଜିକ ଜୀବନର ସମୃଦ୍ଧି ପାଇଁ ଶିକ୍ଷା ଯେତିକି ଲୋଡ଼ା, ସଂସ୍କାର ସେତିକି ଲୋଡ଼ା । ସଂସ୍କାର ବିହୀନ ଶିକ୍ଷା, ଅଶିକ୍ଷାର ନିକଟବର୍ତ୍ତୀ, ଶୁଆର ରାମନାମ ରଟିବା ସହ ସମାନ । ଏହି ସଂସ୍କାର ଶିକ୍ଷା ସହିତ ମିଶି ରହିଲେ ଶିକ୍ଷା ପୂର୍ଣ୍ଣାଙ୍ଗ ହୁଅନ୍ତା । ଏକଥା କିଏ କାହାକୁ ବୁଝାଇବ, ବୁଝିବ ବା କିଏ ? ମନେ ପଡୁଛି ସଂସ୍କୃତ ଭାଷାର ସେଇ ସୂକ୍ତିଟି-'ନଗ୍ନ କ୍ଷପଣକ ଦେଶେ ରଜକଃ କିଂ କରିଷ୍ୟତି ।'

❑❑

# ଅପରାଧ ମାନସିକତା କମିବ କିପରି

ବିଜ୍ଞାନ ପାଠରେ ଅସମ୍ଭବ ବୋଲି ଶବ୍ଦ ଆଉ ରହିବ ନାହିଁ ବୋଲି କୁହାଯାଉଛି । ଏହା କେତେକାଂଶରେ ସତ୍ୟ ବୋଲି ପ୍ରମାଣିତ ହେଲାଣି । କ୍ଲୋନିଂ, ଟେଷ୍ଟଟିଉବ ବେବି, ଗ୍ରହଗ୍ରହାନ୍ତର ଅଭିଯାନ, ଘର ଭିତରେ ରହି ଦୂର ବିଦେଶର ଦର୍ଶନ ଓ ପର୍ଯ୍ୟବେକ୍ଷଣ ପ୍ରଭୃତି ଏକ ପ୍ରକାର ପୁରୁଣା ହୋଇଗଲାଣି । ଆହୁରି ନୂଆ ନୂଆ ଉଦ୍ଭାବନ ବିଜ୍ଞାନ ଯୋଗୁଁ ସମ୍ଭବ ହେଉଛି । ଏଇ ଯେପରି ୨୦୧୭ର ଅନନ୍ୟ ଉଦ୍ଭାବନ 'ଜିବୋ' । 'ଜିବୋ' କୁଆଡ଼େ ମଣିଷ ପରି ଶୁଣିପାରେ, ଦେଖିପାରେ ଏବଂ କିଛି କିଛି କଥା ବୁଝିପାରେ । ଲେକମାନଙ୍କ ସହ ଆବଶ୍ୟକତା ଅନୁସାରେ ସଂପର୍କ ଯୋଡ଼ିପାରେ । ଲୋକଙ୍କୁ ଦେଖି ଚିହ୍ନିପାରେ ଓ ସ୍ୱର ଶୁଣି ଜାଣିପାରେ । ଏହା ଜୀବଟିଏ ପରି ଲାଗେ ମାତ୍ର ଏହା ତାହା ନୁହେଁ ।

ମଙ୍ଗଳଗ୍ରହ ଅଭିଯାନର ସଫଳତା ଅର୍ଜନ କରିଥିବା ବିଶ୍ୱରେ ପ୍ରଥମ ଦେଶ ଭାରତବର୍ଷର ବୈଜ୍ଞାନିକମାନେ ଆଗାମୀ ଦିନରେ ଇନସାଇଟ୍ ନାମରେ କ୍ଷୁଦ୍ରଯାନଟିଏ ମଙ୍ଗଳ ଅଭିମୁଖେ ପଠାଇବାର ବ୍ୟବସ୍ଥା କରୁଛନ୍ତି । ଏହି ଯାନଟି ଗୋଟିଏ ସ୍ଥାନରେ ଅଟକି ରହିବ, ମାତ୍ର ଭିନ୍ନ ଭିନ୍ନ କାର୍ଯ୍ୟ କରିବ । ପୃଷ୍ଠଭୂମିକୁ ୧୬ ଫୁଟ ଖୋଳି ତହିଁରୁ ବହୁ ସୂଚନା ଓ ସମ୍ବାଦ ତାହା ସଂଗ୍ରହ କରିପାରିବ ।

ସମୁଦ୍ର ତଳେ ଏପରି ଅନେକ ଉଦ୍ଭିଦ ରହିଛନ୍ତି ଯାହା ମନୁଷ୍ୟର ଖାଦ୍ୟ ସମସ୍ୟାକୁ କେତେକାଂଶରେ ଦୂର କରିବା ସହିତ ମନୁଷ୍ୟର ଅସୁସ୍ଥତା ଦୂର କରିବା ଦିଗରେ ସହାୟତା କରିପାରିବେ । କେତେ ଉଦ୍ଭିଦରେ ପ୍ରୋଟିନ ଓ ପୋଷକ ତତ୍ତ୍ୱ ଭରି ରହିଥିବାର କଥା ବୈଜ୍ଞାନିକମାନେ ଜାଣି ସାରିବା ପରେ ଆଗାମୀ ଦିନରେ ସେ ଦିଗରେ ଅଧିକ ଗବେଷଣା

ଜାରି ରଖିବାକୁ ଯୋଜନା କରୁଛନ୍ତି । ବିଶେଷତଃ କାର୍ଲିଫର୍ଣ୍ଣିଆ ଏବଂ ୟୁରୋପର ଉପକୂଳବର୍ତ୍ତୀ ଅଞ୍ଚଳରେ ଏ ଦିଗରେ ଗବେଷଣାତ୍ମକ କାର୍ଯ୍ୟରେ ଅଧିକ ଗୁରୁତ୍ୱ ଆରୋପିତ ହୋଇଛି ।

ଦୃଷ୍ଟିହୀନମାନଙ୍କ ପାଇଁ ଏକ ପ୍ରକାର ଚଷମାର ବ୍ୟବସ୍ଥା କରିଛନ୍ତି ବିଜ୍ଞାନର ଗବେଷକମାନେ । ଏହା ୨୦୧୭ ମସିହାର ଏକ ଅତ୍ୟାବଶ୍ୟକ ବିସ୍ମୟକର ବୈଜ୍ଞାନିକ ଅବଦାନ । ଏହା ଦ୍ୱାରା ଅତିକ୍ଷୀଣ ଦୃଷ୍ଟି ସଂପନ୍ନ ବ୍ୟକ୍ତିମାନେ ଅତିସ୍ୱଷ୍ଟ ଭାବରେ ଦୃଶ୍ୟ ସବୁକୁ ଦେଖିପାରିବେ । ଏହି ଚଷମାରେ ଅତି ଉଚ୍ଚ କ୍ଷମତା ସଂପନ୍ନ କ୍ୟାମେରା ସବୁ ଖଞ୍ଜା ଯାଇଛି । ସେ କ୍ୟାମେରାରେ ପୁଣି ସେହି ଦୃଶ୍ୟକୁ ଉନ୍ନତ କରି ବ୍ୟବହାରକାରୀଙ୍କ ଚକ୍ଷୁ ସମ୍ମୁଖରେ ରଖିବାର ବ୍ୟବସ୍ଥା ରହିଛି । ଫଳତଃ ଦୃଷ୍ଟିହୀନ ବ୍ୟକ୍ତିମାନେ ଅତି ସହଜରେ ଓ ସୁବିଧାରେ ନିଜର ଦୈନନ୍ଦିନ କାର୍ଯ୍ୟ ନିର୍ବାହ କରିପାରିବେ । କୌଣସି ସ୍ଥାନକୁ ଯାଇ ସେଠାରେ ସ୍ୱଚ୍ଛନ୍ଦରେ ଭ୍ରମଣ ମଧ୍ୟ କରିପାରିବେ । ଏସବୁ ସମେତ ଆହୁରି ଅନେକ ଉପଯୋଗୀ ଉଦ୍‌ଭାବନ ନିମେନ୍ତ ବୈଜ୍ଞାନିକମାନଙ୍କୁ ଧନ୍ୟବାଦ ନୁହେଁ ବିନମ୍ର କୃତଜ୍ଞତା ଜଣାଇବା କଥା । ବିଜ୍ଞାନ ମାଧ୍ୟମରେ ସେମାନେ ଅସମ୍ଭବ ସମୁଦ୍ରକୁ ଲଂଘି କେତେ କଥା ସମ୍ଭବ କରିପାରିଛନ୍ତି, ତାହା ନିରୋଳାରେ ଭାବିଲେ ସେମାନଙ୍କୁ ପ୍ରଣାମ ଜଣାଇବାକୁ ସ୍ୱତଃ ମଥା ନଇଁଯିବ ।

ବିଜ୍ଞାନର ଅବଦାନ ସମଗ୍ର ମାନବଜାତି ପାଇଁ ଅଭିପ୍ରେତ । କୁହାଯାଏ ବୈଜ୍ଞାନିକର ଜାତି ନାହିଁ, ଧର୍ମ ନାହିଁ, ଭାଷା ନାହିଁ । ସେ ସବୁ ଜାତିର, ସବୁଧର୍ମର, ସବୁଭାଷାର । ସେ ସମଗ୍ର ପୃଥିବୀର, ସମଗ୍ର ପୃଥିବୀ ତା'ର । ସେ ଚେତନାରେ ବିଶ୍ୱନାଗରିକ । ବିଜ୍ଞାନ ଦେଉଥିବା ଏତେ ସୁନ୍ଦର ପୂଜାଫୁଲର ମର୍ଯ୍ୟାଦା କିନ୍ତୁ ରଖିପାରୁନି ମଣିଷ, ଏହା ହିଁ ତ ବିଡମ୍ବନାର ବିଷୟ । ସେଇ ଫୁଲକୁ ଟୁକୁରା ଟୁକୁରା କରି ହାତରେ ଛିଣ୍ଡାଇ ଦେଇ ପାଦରେ ସେ ଦଳି ଦେବାକୁ ପଛାଉ ନାହିଁ । ଏଇ ଯେମିତି ଆଣବିକ ବୋମାର ଅଦରକାରୀ ପରୀକ୍ଷା ଓ ଅପପ୍ରୟୋଗ । ଏଇ ଯେମିତି ଅଣୁଅସ୍ତ୍ରର ଧମକରେ ବିଶ୍ୱମାନସରେ ଅବାଞ୍ଛିତ ଆଲୋଡ଼ନ, ଆତ୍ମରକ୍ଷା ଆଳରେ ଆତ୍ମପ୍ରତିଷ୍ଠାର ଆୟୋଜନ । ୨୦୧୮ ମସିହାରେ ଉତ୍ତରକୋରିଆ ତ ଏ ଦିଗରେ ସାଜିଛି ନିନ୍ଦନୀୟ ଉଦାହରଣ । ବିଶ୍ୱବାତାବରଣ କେବଳ ସ୍ତବ୍ଧ ହେଉ ନାହିଁ, ବାୟୁମଣ୍ଡଳରେ ଭରିଯାଉଛି ଅଙ୍ଗାରକାମ୍ଳର ଘନ ଆସ୍ତରଣ । ସେ ଦେଶର ଆକାଶ କ'ଣ କେବଳ ସେ ଦେଶର, ଅନ୍ୟ ଦେଶକୁ କ'ଣ ତାହା ବ୍ୟାପି ନାହିଁ? ଆକାଶ ତ ଏକ ଅନାହତ ବିସ୍ତୃତି, ତାକୁ ଭାଙ୍ଗିବ କିଏ ? ରାକ୍ଷସ ପାଇଁ, ଦଶମୁଣ୍ଡ ନିହାତି ଦରକାର ନାହିଁ, ଏକ ମୁଣ୍ଡରେ ମଧ୍ୟ ସହସ୍ର ରାକ୍ଷସର ବିକୃତି ସମ୍ଭବ ହୋଇପାରେ । ସେ ରାକ୍ଷସ ଆଉ କେହି ନୁହେଁ ଅହଂର ରାକ୍ଷସ ।

ସାଇବର ଅପରାଧ ଚତୁର୍ଦିଗରେ ଦିନକୁଦିନ ବୃଦ୍ଧିପାଉଛି । ତାକୁ ରୋକିବାକୁ ପ୍ରଚେଷ୍ଟା ଜାରି ରହିଛି । ନୂଆ ନୂଆ କୌଶଳକୁ ଗ୍ରହଣ କରାଯାଉଛି । ହାର୍ଡଓ୍ୱେର ଇମେଜିଂ

ଡିଭାଇସ ଏବଂ ରାଇଟବ୍ଲକ ଏହାର ଏକ ଏକ ଉଦାହରଣ । ଏ ସବୁ ସତ୍ତ୍ୱେ ବଢ଼ିଚାଲିଛି ଅପରାଧର ସଂଖ୍ୟା ଓ ଅପରାଧୀମାନଙ୍କର ସଂଖ୍ୟା । ସାଇବର ଅପରାଧୀ ପୃଥିବୀର ଯେ କୌଣସି ସ୍ଥାନରେ ଥାଇ ମଧ୍ୟ ଅପରାଧ ଘଟାଇପାରନ୍ତି । ସେମାନଙ୍କର ସ୍ୱାର୍ଥ ସିଦ୍ଧିପାଇଁ ସେମାନେ ଏପରି କରିଥାନ୍ତି ମାତ୍ର ଅନ୍ୟମାନଙ୍କର ଯେ କେତେ କ୍ଷତି ହୁଏ, ତାହା ସେମାନେ ଭାବି ପାରନ୍ତି ନାହିଁ । ବୁଦ୍ଧିର ନକାରାତ୍ମକ ପ୍ରୟୋଗ ନକରି ସକାରାତ୍ମକ ପ୍ରୟୋଗ ଯଦି ସେମାନେ କରନ୍ତେ ତେବେ କେତେ ଯେ କେତେ ବିଶ୍ୱ କଲ୍ୟାଣକାରୀ କାର୍ଯ୍ୟ କରିପାରନ୍ତେ । ଖାଲି ସାଇବର କ୍ଷେତ୍ରରେ ନୁହେଁ ଅଥବା ଅଣୁ ଅସ୍ତ୍ର ପ୍ରୟୋଗ କ୍ଷେତ୍ରରେ ନୁହେଁ ବହୁକ୍ଷେତ୍ରରେ ମଣିଷ ବିଜ୍ଞାନର ବହୁମୂଲ୍ୟ ଅବଦାନର ଅପପ୍ରୟୋଗ କରି ଚାଲିଛି । ଲାଗୁଛି ସତେ ଯେମିତି ପଡ଼ିଯାଇଛି ଅନ୍ଧ ହାତରେ ରତ୍ନମୁଦି ଓ ବାନର ହାତରେ ଶାଳଗ୍ରାମ । ଦିନକୁ ଦିନ ଏହି ଅପପ୍ରୟୋଗ ଜନିତ ଅପରାଧର ସଂଖ୍ୟା ବଢି ଚାଲିଛି ଓ ଅପରାଧୀଙ୍କ ସଂଖ୍ୟା ମଧ୍ୟ ବଢ଼ି ଚାଲିଛି ।

କେବଳ ବିଜ୍ଞାନ କ୍ଷେତ୍ରରେ ନୁହେଁ ସାମାଜିକ କ୍ଷେତ୍ରରେ ମଧ୍ୟ ଅପରାଧ ମାନସିକତା ବଢ଼ି ଚାଲିଛି । ଏଇ ଯେମିତି ଲାଞ୍ଚ, ମିଛ ଓ ଦୁର୍ନୀତି କାରବାର, ହତ୍ୟା, ଲୁଣ୍ଠନର ବିଭୀଷିକା, ନାବାଳିକା ପ୍ରତି ଦୁଷ୍କର୍ମ । ଦୁର୍ନୀତି ନିବାରଣ ପାଇଁ ଯେତେ ବ୍ୟବସ୍ଥା ଗ୍ରହଣ କରାଗଲେ ମଧ୍ୟ ଦୁର୍ନୀତି କମୁ ନାହିଁ । ମାନବର ବିକାଶ ପଥରେ ଏହି ଦୁର୍ନୀତି ଅନ୍ତରାୟ ହୋଇ ଠିଆ ହୋଇଛି । ଟିକିଏ ସ୍ଥିର ଚିତ୍ତରେ ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି ଯେ ଏସବୁ ଅକଥା କ'ଣ ମଣିଷ ମନରେ ଲୁଚିଛପି ରହିଥିଲା । ଏଣିକି ଏଣିକି ଅଧିକରୁ ଅଧିକ ଫୁଟି ବାହାରୁଛି । ଧର୍ମ-ଅଧର୍ମ, ନ୍ୟାୟ-ଅନ୍ୟାୟର ଡର ତ ସେମାନଙ୍କର ପାଇଁ ନାହିଁ, ଆଇନର ଡର ମଧ୍ୟ ସେମାନଙ୍କପାଇଁ ନାହିଁ । ସେମାନେ ଭୟଶୂନ୍ୟ ତ ନିଶ୍ଚୟ, ହିତାହିତ ଜ୍ଞାନ ଶୂନ୍ୟମଧ୍ୟ ।

ଏକଥା ଆମ ଦେଶରେ ପୁଣି ଘଟୁଛି କିପରି ? ସଂଯମ ଓ ଅହିଂସା ଯେଉଁ ଦେଶର ସଂସ୍କୃତିର ସବୁଠାରୁ ମୂଲ୍ୟବାନ ଅଳଙ୍କାର, ଆହା ସେ ଦେଶରେ ଏତେ ସବୁ ଅକଥା ଘଟୁଛି କିପରି ? ପାଠଶାଠରେ କ'ଣ ଅଭାବ ରହିଯାଉଛି, ଅଳ୍ପ ବିଦ୍ୟା ଭୟଙ୍କରୀର ଏହା କ'ଣ ପରିଣାମ ? ଉତ୍ତର ମନରୁ ଆସିବ ଯେ ବହୁ ପାଠୁଆ ଲୋକ ତ ଏସବୁ ଅକଥା କରିବାକୁ ପଛାଉ ନାହାନ୍ତି । ଆଉ କ'ଣ ପ୍ରଚଳିତ ପାଠ ବ୍ୟବସ୍ଥାରେ କିଛି ଅପୂର୍ଣ୍ଣତା ରହିଯାଉଛି ? ଉତ୍ତର ଆସିବ, ହଁ-ଏହା ଏକ ବିଚାର୍ଯ୍ୟ ବିଷୟ । ଆଉ କ'ଣ ପାରିବାରିକ ଶିକ୍ଷାର ଅଭାବ ରହିଯାଉଛି ? ପରିବାରରେ ଯେଉଁମାନେ ଭଲ କଥା ଶିଖାନ୍ତେ ସେମାନେ କ'ଣ ମାର୍ଜିତ ରୁଚିସଂପନ୍ନ ତଥା ସଚେତନ ନୁହନ୍ତି କି ? ପରିବାରରୁ କ'ଣ ଯଥାର୍ଥ ସଂସ୍କାର ମିଳୁନାହିଁ କି ? ଉତ୍ତରରେ କୁହାଯିବ ଯେ ଏହା ବୋଧହୁଏ ସବୁଠାରୁ ଅଧିକ ଆଲୋଚନାର ବିଷୟ ।

□□

# ଆତଙ୍କବାଦ - ଏକ ବିଶ୍ୱ ସମସ୍ୟା

ଆତଙ୍କବାଦ ଆଜିକାଲି କୌଣସି ଏକ ଦେଶର ସମସ୍ୟା ନୁହେଁ, ଏହା ଏକ ବିଶ୍ୱ ସମସ୍ୟା । ଏ ସମସ୍ୟାର କାରଣ ହେଉଛି ଅହଂଭାବ । ଅହଂ ମୁଖ୍ୟତଃ ଦୁଇ ପ୍ରକାର - ଗୋଟିଏ ହେଉଛି ବ୍ୟକ୍ତିଗତ ଅହଂ ଏବଂ ଅନ୍ୟଟି ହେଉଛି ସମଷ୍ଟିଗତ ଅହଂ ବା ଗୋଷ୍ଠୀଗତ ଅହଂ । ବ୍ୟକ୍ତିଗତ ଅହଂରୁ ଆସେ ଦ୍ୱନ୍ଦ୍ୱ, ବିବାଦ, କଳହ, ହିଂସ୍ରତା, ଈର୍ଷା, ଅସୂୟା, ଲୋଭ, କ୍ରୋଧ ଇତ୍ୟାଦି ଇତ୍ୟାଦି ଅପଶକ୍ତି । ଗୋଷ୍ଠୀଗତ ଅହଂରୁ ସୃଷ୍ଟିହୁଏ ଅନ୍ୟ ଦେଶ ଉପରେ ଆକ୍ରମଣ, ଦମନଲୀଳା, ସଂଘର୍ଷ, ଧ୍ୱଂସ ଓ ସର୍ବୋପରି ସର୍ବନାଶ । ଅହଂର କାର୍ଯ୍ୟ ସର୍ବଦା ନକାରାତ୍ମକ, ତାହା ସକାରାତ୍ମକ କାର୍ଯ୍ୟ କରିପାରେ ନାହିଁ । ସ୍ନେହ, ଶ୍ରଦ୍ଧା, ଆଦର, ଯତ୍ନ, ସମବେଦନା, ସହାନୁଭୂତିର ଅର୍ଥ ସେ ଜାଣେ ନାହିଁ । ଅନ୍ୟର ଆଖିରୁ ଲୁହ ପୋଛିଦେବା ସେ ଜାଣେ ନାହିଁ, ଅନ୍ୟର ଆଖିରୁ ଲୁହ ଝରାଇବା ସେ ଜାଣେ । ଅନ୍ୟକୁ କଷ୍ଟ ଦେଇ ସେ ଖୁସି ହୁଏ, ରକ୍ତନଦୀ ବୁହାଇ ସେ ଖୁସି ହୁଏ । ଗୋଷ୍ଠୀଗତ ଅହଂର ପ୍ରଭାବ ବ୍ୟକ୍ତିଗତ ଅହଂଠାରୁ ବହୁ ଗୁଣରେ କରାଳମୁଖୀ ଓ ଭୟଙ୍କର । ଏହା ଦେଶ-ଦେଶ ଭିତରେ, ଧର୍ମ-ଧର୍ମ ଭିତରେ, ଚଳଣି-ଚଳଣି ଭିତରେ ଆଘାତ, ରକ୍ତପାତ ଓ ମୃତ୍ୟୁର ବିଭୀଷିକା ସୃଷ୍ଟି କରିଥାଏ । ସ୍କଥ ପରି ତାହା ଯେଉଁଆଡ଼େ ଗଡ଼ି ଗଡ଼ିଯାଏ, ସେଇ ଆଡ଼ ପୋଡ଼ିପୋଡ଼ିଯାଏ । ସ୍କଥ ଏକ ବିଦେଶୀ ମିଥ୍ ; ଯାହାର ଆକାର ଏକ ମାଂସପିଣ୍ଡୁଳା ପରି ଏବଂ ତାହା ଗଡ଼ି ଗଡ଼ି ଗଲେ ତା' ଆଗରେ ଥିବା ସବୁଜିମା ପୋଡ଼ି ପୋଡ଼ିଯାଏ । ଗୋଷ୍ଠୀଗତ ଅହଂରୁ ସୃଷ୍ଟି ହେଉଥିବା ଆତଙ୍କବାଦ ସାରାବିଶ୍ୱକୁ ଥରାଇ ଦେଲାଣି । କାହାରି ଆୟତ୍ତରେ ଏହା ରହୁ ନାହିଁ । ଯେତେ ଆଲୋଚନା, ଯେତେ ପ୍ରତିଷେଧକ ବ୍ୟବସ୍ଥା, ଯେତେ ଚୁକ୍ତିନାମା ସବୁ ପ୍ରାୟ ବିଫଳ ହୋଇଯାଉଛି ।

ଉଗ୍ରବାଦର ଉଗ୍ରମୂର୍ତ୍ତି କମିବା ପରିବର୍ତ୍ତେ ଅଧିକ ଉଗ୍ର ହୋଇ ଫୁଟି ବାହାରୁଛି । କେଉଁଠି ଅଗ୍ନିର ଲେଲିହାନ ଶିଖା ଜଳୁଛି ତ ଆଉ କେଉଁଠି ବନ୍ଧୁକ ଗୁଳିର ଶବ୍ଦରେ କାନ ଫାଟିପଡୁଛି । ଏତେ ଆସୁରିକତା, ଉଗ୍ରତା ଯେ ମଣିଷ ମନରେ ଥିଲା - ଏହା ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି । ଶ୍ରେଷ୍ଠ ଜୀବ ମଣିଷର ମଣିଷପଣିଆ କୁଆଡ଼େ ଗଲା, କିଏ ଚୋରାଇ ନେଲା ବୋଲି ପ୍ରଶ୍ନର ଉତ୍ତର ହେଉଛି ଅହଂ । ଅହଂ ମଣିଷକୁ ପଶୁଠାରୁ ଆହୁରି ହୀନ ଅସୁରରେ ପରିଣତ କରିଦିଏ ଯାହାର ନିଦର୍ଶନ ବିଶ୍ୱର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳୁଛି ।

ଦୀର୍ଘଦିନର ସଭ୍ୟତାକୁ ଘଡ଼ିକ ଭିତରେ ଧ୍ୱଂସ କରିଦେଇପାରେ ଏଇ ଉଗ୍ରବାଦ । ଏଇ ଯେମିତି ଅତୀତରେ ସିରିଆ ଦେଶର ସର୍ବପୁରାତନ ସଭ୍ୟତାର ଆଧାରସ୍ଥଳ 'ବେଲଶେମିନ'ର ସ୍ଥିତିକୁ ଆତଙ୍କବାଦୀ ସଂଗଠନଟିଏ ଧ୍ୱଂସବିଧ୍ୱସ୍ତ କରିଦେଲା । ଇଜିପ୍ଟ ଓ ଆଫଗାନିସ୍ଥାନରେ କେତେ ସଂସ୍କୃତିର ସ୍ମାରକୀ ଉଗ୍ରବାଦୀମାନଙ୍କ ଦ୍ୱାରା ଧୂଳିସାତ ହୋଇଗଲା । ସିରିଆରୁ ଭୟଭୀତ ହୋଇ ପଳାଇ ଆସୁଥିବା ଏକ ପରିବାରର ତିନି ବର୍ଷର ଶିଶୁ ଆୟସାନ କୁର୍ଦ୍ଦିର ମୃତଦେହ ଭୂମଧ୍ୟ ସାଗରର ବାଲିରେ ପଡ଼ିଥିବାର ଦୃଶ୍ୟ ସମଗ୍ର ବିଶ୍ୱବାସୀଙ୍କୁ ସ୍ତବ୍ଧ କରିଦେଲା । ସଂପ୍ରତି ଧ୍ୱଂସର ତାଣ୍ଡବଲୀଳା ଓ ଗଣହତ୍ୟାର ବିଭୀଷିକା ଦିଗେ ଦିଗେ ଭୟର ଅଗ୍ନିକଣା ବର୍ଷଣ କରୁଛି । ପୃଥିବୀର ବାୟୁମଣ୍ଡଳ ଧ୍ୱସ୍ତବିଧ୍ୱସ୍ତ ବାତାବରଣ ଭୀତତ୍ରସ୍ତ ଅବସ୍ଥାରେ ରହିଛି । ଧାର୍ମିକକଳହ, ସାଂପ୍ରଦାୟିକ କଳହ ସରୁନାହିଁ, ବରଂ ବଢ଼ି ଚାଲିଛି ।

ଏ ବିରାଟ ସମସ୍ୟାର ସମାଧାନ ଅହଂର ଦୂରୀକରଣରେ । ଅହଂର ଆସୁରିକ ପ୍ରଭାବ ଜାତି-ବର୍ଣ୍ଣ-ଧର୍ମ ନିର୍ବିଶେଷରେ ମଣିଷ ମନରୁ ନଗଲା ପର୍ଯ୍ୟନ୍ତ ଆତଙ୍କବାଦ ପୂର୍ଣ୍ଣଭାବରେ ଯିବ ନାହିଁ । ଆତଙ୍କବାଦ ନ ଗଲେ ବିଶ୍ୱଶାନ୍ତି ଆସିବ ନାହିଁ । ବିଶ୍ୱଶାନ୍ତି ନ ଆସିଲେ ଜଗତୀକରଣ ସ୍ୱପ୍ନ ଅଧା ସାକାର ହୋଇ ରହିଯିବ, ପୂର୍ଣ୍ଣ ହେବ ନାହିଁ । ଅହଂର ଦୂରୀକରଣ ପାଇଁ ପ୍ରଥମ କଥାଟି ହେଉଛି ବ୍ୟକ୍ତି ସଚେତନତା । ସେ ରାଷ୍ଟ୍ରମୁଖ୍ୟ ହୁଅନ୍ତୁ ଅଥବା ଧର୍ମଗୁରୁ ହୁଅନ୍ତୁ - ଅଥବା ସାଧାରଣ ନାଗରିକଟିଏ ହୁଅନ୍ତୁ ପ୍ରତ୍ୟେକଙ୍କ ପାଇଁ ପ୍ରଥମ ଆବଶ୍ୟକତା ହେଉଛି ସଚେତନତା । ପ୍ରତ୍ୟେକ ବ୍ୟକ୍ତି ସେ ଯେଉଁଠାରେ ଥାଆନ୍ତୁ ନା କାହିଁକି ଭାବିବା ଆବଶ୍ୟକ ଯେ ମୁଁ ପ୍ରଥମେ ମଣିଷ, ମୋର ପ୍ରଥମ ପରିଚୟ ମଣିଷ । ଦ୍ୱିତୀୟ କଥାଟି ହେଉଛି ଯେ ସ୍ୱୀକାର କରିବାକୁ ହେବ ଅନ୍ୟ ଧର୍ମରେ, ଜାତିରେ, ସଂସ୍କୃତିରେ ଥିବା ମୂଲ୍ୟବୋଧକୁ । ଏହାକୁ ପାରସ୍ପରିକ ଅନୁମୋଦନ ବୋଲି କୁହାଯାଇପାରେ । ସେ ବ୍ୟକ୍ତି ହେଉ, ଦେଶ ହେଉ ଅଥବା ଧର୍ମ ହେଉ ଜଣେ ଜଣକୁ ସ୍ୱୀକାର କରିବା ହିଁ ସମସ୍ୟାର ସମାଧାନର ଚାବିକାଠି । ପ୍ରତ୍ୟେକଙ୍କ ଭିତରେ ହିଁ ସମସ୍ୟାର ସମାଧାନର ଚାବିକାଠି ରହିଛି । ପ୍ରତ୍ୟେକଙ୍କ ଭିତରେ ଏଇ ଭାବ ରହିବ ଯେ ଏ ପୃଥିବୀ ଆମର, ଆମେ ଏ ପୃଥିବୀର । ମନରେ ରହିବ ଯେ ସର୍ବେ ଏଇ ଚରାଚର ପୃଥିବୀନିବାସୀ, ଆଉ କେଉଁ ପୃଥିବୀରୁ ନାହାନ୍ତି

ତ ଆସି । ଏ ଦିଗରେ ମିଳିତ ଜାତିସଂଘର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଦେଶ-ବିଦେଶ ଭିତରେ ଶୃଙ୍ଖଳା ଓ ଶାନ୍ତିରକ୍ଷା ଦିଗରେ ତାହାର କାର୍ଯ୍ୟର ପରିସର ପରିବ୍ୟାପ୍ତ । ବହୁ ଦେଶର ତୁଙ୍ଗ ନିରପେକ୍ଷ ବ୍ୟକ୍ତିତ୍ୱ ଓ ନୋବେଲ ଶାନ୍ତି ପୁରସ୍କାର ବିଜେତାମାନଙ୍କୁ ଏକତ୍ର ରଖି ଏକ ବିଶ୍ୱଶାନ୍ତି କମିଟି ଗଠନ କରି ଆଲୋଚନା, ପୁଣି ସକାରାତ୍ମକ ପଦକ୍ଷେପ ମାଧ୍ୟମରେ ବିଶ୍ୱଶାନ୍ତି ଆନୟନର କାର୍ଯ୍ୟ ଅଧିକ ତ୍ୱରାନ୍ୱିତ କରାଯାଇପାରନ୍ତା, ଏହା ମୁକ୍ତକଣ୍ଠରେ କୁହାଯାଇପାରେ । ବିଶ୍ୱପ୍ରେମୀ ବ୍ୟକ୍ତିତ୍ୱମାନଙ୍କର ସକ୍ରିୟ ସହଯୋଗ ଏତେବେଳେ ସମୟ ଆଶା କରୁଛି ।

ଆତଙ୍କବାଦ ରୂପୀ ବିରାଟ ସମସ୍ୟାର ସମାଧାନର ଏକ ବଡ଼ ଦିଗ ହେଉଛି ଆଧ୍ୟାତ୍ମିକତାର ବିକାଶ । ଆଧ୍ୟାତ୍ମିକତା ହେଉଛି ଆତ୍ମିକ ଚେତନାର କଥା । ଆତ୍ମା ସମସ୍ତ ଧର୍ମ ଭିତରେ, ଜାତି ଭିତରେ, ଦେଶ ଭିତରେ ସମାନ । ଅତଏବ ଆଧ୍ୟାତ୍ମିକତା ସବୁ ଧର୍ମଭେଦରେ, ଜାତି ଭେଦରେ ତଥା ଦେଶ ଭେଦରେ ସମାନ । ଭଗବାନ ଏକ – ତାଙ୍କ ନାମ କେବଳ ଭିନ୍ନ ଭିନ୍ନ । ଯେପରି ଗୋଟିଏ ପୋଖରୀର ପାଣି, ତୁଠ ଭେଦରେ ନାମ ଖାଲି ଭିନ୍ନ ଭିନ୍ନ । ଧର୍ମ ଏକଏକ ବାଟ ଆଗକୁ ଯିବାକୁ ଓ ଶେଷରେ ଏକ ଭଗବାନଙ୍କୁ ଭେଟିବାକୁ । 'ଯତୋ ମତ ତତୋ ପଥ' ନ୍ୟାୟରେ ମତ ଅନେକ ଓ ପଥ ଅନେକ । ପଥ କଳହ କାହିଁକି, କେତେ ଅବାନ୍ତର ସତେ ଏ ପଥ କଳହ, ଭାବିଲେ ଦୁଃଖ ଲାଗେ । ସବୁ ଧର୍ମ ରହୁ, ସବୁ ଚଳଣି ରହୁ, ସବୁ ଭାଷା ରହୁ ମାତ୍ର ଏ ସବୁ ନେଇ କଳହ ନ ରହୁ- ଏଇ ବିଶ୍ୱଜନୀନ ଚିନ୍ତାଧାରା ଉପରେ ବିଶ୍ୱାସ କରେ ଭାରତବର୍ଷ । ବିଶ୍ୱକୁ ଭାରତ ହିଁ ଦେଇପାରେ ଦିଗ୍‌ଦର୍ଶନ । ଶ୍ରୀଅରବିନ୍ଦଙ୍କ ମତରେ "ଭାରତ ହେଉଛି ପୃଥିବୀର ଆତ୍ମା' ଭାରତ କରିପାରେ ବିଶ୍ୱସମସ୍ୟାର ସମାଧାନ ।" ଦେବ ନିର୍ବାଚିତ ଏଇ ଶାନ୍ତିପ୍ରିୟ ଦୀପ୍ତିଯୁକ୍ତ ଦେଶର ପଟାନ୍ତର ନାହିଁ । 'ସର୍ବେ ଭବନ୍ତୁ ସୁଖିନଃ' ଯେଉଁ ଦେଶର ମୂଳ ଓ ମୁଖ୍ୟ ସ୍ୱର, ସେହି ଦେଶର ମହତ୍ତ୍ୱକୁ ମାପିବାକୁ ମାନଦଣ୍ଡ ନାହିଁ । ଭାରତ ଚାହେଁ ବିଶ୍ୱର ବିକାଶ, ମର୍ତ୍ତ୍ୟରେ ଅମର୍ତ୍ତ୍ୟର ଲାବଣ୍ୟ, ବିଶ୍ୱ ଜୀବନରେ ଦେବତ୍ୱର ପୂର୍ଣ୍ଣ ପରିପ୍ରକାଶ । ଦିବ୍ୟତ୍ୱର ଭୂମି ଭାରତବର୍ଷ ଏକ ଜଡ଼ ପିଣ୍ଡ ନୁହେଁ , ଏକ ଜାଗ୍ରତ ଚେତନା । ଗୋଳାବାରୁଦର ଗନ୍ଧ ନୁହେଁ, ସାରା ପୃଥିବୀରେ ପାରିଜାତ ଫୁଲର ମହକ ଭରି ଦେଇପାରେ ଏଇ ଭାରତବର୍ଷ । ବିଶ୍ୱ ଦରବାରରେ ଭାରତର ଗ୍ରହଣଶୀଳତା ଆଜିର ମୂଳ ଆବଶ୍ୟକତା । ଭାରତବର୍ଷକୁ ଭାରତବର୍ଷ ଭାବରେ ସ୍ୱୀକାର କରିବାର ଉଦାରତା ଆଜି ବିଶ୍ୱରେ ଏକାନ୍ତ କାମ୍ୟ । ବିଶ୍ୱ ବିକାଶରେ ଯାହା ମୁଖରେ ହସର ଢେଉ, ସେହି ଭାରତବର୍ଷର ଭୂମିକା ବିଶ୍ୱ ଦରବାରରେ କେତେ ଗୁରୁତ୍ୱପୂର୍ଣ୍ଣ, ତାହା ଅବର୍ଣ୍ଣନୀୟ । ଏଥି ନିମନ୍ତେ ଭାରତବର୍ଷକୁ ଟିକିଏ ସ୍ୱତନ୍ତ୍ର ସୁଯୋଗ ମିଳିବା ଏକାନ୍ତ ଆବଶ୍ୟକ । ମିଳିତ ଜାତିସଂଘରେ ସ୍ୱତନ୍ତ୍ର ସ୍ଥିତି ଭାରତକୁ ମିଳିଲେ, ତଦ୍ୱାରା ସମଗ୍ର ବିଶ୍ୱ ଉପକୃତ ହେବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

❑❑

# ବ୍ୟକ୍ତି ଓ ବିଶ୍ୱ ବିକାଶ

କୋଟି କୋଟି ଲୋକଙ୍କର ଜୀବନର ଲକ୍ଷ୍ୟ ଉପଭୋଗ । ଜୀବନ ଆସିଛି ଉପଭୋଗ ପାଇଁ ବୋଲି ସେମାନେ ଧରି ନେଇଥାନ୍ତି ଓ ତଦନୁସାରୀ ସବୁକିଛିର ବ୍ୟବସ୍ଥା କରିଥାନ୍ତି । ବୁଦ୍ଧି ପ୍ରୟୋଗ କରିଥାନ୍ତି ନାନା ପ୍ରକାରେ । ଉପଭୋଗ ମୂଳରେ ଟଙ୍କା ରହିଛି ବୋଲି ସେମାନେ ଟଙ୍କା ସଂଗ୍ରହ କରିବାରେ ଲାଗିଥାନ୍ତି । ସତ୍‌ଉପାୟଠାରୁ ଅସତ୍ ଉପାୟରେ ଟଙ୍କା ପଇସାର ପରିମାଣ ଅଧିକ ହେବାର ଜ୍ଞାନ ଦେଖିଶୁଣି ହାସଲ କରିଥାନ୍ତି ଏବଂ ଅସତ୍ ଉପାୟ ଅବଲମ୍ବନ କରି ଟଙ୍କା ପଇସାର ପରିମାଣ ବଢ଼ାଇବାକୁ ଦିନରାତି ଲାଗିଥାନ୍ତି । ଅନ୍ୟକୁ ବିଭିନ୍ନ ବାଗରେ ଠକିଦେବା, କଳାବଜାର କରି ଦେବା ପାଇଁ ଆଗ୍ରହୀ ହୋଇଥାନ୍ତି । ବିବେକ ପଚାରିଲେ ତାକୁ ବୁଝାଇ ଦିଅନ୍ତି ଯେ, 'ପେଟ ପୋଷ ନାହିଁ ଦୋଷ' । ମାତ୍ର ସେମାନେ ପେଟ ପୋଷିବାକୁ ଏହା କରନ୍ତି ନାହିଁ । ଟଙ୍କା ପଇସାର ପରିମାଣ ବଢ଼ାଇ ଜୀବନକୁ ଅଧିକ ଭୋଗ କରିବାକୁ ଏପରି କରିଥାନ୍ତି । ଏପରି ଧନକୁ ଆମେ କଳାଧନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆଉ କିଛି ଲୋକ ଧନସଂପଦ, ଯଶ, ପ୍ରଶଂସା ଓ କ୍ଷମତାକୁ ତୁଚ୍ଛ କରିଦେଇ ଆତ୍ମସନ୍ଧାନରେ ଚାଲିଯାଆନ୍ତି । ଆତ୍ମସନ୍ଧାନ ପାଇଁ ଗୁମ୍ଫା, ଜଙ୍ଗଲକୁ ସେମାନେ ଯାଆନ୍ତି, ଯୋଗସାଧନା କରନ୍ତି, ମୁକ୍ତି କାମନା କରିଥାନ୍ତି । 'ପୁନରପି ଜନମଂ ପୁନରପି ମରଣଂ'ର କାମନା କରିନଥାନ୍ତି ।

ଅତ୍ୟନ୍ତ ଭୋଗବିଳାସୀମାନଙ୍କ ଦ୍ୱାରା ବିଶାଳ ଜନସମାଜର ବିଶେଷ କିଛି ଲାଭ ହୁଏ ନାହିଁ ।

ମୁକ୍ତିକାମୀ ନିର୍ଜନନିବାସୀ ଯୋଗୀମାନଙ୍କ ଦ୍ୱାରା ମଧ୍ୟ ବିଶାଳ ଜନସମୂହର ବିଶେଷ କିଛି ଲାଭ ହୁଏ ନାହିଁ । ସେମାନେ କେବଳ ବ୍ୟକ୍ତିଗତ ମୁକ୍ତି ପାଇଁ ପ୍ରଯତ୍ନ କରୁଥାନ୍ତି, କିଛି ସଦିଚ୍ଛା, ଶୁଭେଚ୍ଛା ଜନସମାଜପାଇଁ ସେମାନେ ପୋଷଣ କରିଥାନ୍ତି । ମାତ୍ର ଜନସମାଜର ସର୍ବାଙ୍ଗୀନବିକାଶନିମନ୍ତେ ତାହା ପର୍ଯ୍ୟାପ୍ତ ହୁଏ ନାହିଁ । ଜନସମାଜ ଯେଉଁ ତିମିରେକୁ ସେଇ ତିମିରେ ରହିଥାନ୍ତି । ପ୍ରଥମ ପ୍ରକାରର ବ୍ୟକ୍ତିମାନଙ୍କର ପ୍ରବଳ ଅହଂକାର ଥାଏ । କାରଣ ସେମନେ ବହୁ ମୂଲ୍ୟବାନ ବସ୍ତୁର ଅଧିକାରୀ ବୋଲି । ବହୁ ଧନ, ବହୁକ୍ଷମତା, ବାହୁବଳ, କୂଟବୁଦ୍ଧି, ଅନ୍ୟକୁ ନ୍ୟୂନ କରି ଦେଖିବାର ମାନସିକତା ଥିବାରୁ ସେମାନେ ନିଜକୁ ବହୁତ ବଡ଼ ମନେ କରିଥାନ୍ତି । ବଡ଼ପଣରେ ଗଁ ଗଁ ହେଉଥାନ୍ତି, ମୁହଁ ସର୍ବଦା କୋଥଲ କରି ରଖିଥାନ୍ତି, ଭଲ କଥାଟିଏ କହିଲେ ଭୁଲ ବୁଝିଥାନ୍ତି, ଅର୍ଥକୁ କଦର୍ଥ କରିଥାନ୍ତି । ନିଜ ପ୍ରଶଂସା, ଯଶ କେବଳ ଗୋଟାନ୍ତି ନାହିଁ, ଦାବି କରନ୍ତି ଓ କଳେବଳେ କୌଶଳେ ଆଦାୟ କରିଥାନ୍ତି । ନିଜକୁ ସମଗ୍ର ବିଶ୍ୱର କେନ୍ଦ୍ରବିନ୍ଦୁ ବୋଲି ବିଚାର କରୁଥାନ୍ତି । ବସ୍ତୁ ଗୁଡ଼ିକୁ ଏକାଠି କରି ବସ୍ତୁବାଦର ସିଂହାସନରେ ବସି ନିଜକୁ ସମ୍ରାଟ ବୋଲି ଘୋଷଣା କରୁଥାନ୍ତି । ଉପଭୋଗକୁ ମାନଦଣ୍ଡ କରି କାହା ଜୀବନ କେତେ ସାର୍ଥକ ବା ଅସାର୍ଥକ ମାପୁଥାନ୍ତି । ମାପିମାପି ଦିନକାଳ ଚାଲିଯାଏ, ବୁଝିବା ଅବସ୍ଥାକୁ ସେମାନେ ଆସିପାରନ୍ତି ନାହିଁ । ନିଜକୁ, ଜଗତକୁ ଓ ଅନ୍ୟମାନଙ୍କୁ ଉଚିତ ମାନଦଣ୍ଡରେ ମାପିବାର ମାନସିକତା ସେମାନଙ୍କର ନଥାଏ । ଅନ୍ୟମାନେ ମପାହେବାର ସାମର୍ଥ୍ୟ ଅର୍ଜନ କରିନାହାନ୍ତି ବୋଲି ସେମାନେ ଧରି ନେଇଥାଆନ୍ତି । ନିଜକୁ ବଡ଼ ଓ ଅନ୍ୟକୁ ସାନ କରି ଦେଖୁ ଦେଖୁ ତାଙ୍କର ବେଳକାଳ ସରିଯାଏ । ଆଉ କେହି ବଡ଼ କରୁ ବା ନ କରୁ ନିଜକୁ ନିଜେ ବଡ଼ ବୋଲି ଘୋଷଣା କରିକରି ତାଙ୍କର ସମୟ ସରିଯାଏ । ଏପରି କୁହାଯାଇପାରେ ଯେ ସେମାନେ ହେଉଛନ୍ତି ଆତ୍ମଘୋଷିତ ବିଶିଷ୍ଟ ବ୍ୟକ୍ତି ।

ଦ୍ୱିତୀୟ ପ୍ରକାରର ବ୍ୟକ୍ତିମାନଙ୍କର ଅର୍ଥାତ୍ ତଥାକଥିତ ଯୋଗୀମାନଙ୍କର ମଧ୍ୟ ଏକ ପ୍ରକାର ଅହଂକାର ଥାଏ । ସେମାନେ ଘୋଷଣା କରନ୍ତୁ କି ନକରନ୍ତୁ ନିଜକୁ ଅନ୍ୟମାନଙ୍କଠାରୁ ବଡ଼ ମନେ କରୁଥାନ୍ତି । ସଂସାରୀ ଲୋକ ଯେ, ଖାଦ୍ୟ ଲୋଭରେ ଜାଲରେ ପଡ଼ିଛି, ଏକଥା ସେମାନେ ଭାବି ନିଜକୁ ବା ଧନ୍ୟବାଦ ଦେଇଥାନ୍ତି, ସଂସାର ଜଞ୍ଜାଳରେ ପଶି ନାହାନ୍ତି ବୋଲି ନିଜକୁ ମହାନ୍ ବୋଲି ବିଚାରିଥାଆନ୍ତି । ସଂସାରୀ ବ୍ୟକ୍ତିର ଦୁଃଖକଷ୍ଟ ଶୁଣି ଦୁଃଖ କରନ୍ତି, ସମବେଦନା ଜଣାନ୍ତି ମାତ୍ର ତାଙ୍କ ସହ ଏକାତ୍ମ ହୋଇପାରନ୍ତି ନାହିଁ । ନିଜେ ଅଧିକ ଉଚ୍ଚତାରେ ରହିଛନ୍ତି ବୋଲି ଭାବିଥାଆନ୍ତି । ସଂସାରୀ ଲୋକମାନେ ଦୟାର ପାତ୍ର ଭାବରେ ତାଙ୍କ ଆଖିକୁ ଦେଖାଯାନ୍ତି ।

ଉପରୋକ୍ତ ଦୁଇ ପ୍ରକାରର ବ୍ୟକ୍ତିଙ୍କ ଅପେକ୍ଷା ଆଉ ଏକ ପ୍ରକାରର ବ୍ୟକ୍ତି ବିଶ୍ୱର ସାମଗ୍ରିକ ବିକାଶ ନିମନ୍ତେ ଆବଶ୍ୟକ । ଏଇ ତୃତୀୟ ପ୍ରକାରର ବ୍ୟକ୍ତି ବସ୍ତୁର ଅଧିକାରୀ

ହୋଇଥିବେ ମାତ୍ର ବସ୍ତୁବାଦୀ ହୋଇ ନ ଥିବେ । ବିଶ୍ୱକଲ୍ୟାଣ ହୋଇଥିବ ତାଙ୍କର ଲକ୍ଷ୍ୟ । ବିଶ୍ୱ କଲ୍ୟାଣ ନିମନ୍ତେ ବସ୍ତୁ ସେମାନଙ୍କୁ ସହାୟତା କରୁଥିବ । ବସ୍ତୁର ଶିଡ଼ିବାଟ ଦେଇ ସେମାନେ ବିଶ୍ୱ ବିକାଶର ଛାତକୁ ଯିବାର ଲକ୍ଷ୍ୟ ରଖିଥିବେ । ନିର୍ଜନ ନିବାସ ନୁହେଁ ଜନମାନଙ୍କ ଭିତରେ ବାସ କରୁଥିବେ । ସାଧୁତା, ଉଦାରତା, ରୁଚି ସମ୍ପନ୍ନତା, ଶ୍ରଦ୍ଧାଶୀଳତା ସର୍ବୋପରି ଜୀବନ, ଜଗତ ପ୍ରତି ସଚେତନତା ସେମାନଙ୍କର ଭୂଷଣ ସ୍ୱରୂପ ନହୋଇ ମଜ୍ଜାଗତ ହୋଇଥିବ । ଅନ୍ୟଠାରୁ ଶ୍ରଦ୍ଧାଦାବି ନକରି ଅନ୍ୟକୁ ଶ୍ରଦ୍ଧା କରୁଥିବେ । ନିଜର ସୁବିଧା କଥା ଚିନ୍ତା କରିବା ସହିତ ଅନ୍ୟର ସୁବିଧା କଥା ମଧ୍ୟ ଚିନ୍ତା କରୁଥିବେ । ନିଜେ ସ୍ୱାର୍ଥପର ବୋଲି ଚିହ୍ନା ପଡ଼ିଯାଉନଥିବେ । ଅନ୍ୟ ପାଖରେ କିଛି ଭଲକଥା ଦେଖିଲେ ତାହାର ଅନୁମୋଦନ କରୁଥିବେ । ଧର୍ମ, ଜାତି, ଚଳଣିକୁ ଘର ଭିତରେ ରଖି ବାହାରକୁ ସମଗ୍ର ବିଶ୍ୱର ସମୁଦାୟ ଜନସମାଜର ଏକ ଏକକ ବୋଲି ବିଚାରୁଥିବେ । ଧନ ସମ୍ପଦ ସେମାନଙ୍କର ଥିବ ଯଶ, ପ୍ରଶଂସା, ପ୍ରତିଷ୍ଠା ସବୁକିଛି ଥିବ ମାତ୍ର ଏସବୁ ଜନିତ ଗର୍ବ ନଥିବ, ଅନ୍ୟକୁ ହୀନ ଦୃଷ୍ଟିରେ ଦେଖିବାର ମନୋଭାବଟି ନ ଥିବ । ଅନ୍ୟର କ୍ଷତି ଚିନ୍ତା ନଥିବ, ନଥିବ ମନରେ ଈର୍ଷା । ଅନ୍ୟର ଉପକାର କରିବାର ସୁବିଧାସୁଯୋଗ ନ ଥିଲେ ନାହିଁ, ଅପକାର କରିବାର ପ୍ରବୃତ୍ତି ନ ଥିବ । ସେମାନେ ନିଜକୁ ଚିହ୍ନୁଥିବେ ଓ ଅନ୍ୟମାନଙ୍କୁ ମଧ୍ୟ ଗୁରୁତ୍ୱ ଦେଉଥିବେ । 'ତୃଣାଦପି ସୁନୀଚେନ' ନ ହେଲେ ନାହିଁ ନିଜକୁ ସବୁଠାରୁ ବିରାଟ ବୃକ୍ଷ ବୋଲି ଭାବୁନଥିବେ । ନିଜେ ଯାହା ନିଜକୁ ସେଇଆ ବୋଲି ଭାବୁଥିବେ । ନିଜକୁ ଅନ୍ୟମାପରେ ମାପୁ ନ ଥିବେ କି ଅନ୍ୟକୁ ନିଜ ମାପରେ ମାପୁନଥିବେ । ଅନ୍ୟକୁ ନିଜ ଛାଞ୍ଚରେ ପକାଇବାକୁ ଚାହୁଁନଥିବେ ଅଥବା ଅନ୍ୟ ଛାନ୍ଦରେ ନିଜେ ପଡ଼ିବାକୁ ଚାହୁଁ ନଥିବେ । ବାହାର ଭିନ୍ନତା ଥିବ ମାତ୍ର ଭିତରେ ଏକାତ୍ମକତା ଥିବ । ସବୁ ପାଠର ମର୍ଯ୍ୟାଦା ଥିବ, ସବୁ ବାଟର ମର୍ଯ୍ୟାଦା ଥିବ, ସବୁ ଘଟର ମର୍ଯ୍ୟାଦାଥିବ । ତେବେ ବାତାବରଣରେ ବାରୁଦ ଗନ୍ଧ ନ ଆସି ଫୁଲ ସୁବାସ ଆସିବ । ରକ୍ତଟୋପା ଟୋପା ହୋଇ ଭୂମିରେ ଝରିବ ନାହି ବରଂ ପରିବେଶରେ ଆନନ୍ଦର ରଙ୍ଗକମଳ ଫୁଟିବ । ବିଶ୍ୱଗ୍ରାମ ଗଠନର ସ୍ୱପ୍ନ ସାକାର ହେବ । ମାନବ ଏକତାର ପରିପୂର୍ଣ୍ଣ ପ୍ରତିଷ୍ଠା ସେଦିନ ସମ୍ଭବ ହେବ ।



# ଭାରତ ଓ ଭାରତୀୟତା

ଭାରତବର୍ଷ ଆଗୁଆ କାହାକୁ ଆକ୍ରମଣ କରି ନାହିଁ ମାତ୍ର ପ୍ରତିଆକ୍ରମଣ କରିବାକୁ କୁଣ୍ଠାବୋଧ କରି ନାହିଁ ବା ପଶ୍ଚାତ ପଦ ହୋଇନାହିଁ । ଏହା ଯେମିତି ଶାସ୍ତ୍ରର ଦେଶ ସେମିତି ଶସ୍ତ୍ରର ଦେଶ, ଏହା ଯେମିତି ତ୍ୟାଗର ଦେଶ ସେତିକି ତେଜର ଦେଶ । ନାମରୁ ଏହାର ଯଥାର୍ଥତା ଉପଲବ୍ଧ । 'ଭା' ଅର୍ଥ ଦୀପ୍ତି, ତେଜ, ଉଜ୍ଜ୍ୱଳତା ଇତ୍ୟାଦି ଇତ୍ୟାଦି । ଭା+ରତ ଅର୍ଥାତ୍ ଦୀପ୍ତି, ତେଜ, ଉଜ୍ଜ୍ୱଳତାଯୁକ୍ତ ଭୂଖଣ୍ଡ ଯାହାର ସ୍ୱତନ୍ତ୍ର ଚେତନା ରହିଛି, ଯିଏ ଭାରତ ମାତା ଭାବରେ ତଥା ଜୀବନ୍ତ ଦେବୀ ଭାବରେ ଆମ ନିକଟରେ ପୂଜିତ ଓ ପ୍ରତିଷ୍ଠିତ । ସ୍ୱାମୀବିବେକାନନ୍ଦ ଏହି ଜୀବନ୍ତ ଦେବୀଙ୍କୁ ମର୍ମଚକ୍ଷୁରେ ଦେଖିଥିଲେ ଓ କହିଥିଲେ, 'ଭାରତବର୍ଷ ଏକ ଭାଷାର ଅଳଙ୍କାର ନୁହେଁ, ଏକ ଜାଗ୍ରତ ଚେତନା । ଭାରତର ପ୍ରାଣଶକ୍ତି ଅଫୁରନ୍ତ । ତାର ଭୂପୃଷ୍ଠର ଯେ କୌଣସି ପର୍ବତ ଅପେକ୍ଷା ବି ଅଟଳ, ବସ୍ତୁତଃ ଭାରତର ଜୀବନ ଆତ୍ମାପରି ଅନାଦି, ଅନନ୍ତ ଓ ଅନିର୍ବାଣ । ଯେଉଁ ଦୂର ଅତୀତର ଖବର ଇତିହାସରେ ମିଳେ ନାହିଁ ସେହି ସମୟଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ କେତେ ଉଚ୍ଚଉଚ୍ଚଭାବ, ଶାନ୍ତି ଓ ଶୁଭେଚ୍ଛାର ବାଣୀ ଭାରତରୁ ଜଗତକୁ ବିସ୍ତୃତ ହୋଇଛି ।'

ବିପ୍ଳବୀରୁ ମହାଯୋଗୀ ଶ୍ରୀଅରବିନ୍ଦଙ୍କ ମତରେ-'ଭାରତ ମାଟି,ଗୋଡ଼ି ପଥରରେ ଗଢ଼ା ଏକ ଜଡ଼ ପିଣ୍ଡ ନୁହେଁ, ଏହା ଏକ ଜୀବନ୍ତ ଦେବୀ, ଜାଗ୍ରତ ଚେତନା । ଭାରତ ହେଉଛି ପୃଥିବୀର ଆତ୍ମା । ସମଗ୍ରମାନବଜାତି ଯେଉଁ ସମସ୍ୟାମାନଙ୍କୁ ନେଇ ବିବ୍ରତ, କିଂକର୍ତ୍ତବ୍ୟବିମୂଢ଼ ହୋଇପଡିଛି, ଭାରତ ଦେଇପାରେ ସେ ସବୁର ଯଥାର୍ଥ ମୀମାଂସା ଓ ଯଥାଯଥ ସମାଧାନ ।'

## ।। ଜୀବନର ମୂଲ୍ୟ ଓ ମୂଲ୍ୟବୋଧ ।।

ଏ ଦେଶର ସଂସ୍କୃତିର ଉଭା ଯେତେ ପୋତା ସେତେ । ଏହା ବାହାରେ ଯେତିକି ବଞ୍ଚେ ଭିତରେ ତା'ଠାରୁ ବେଶୀ ବଞ୍ଚେ । ଏହାର ଜୀବନୀ ଶକ୍ତି ସ୍ୱତନ୍ତ୍ର ଓ ସୂକ୍ଷ୍ମ । ବହୁ ଶତାବ୍ଦୀର ଘାତପ୍ରତିଘାତ ଓ ବହୁ ବୈଦେଶିକ ଆକ୍ରମଣ ସତ୍ତ୍ୱେ ଏହା ସଦର୍ପରେ ତିଷ୍ଠି ରହିଛି ଏବଂ ବୀରତ୍ୱର ସହିତ ସମଗ୍ର ବିଶ୍ୱର କଲ୍ୟାଣ କାମନା କରିଛି । ଏଇ କଲ୍ୟାଣ କାମନାରେ ଆନ୍ତରିକତା ଅଛି ଏବଂ ବିଶ୍ୱଗ୍ରାମ ଗଠନର ହୃଦୟବତ୍ତା ରହିଛି । ନ୍ୟାୟ ଓ ଅନ୍ୟାୟର ବିଚାର କ୍ଷମତା ଓ ଦକ୍ଷତା ଏଇ ସଂସ୍କୃତିରେ ଉପଲବ୍ଧ । ଏଠାରେ ଯୁଦ୍ଧର ଆବଶ୍ୟକତା ପଡ଼ିଲେ ଯୁଦ୍ଧର ଅନୁମୋଦନ କରାଯାଏ । ଯୁଦ୍ଧଭୂମିକୁ ସେତେବେଳେ ନ୍ୟାୟର ଭୂମି ପୁଣି ଧର୍ମର ଭୂମି ବୋଲି ବିଚାର କରାଯାଏ । ଏଇ ଧର୍ମ ମାନବିକ ଧର୍ମ ଅଥବା ମାନବିକତାର ଅନ୍ୟ ନାମ । ବୃଥା ବାହାସ୍ଫୋଟ ମାରିବାର ପରଂପରା ଏଠାରେ ନଥାଏ, ଥାଏ ଆହ୍ୱାନକୁ ମୁକାବିଲା କରିବାର ଦମ୍ଭ ଓ ସାହସ । ପାଲଟା ଜବାବ ଏହା କଡ଼ା କରି ଦେଇପାରେ । ସକଳ ପରିସ୍ଥିତିର ସମ୍ମୁଖୀନ ହେବାର ଦକ୍ଷତା ଓ ଯୋଗ୍ୟତା ଏଠାରେ ରହିଛି । ଅନ୍ୟକୁ ଆଘାତ ଦେବାକୁ ଆମ ସଂସ୍କୃତି ଶିଖି ନାହିଁ ମାତ୍ର ନିଜର ସ୍ୱାଭିମାନ ଉପରେ ଆଞ୍ଚ ଆସିଲେ ପଛକୁ ହଟି ଆସିବାକୁ ଉଚିତ ମନେ କରି ନାହିଁ । ଶାସ୍ତ୍ରର ଜବାବ ଶାସ୍ତ୍ରରେ ଏବଂ ଶସ୍ତ୍ରର ଜବାବ ଶସ୍ତ୍ରରେ ଦେବାପାଇଁ ଶିଖିଛି । ଏ ଦେଶ ରାମଚନ୍ଦ୍ରଙ୍କର ଦେଶ, ଭୀଷ୍ମଦେବଙ୍କର ଦେଶ, ଶିବିରାଜନଙ୍କର ଦେଶ, ପୁଣି ଦଧୀଚିଙ୍କର ଦେଶ । ଋଷିଙ୍କର ଦେଶ ଏ ଯେ ରାଜାଙ୍କର ଦେଶ । ସତ୍ୟ ଏଠି ସେତୁବନ୍ଧ ମନ ଓ ବିବେକ ମଝିରେ । ଏଇ ସତ୍ୟ ପାଇଁ ହରିଶ୍ଚନ୍ଦ୍ର ରାଜ୍ୟ ଛାଡ଼ି ଶ୍ମଶାନରକ୍ଷକ, ରମଚନ୍ଦ୍ର ଗଲେ ବନବାସ । ରାକ୍ଷସର ଅତ୍ୟାଚାର ବିନିମୟରେ ଏଠି ମିଳେ ତାକୁ ଯଥାଯୋଗ୍ୟ ପୁରସ୍କାର । ଛଳନା, ମିଥ୍ୟାଚାର, କପଟ ଓ ହିଂସା ଏ ମାଟି ପାଇଁ ଅସହ୍ୟ । ଏଠାରେ ମାନବିକ ମୂଲ୍ୟବୋଧର ଜୟ ବାଜଣା ବାଜେ । 'ସତ୍ୟମେବ ଜୟତେ'ର ସ୍ୱର ଗଗନ ପବନରେ ପ୍ରତିଧ୍ୱନିତ ହୁଏ । ସାଗରର ଉଚ୍ଛୁଳା ତରଙ୍ଗରେ ଶୁଭୁଥାଏ ଅହିଂସାର ଜୟଗାନ । ପବନର ପ୍ରବାହରେ ଭରିଥାଏ ବନ୍ଧୁତାର ଶିହରଣ । ଏ ମାଟିର ବୁଝିବାର ଶକ୍ତି ରହିଛି କିଏ ଭଲ କିଏ ଭେଲ, କାହା ପ୍ରତି କିପରି ବ୍ୟବହାର ବାଞ୍ଛନୀୟ । କ୍ଷମା ଏ ଦେଇପାରେ, ମାତ୍ର କ୍ଷମାର ଅପବ୍ୟବହାର କରେନା । ଆବଶ୍ୟକତା ଅନୁସାରେ ଲୁହାଠାରୁ ଟାଣ ହୋଇପାରେ ପୁଣି ତୁଳାଠାରୁ ଅଧିକ ନରମ ହୋଇପାରେ । ସମୟୋପଯୋଗୀ ପଦକ୍ଷେପ ନେଇପାରେ ଭାରତବର୍ଷ କାରଣ ସେ ଜାଣେ ଜୀବନର ମୂଲ୍ୟ, ସେ ବୁଝେ ଜୀବନର ମୂଲ୍ୟବୋଧ ଏବଂ ବିଶ୍ୱଜୀବନର ମହତ୍ତ୍ୱ । ସୁଲଳିତ ସାହିତ୍ୟ ସମ୍ଭାରର ସୃଷ୍ଟି ଭାରତବର୍ଷ ଯେପରି ଜାଣେ ସମର କୌଶଳ ମଧ୍ୟ ସେପରି ଜାଣେ । ବହୁ ଶାସ୍ତ୍ର ମଧ୍ୟରେ ସମର ଶାସ୍ତ୍ର ଏକ ଜୀବନୋପଯୋଗୀ ଶାସ୍ତ୍ର ଭାବରେ ଏଇ ସଂସ୍କୃତିରେ ପରିଗଣିତ ହୁଏ । ଏଠାରେ କାଳିଦାସଙ୍କ ପରି କବିଙ୍କର ଜନ୍ମ ଯେପରି ସମ୍ଭବ ଶିବାଜୀଙ୍କ ପରି ବୀରଙ୍କର ଆବିର୍ଭାବ ମଧ୍ୟ ସେପରି ସମ୍ଭବ । ଲଳିତ ଶବ୍ଦ ମାଳାର କବି ଜୟଦେବଙ୍କର ଜନ୍ମ ଯେପରି ସମ୍ଭବ ରାଣୀଦୁର୍ଗାବତୀଙ୍କର ଜନ୍ମ ମଧ ସେପରି ସମ୍ଭବ । 'ଗୀତାଞ୍ଜଳି'ର କନକାଞ୍ଜଳିରେ

ବିଶ୍ୱ ଯେପରି ବିମୋହିତ ମଙ୍ଗଳ ଗ୍ରହର ଅଭିଯାନ ଗତ ସଫଳତାରେ ବିଶ୍ୱ ସେପରି ସ୍ତବ୍ଧ । 'ବନ୍ଦେ ମାତରମ୍'ର ଧ୍ୱନିରେ ବାତାବରଣ ଯେପରି ପବିତ୍ରିତ ଓ ଶିହରିତ, ସୈନ୍ୟବାହିନୀର ସଚେତନତାରେ ଗଗନପବନ ସେପରି ବୀର ରସରେ ରସାଣିତ ଓ ତେଜଦୀପ୍ତ ।

ଏ ଭାରତ ଦେବଭୂମି, ଦେବତାଙ୍କର ନିର୍ବାଚିତ ଭୂମି । ସେଥିପାଇଁ ବାରମ୍ବାର ଦେବତାମାନେ ଅବତାର ଗ୍ରହଣ ପୂର୍ବକ ଏ ମାଟିକୁ ଅବତରି ଆସନ୍ତି ବୋଲି ଶ୍ରୀଅରବିନ୍ଦ କହିଛନ୍ତି । ଦିବ୍ୟତ୍ୱ କେବଳ ଦେବଆରାଧନା ଓ ଧର୍ମଶାସ୍ତ୍ର ପଠନରେ ନଥାଏ, ଥାଏ ଜୀବନର ପରିପୂର୍ଣ୍ଣତାରେ । ଆତ୍ମରକ୍ଷା, ଆତ୍ମପ୍ରତିଷ୍ଠା, ଆତ୍ମସମୃଦ୍ଧି ତଥା ଆତ୍ମନିୟନ୍ତ୍ରଣ ଏହାର ଅଙ୍ଗ ହୋଇପାରେ । ଶତ୍ରୁର ମୁକାବିଲା କରିବା ଏବଂ ମିତ୍ରର ମିତ୍ରତ୍ୱ ପ୍ରତି ବିଶ୍ୱସ୍ତ ରହିବା ମଧ୍ୟ ଦିବ୍ୟତ୍ୱର ପରିସରଭୁକ୍ତ ।

ଭାରତବର୍ଷ ଅଶାନ୍ତି ଚାହେଁନା ମାତ୍ର ଅଶାନ୍ତିର ଅପସାରଣ ପୂର୍ବକ ଶାନ୍ତିର ପ୍ରତିଷ୍ଠା ପୃଥିବୀରେ ଚାହେଁ । ଶାନ୍ତିର କପୋତ ବିଶ୍ୱର ଆକାଶରେ ଉଡ଼ାଇବାକୁ ଚାହେଁ ଅର୍ଥାତ ବିଶ୍ୱ ଶାନ୍ତି ଚାହେଁ । ଶ୍ରଦ୍ଧାରେ ଜଗତକୁ ବାନ୍ଧିବାକୁ ଚାହେଁ ଓ ଚେଷ୍ଟା କରେ । ଭାରତ ଜାଣେ ଯେ ଜୀବନର ଲକ୍ଷ୍ୟ ହେଉଛି ପୂର୍ଣ୍ଣତା । ଏଇ ପୂର୍ଣ୍ଣତା କେବଳ ଖାଦ୍ୟବସ୍ତ୍ର ବାସଗୃହରେ ଆସେ ନାହିଁ, ଏଥି ସହିତ ପାରସ୍ପରିକ ସହାବସ୍ଥାନରେ ଆସେ । ପାରସ୍ପରିକ ବିଶ୍ୱାସ ଓ ମମତ୍ୱବୋଧରେ ଆସେ । ସଂକୀର୍ଣ୍ଣତା ନୁହେଁ ଉଦାରତାରେ ପୂର୍ଣ୍ଣତା ଆସେ । ସ୍ୱାମୀ ବିବେକାନନ୍ଦଙ୍କ ମତାନୁସାରେ ସଂକୀର୍ଣ୍ଣତାକୁ ମୃତ୍ୟୁ ଓ ଉଦାରତାକୁ ଜୀବନ ବୋଲି ବିଚାର କରେ । ଭାରତୀୟ ଉଦାରତା ଯେ କେତେ ତାକୁ ଅନ୍ୟ ଦେଶମାନେ ବୁଝିପାରିବେ ନାହିଁ । ବାସ୍ତବିକ ଉଦାରତା ହିଁ ଭାରତୀୟତା । ତାର ପ୍ରମାଣ ହେଉଛି-ଭାରତରେ ବହୁଧର୍ମ, ବହୁ ଚଳଣି, ବହୁଭାଷାର ପ୍ରଚଳନ । ସେଇ ଉଦାରତା ହିଁ ସମସ୍ତଙ୍କୁ ବାନ୍ଧି ରଖିଛି ସୁବର୍ଣ୍ଣ ସୂତ୍ରରେ । ଆର୍ଯ୍ୟଋଷିଙ୍କର ବାଣୀ 'ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ' ହେଉଛି ଭାରତବର୍ଷର ମର୍ମବାଣୀ । ଏ ବାଣୀ କେବଳ ଭାରତ ପାଇଁ ଉଦ୍ଦିଷ୍ଟ ନୁହେଁ, ଏହା ସମଗ୍ର ବିଶ୍ୱ ପାଇଁ ଅଭିପ୍ରେତ । ସମସ୍ତେ ସୁଖରେ ରହିଲେ, ସମସ୍ତେ ଶାନ୍ତିରେ ରହିଲେ ଅନ୍ତରୀକ୍ଷଶାନ୍ତି, ପୃଥ୍ୱୀ ଶାନ୍ତି, ବିଶ୍ୱେ ଦେବା ଶାନ୍ତି ତଥା ସର୍ବ ଶାନ୍ତି ସମ୍ଭବ ହେବ ।

ବିଶ୍ୱରେ ଧର୍ମର ଭିନ୍ନତା ରହିବ,ଭାଷାର ବିଭିନ୍ନତା ରହିବ, ଚଳଣିରେ ଭିନ୍ନତା ରହିବ । ଏସବୁ ସତ୍ତ୍ୱେ ଅନ୍ୟପ୍ରତି ଶ୍ରଦ୍ଧା ରହିବ, ସମ୍ମାନ ରହିବ, ନିଜର ସୀମା ବାବଦରେ ସଚେତନତା ରହିବ, ଆପଣା ମହତ ଆପେ ରଖିବାର ମାନସିକତା ରହିବ, ବିଶ୍ୱର ବାୟୁମଣ୍ଡଳକୁ ଅଯଥା ପ୍ରଦୂଷିତ ନ କରିବାର ମନୋବୃତ୍ତି ରହିବ, ଯୁଦ୍ଧ ଖୋର ମନୋଭାବ ପରିବର୍ତ୍ତେ ବନ୍ଧୁତ୍ୱ ପ୍ରତି ଆଗ୍ରହ ରହିବ, ବିଶ୍ୱଗ୍ରାମ ଗଠନ ପ୍ରତି ଆଗ୍ରହ ରହିବ ।ଏହା କଥାର କଥା ନୁହେଁ, ଉପଦେଶର ବାର୍ତ୍ତା ନୁହେଁ, ଏହା ଗଭୀର ଅନୁଭବର ଅନୁଚିନ୍ତା । ଏହାହିଁ ପୂର୍ଣ୍ଣାଙ୍ଗ ଜଗତୀକରଣର ମୂଳତତ୍ତ୍ୱ-ଏକଥାରେ ସନ୍ଦେହର ଅବକାଶ ନାହିଁ । ଏହାହିଁ ଯଥାର୍ଥ ଭାରତୀୟତା ।

□□

# ଅସୁବିଧାର ମୂଳ କେଉଁଠି ?

ରାଜନୀତିର ପ୍ରଭାବକୁ ଜନଜୀବନର ଚେର ପର୍ଯ୍ୟନ୍ତ କେବଳ ଲମ୍ବାଇ ଦେଲେ ସମାଜ ସମୃଦ୍ଧ ହୋଇଯିବ ନାହିଁ । ଏଥିସହିତ ଆଉ କେତେ ପ୍ରକାରର ବିକାଶ ଆବଶ୍ୟକ । ଏଇ ଯେମିତି ରୁଚିଗତ ବିକାଶ, ସଂସ୍କୃତିଗତ ବିକାଶ, ଶିକ୍ଷାଗତ ବିକାଶ ଇତ୍ୟାଦି ଇତ୍ୟାଦି ।

ସବୁଠାରୁ ବଡ଼ ବିକାଶ ହେଉଛି ଯୁବପୀଢ଼ିକୁ ଶିକ୍ଷିତ କରିବା । ଶିକ୍ଷିତ କରିବା ଅର୍ଥ ଅଧିକ ସଂଖ୍ୟାରେ ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ନୁହେଁ ଅଥବା ଡିଗ୍ରୀ ଡିପ୍ଲୋମା ପ୍ରଦାନ କରିବା ନୁହେଁ । ବିଦ୍ୟାଳୟ ସ୍ତରରୁ ମୂଳଦୁଆକୁ ଦୃଢ଼ କରିବା ଶିକ୍ଷାର ପ୍ରଥମ ଆବଶ୍ୟକତା । ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଲା ପରେ ପିଲାଟିକୁ ଯଦି ସରଳ ମିଶାଣଟିଏ ନ ଆସିଲା ତେବେ ଘରେ ନ ପଶୁଣୁ ଝଡ଼ ବାଜିଲା ପରି କଥାଟି ହେଲା । ଓଡ଼ିଆ ଘରର ପିଲାଟିଏ ଯେଉଁ ମାଧ୍ୟମରେ ପଢୁ ପଛକେ ନିଜ ମାତୃଭାଷାରେ ଦୁଇଧାଡ଼ି ଯେବେ ପଢ଼ି ନପାରିଲା, ତେବେ ଶିକ୍ଷାର ମାନ କେତେ ବୁଝି ହୋଇଗଲା । ମହାବିଦ୍ୟାଳୟରେ ପଢ଼ିଲାବେଳେ ମଧ୍ୟ ନିଜ ନାମର ଅର୍ଥଟିକୁ ଯଦି ଜାଣିଲା ନାହିଁ, ତେବେ ଆଉ ଅଧିକ କ'ଣ କହିବା । ସାହିତ୍ୟର ଛାତ୍ରଟିଏ ଯଦି 'ବୀଣାପାଣି', 'ପୁରସ୍କାର', 'ଶଶାଙ୍କ ଶେଖର'ପ୍ରଭୃତି ଶବ୍ଦ ନ ଲେଖିପାରିଲା ତେବେ କାହାକୁ କହିବା ? ଇଂରାଜୀ ମାଧ୍ୟମରେ ପଢୁଥିବା ପିଲାଟି ଯଦି 'ପ୍ରୋଗ୍ରାମ' ଶବ୍ଦରେ ଦୁଇଟି 'ଏମ୍' କିମ୍ବା ଦୁଇଟି 'ଇ' ଲାଗିବ ଜାଣିପାରିଲା ନାହିଁ, ତେବେ ଦୋଷ ଦେବା କାହାକୁ ? ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କରେ ପଢୁଥିବା ପିଲାଟି ଯଦି ନିଜ ଦେଶ ବିଷୟରେ ପାଞ୍ଚଗୋଟି

ବାକ୍ୟ ସଜାଡ଼ି କରି କହିପାରିଲା ନାହିଁ, ତେବେ ଦୋଷ କାହାର ? ଉଚ୍ଚଶିକ୍ଷିତ ପିଲାଟିଏ ଯଦି ନିଜ ରାଜ୍ୟର ତିନିଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ନାମ ନ କହିପାରିଲା ତେବେ କହିବା କାହାକୁ ?

ପ୍ରକୃତ ପକ୍ଷେ ଶିକ୍ଷା ଆଜି ଲକ୍ଷ୍ୟହରା । ପ୍ରକୃତ ଶିକ୍ଷା କେବଳ ସମ୍ବାଦ ସଂଗ୍ରହ ନୁହେଁ ଏହା ସହିତ ଚରିତ୍ର ଗଠନ ମଧ୍ୟ । ରୁଚିକୁ ମାର୍ଜିତ କରେ ଶିକ୍ଷା, ବ୍ୟବହାରକୁ ଶୃଙ୍ଖଳିତ କରେ ଶିକ୍ଷା, ବାକ୍‌ଶକ୍ତିକୁ ସଂଯତ କରେ ଶିକ୍ଷା, ଦେଶପ୍ରେମକୁ ଜାଗ୍ରତ କରେ ଶିକ୍ଷା- ଏକଥା ବୁଝୁଛି କିଏ, ବୁଝେଇବା ତ ଦୂରର କଥା ।

ଚାରିଆଡ଼େ ସମସ୍ତେ ମାତିଛନ୍ତି ହାଲ୍‌କା କଥାରେ, ଭାସୁଛନ୍ତି ଉପରେ ଉପରେ । ଯଦି କିଏ ଶିକ୍ଷାନୁଷ୍ଠାନର ଶିକ୍ଷାର ମାନ ଉନ୍ନତ ହେଉ, ପିଲାମାନଙ୍କର ସ୍ୱଭାବ ଚରିତ୍ର ସୁସଂଗଠିତ ହେଉ ବୋଲି କିଛି ପ୍ରଚେଷ୍ଟା କରନ୍ତି, ତେବେ କଥା ସରିଲା । ସେ ବହୁପ୍ରକାରେ ଅସୁବିଧାରେ ପଡିବାକୁ ବାଧ୍ୟ । କାରଣ ସେ ବେହୋସମାନଙ୍କ ଭିତରେ ହୋସ୍‌ରେ ଅଛନ୍ତି । ତାଙ୍କ ହାତରେ ଥିବା ଦର୍ପଣକୁ ଦର୍ପଣ ବୋଲି ଚିହ୍ନିବ କିଏ ? ଦର୍ପଣ ଚିହ୍ନିବା ଶକ୍ତି ତ ପରିବେଶରୁ କମିଗଲାଣି । ମହାବିଦ୍ୟାଳୟ ଅଥବା ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀଙ୍କୁ ପଚାରିଲେ ଜୀବନରଲକ୍ଷ୍ୟ କ'ଣ ବୋଲି ଉତ୍ତର ମିଳିବ 'ଡାକ୍ତର ହେବା', 'ପ୍ରଶାସନିକ ଅଧିକାରୀ ହେବା' 'ବଡ଼ ଚାକିରୀ କରିବା', 'ବଡ଼ ପଦବୀ ପାଇବା' ଇତ୍ୟାଦି ଇତ୍ୟାଦି । ଏତିକି ଯଥେଷ୍ଟ ନୁହେଁ, ଏଥି ସହିତ ଆତ୍ମସଂଯମ, ଆତ୍ମସନ୍ତୋଷ, ଆତ୍ମବିଶ୍ୱାସ ଏବଂ ଦେଶ ସହ ମାନସିକ ସଂପୃକ୍ତି ଏକାନ୍ତ ଆବଶ୍ୟକ । ବ୍ୟକ୍ତିଗତ ଜୀବନର ସମୃଦ୍ଧି କେବଳ ଶିକ୍ଷାର ଲକ୍ଷ୍ୟ ନୁହେଁ ଏଥି ସହିତ ସାମାଜିକ ଜୀବନ ଏବଂ ରାଷ୍ଟ୍ରୀୟ ଜୀବନର ବିକାଶ ମଧ୍ୟ ଏକାନ୍ତ ଜରୁରୀ । ଏହା ଶୁଣିଲେ ପ୍ରବଚନ ପରି ଲାଗିବ, ମାତ୍ର ଏହା ପ୍ରବଚନ ନୁହେଁ, ଏହା ବାସ୍ତବତା । ଆମେ ଏସବୁ କଥା ଜାଣି ନାହୁଁ, ତେଣୁ ଆମକୁ ପ୍ରବଚନ ପରି ଲାଗିବା ସ୍ୱାଭାବିକ । ଜଣେ ବ୍ୟକ୍ତିର ଅତିକମ୍‌ରେ ତିନିଗୋଟି ଜୀବନ ଅଛି ଯଥା-ବ୍ୟକ୍ତିଗତ ଜୀବନ, ସାମାଜିକ ଜୀବନ ଏବଂ ରାଷ୍ଟ୍ରୀୟ ଜୀବନ- ଏକଥା ଆମେ ଜାଣି ନାହୁଁ, ଜଣାଇବୁ କ'ଣ ?

ଆମ ଭିତରୁ ବହୁଲୋକ ଜାଣନ୍ତି ଯେ ମଣିଷର ଗୋଟିଏ ମାତ୍ର ଜୀବନ ଅଛି ତାହା ହେଉଛି ବ୍ୟକ୍ତିଗତ ଅର୍ଥାତ ଅହଂଗତ ବ୍ୟକ୍ତିଗତ ଜୀବନ । ଅନ୍ୟ କେତେ ଦେଶରେ ଏକାଧିକ ଜୀବନ ସଂପର୍କରେ ବହୁଲୋକଙ୍କର ବହୁତ ଧାରଣା ରହିଛି । ବିଶେଷତଃ ପିତାମାତାଙ୍କର ରହିଛି ଯାହା ଆମ ଦେଶରେ ନାହିଁ । ଆମ ଦେଶରେ ବଡ଼ କଥାଟି ହେଉଛି 'ମୁଁ' 'ମୋର' । ପିଲାଟିଏ ଆରମ୍ଭରୁ ଦେଖିଲା, ଶୁଣିଲା ଓ ଶିଖିଲା ଏଇ 'ମୁଁ' ମୋର । ସେ ଅହଂକାରୀ

ଆପଣା ସୁଖୀ ମଣିଷଟିଏ ନହୋଇ ଆଉ ହବ ବା କ'ଣ ? ଏଥିରେ ଦୋଷ ଦେବା କାହାକୁ ପିଲାକୁ ନା ଆଉ କାହାକୁ ?

ଘରେ, ଶିକ୍ଷାନୁଷ୍ଠାନରେ ବା ବାହାରେ କେଉଁଠି ହେଲେ ସମାଜର ବିକାଶ, ରାଷ୍ଟ୍ରର ବିକାଶ ସହ ଯୋଡ଼ା ହେଲା ନାହିଁ ଜୀବନ । ଫଳରେ ସାମାନ୍ୟ ସାମାନ୍ୟ କଥାରେ ରାସ୍ତାରୋକ, ରେଳରୋକ, ଅନୁଷ୍ଠାନର ଭଙ୍ଗାରୁଜା ନ କରି ଆଉ କରନ୍ତେ କ'ଣ ପିଲାମାନେ ? ତାଙ୍କୁ ପିଲାଟି ଦିନରୁ 'ଏ ଆମଦେଶ', 'ଏ ଆମଦେଶର ସଂପତ୍ତି' ବୋଲି ମଣେଇ ଥିଲେ ସେମାନେ ଦେଶର ସଂପତ୍ତି ନଷ୍ଟ କରନ୍ତେ ନାହିଁ । ସମାଜ ପ୍ରତି ତଥା ଦେଶ ପ୍ରତି ମମତ୍ୱବୋଧ ତାଙ୍କ ଭିତରେ ସ୍ୱତଃ ଆସନ୍ତା ।

ଆଉ ଗୋଟିଏ କଥା ହେଉଛି ପିଲାଦିନରୁ ପିଲାଟିକୁ ବସ୍ତୁବିଳାସୀ କରି ଦେବାରୁ ସେ ଟିକିଏ ଅଭାବ ବା ଅସୁବିଧାକୁ ସହ୍ୟ କରିପାରୁନାହିଁ । ଟିକିଟିକି କଥାରେ ବିଦ୍ରୋହ କରି ପିତାମାତା ଏବଂ ଅଭିଭାବକମାନଙ୍କୁ ଅତିଷ୍ଠ କରି ପକାଉଛି । ଜୀବନର ବାସ୍ତବତାର ସମ୍ମୁଖୀନ ହୋଇପାରୁ ନାହିଁ । ଅନ୍ୟମାନଙ୍କ ସହିତ ବସ୍ତୁର ପରିମାଣ, ବହୁ ସୁବିଧା ସୁଯୋଗକୁ କେନ୍ଦ୍ରକରି ବିଚଳିତ ହୋଇପଡୁଛି । ଏଇ ବିଚଳିତ ଭାବର ଫଳଶ୍ରୁତି ହେଉଛି ଆସକ୍ତି, ବିରକ୍ତି, କ୍ରୋଧ ସର୍ବୋପରି ହୀନମଣ୍ୟ ଭାବ । ଶୁଣି ଶୁଣି ସେ କଥା କହିବାକୁ ଅନେକ ଉପାଦାନ ପାଉଛି । ମାତ୍ର କଥା କହିବାର କଳା ସମ୍ବନ୍ଧରେ କେହି ତାଙ୍କୁ ଶିଖାଇନଥିବାରୁ ସେ ସ୍ଥାନକାଳ ପାତ୍ର ଅନୁସାରେ କଥା କହିପାରୁନାହିଁ । କଥାର ବାଗ ନଥିବାରୁ ସେ ଅନ୍ୟମାନଙ୍କ ଦ୍ୱାରା ଆଦୃତ ହେଉନାହିଁ ।

ଅନ୍ୟମାନେ ତାକୁ ଆଦର କରୁନାହାନ୍ତି, ଯଥା ଯୋଗ୍ୟ ସମ୍ମାନ ଦେଉନାହାନ୍ତି ବୋଲି ସେ ଅଭିଯୋଗ କରୁଛି । ସେ ଜାଣିପାରୁନାହିଁ ଯେ ସମସ୍ୟାଟି ଆଉ କେଉଁଠାରେ ନାହିଁ, ରହିଛି ନିଜ ଭିତରେ । ଅନ୍ୟକୁ ଆଦର ନ କଲେ ଆଦର ମିଳେ ନାହିଁ, ଅନ୍ୟକୁ ଯଥାଯୋଗ୍ୟ ମାନ୍ୟତା ନ ଦେଲେ ମାନ୍ୟତା ମିଳେ ନାହିଁ । ଏକଥା କିଏ କାହାକୁ ବୁଝାଇବ ଅଥବା କିଏ ଅବା ବୁଝିବ ? ଜୀବନର ବାସ୍ତବତା ଅଥବା ଜୀବନରେ ବାସ୍ତବତା ସମ୍ବନ୍ଧରେ କିଛି ଜ୍ଞାନ ରହୁନାହିଁ । ଟିକିଏ କଥାରେ ତ ପିତାମାତା ଅଥବା ଅଭିଭାବକଙ୍କର ମଥା ଗରମ ହୋଇଯାଉଛି । ବିରକ୍ତି ଓ କ୍ରୋଧରେ ଦେହ ଥରିଯାଉଛି । ସେମାନେ ତ କ୍ରୋଧରେ ଅଣଆୟତ୍ତ ହୋଇଯାଉଛନ୍ତି । ଆଉ ଅନ୍ୟକୁ ଆୟତ୍ତ କରିବେ କିପରି ?

ଅଭିଭାବକଙ୍କଠାରେ ଅନ୍ୟମାନଙ୍କ ପ୍ରତି ଈର୍ଷା ପ୍ରବଳ ରହୁଛି, ପିଲାଟିଏ ଘରେ ସେହି ଈର୍ଷାର ପ୍ରଭାବରେ ପ୍ରଭାବିତ ହୋଇଯାଉଛି । ଫଳସ୍ୱରୂପ ସେ ହିଂସ୍ର, ଈର୍ଷାଳୁ, କ୍ରୋଧୀ ଓ ସୁବିଧାବାଦୀ ଯନ୍ତ୍ରଟିଏରେ ପରିଣତ ହୋଇଯାଉଛି । ବେଳେବେଳେ ଅତ୍ୟଧିକ

ଉଚ୍ଚାଭିଳାଷତାକୁ ବିଚଳିତ ଓ ବିଭ୍ରାନ୍ତ କରି ଦେଇଛି । ଉଚ୍ଚାଭିଳାଷ ରହୁ ମାତ୍ର ତାହା କାମନାବାସନାରେ ପରିଣତ ନ ହେଉ ।

ଆଜିର ଯୁବକ ଟିକିଏ କଥାରେ ଅଧୈର୍ଯ୍ୟ, ବିରକ୍ତ, ହିଂସ୍ର ହୋଇଯାଉଛି । ସମସ୍ତେ ନୁହନ୍ତି ମାତ୍ର ବେଶ୍ ଅଧିକ ସଂଖ୍ୟାରେ ଯୁବକ ଟିକିଏ ଟିକିଏ କଥାରେ ଉତ୍ତେଜିତ ହୋଇପଡୁଛନ୍ତି । ଉତ୍ତେଜନାର ବଶବର୍ତ୍ତୀ ହୋଇ ହିତାହିତ ଜ୍ଞାନ ହରାଇ ବସୁଛନ୍ତି । ପାଟିରେ ତ ଅଶ୍ଲୀଳଶବ୍ଦ ବସା ବାନ୍ଧିଛି ଆଉ ଉତ୍ତେଜିତ ହୋଇଗଲେ ଅବସ୍ଥା ଅସମ୍ଭାଳ । ସମସ୍ୟାର ସମାଧାନ ସିନା କେଉଁ କାଳେ ବ୍ୟକ୍ତିତ୍ୱର ଚିହ୍ନ ଥିଲା ଆଜିକିନ୍ତୁ ସମସ୍ୟା ସୃଷ୍ଟି କରିବା ହୋଇଛି ବୀରତ୍ୱର ଚିହ୍ନ । ଅଭାବ ପ୍ରକୃତରେ କେଉଁଠି ରହୁଛି ତାହା ଅନୁଧ୍ୟାନ କରିବାର ସମୟ ଆସିଛି । କେବଳ ଅନୁଧ୍ୟାନ ନୁହେଁ, ଅଭାବ ଦୂର କରିବାପାଇଁ ପ୍ରଯତ୍ନ କରିବାର ସମୟ ମଧ୍ୟ ଆସିଛି ।

❑❑

# ବଡ଼ଥିଲେ ପଋରି

ଓଡ଼ିଆରେ ଗୋଟିଏ କଥା ଅଛି–'ବଡ଼ ଥିଲେ ପଋରି, ସାନଥିଲେ ବିଋରି । ଏଥିରୁ ଏକଥା ବୁଝି ହେଉଛି ଯେ କିଛି ଗୋଟାଏ ନିଷ୍ପତ୍ତି ନେବା ଆଗରୁ କାହା ସହିତ ଟିକିଏ ପରାମର୍ଶ ଲୋଡ଼ା ହୁଏ । ବଡ଼ଥିଲେ ପଋରିବାକୁ ପଡ଼େ । ଏଠାରେ ମନରେ ଏକ ପ୍ରଶ୍ନ ଆସେ ଯେ ବଡ଼ କିଏ ? ବୟସରେ ଯିଏ ଆମଠାରୁ ବଡ଼ ନା ଜ୍ଞାନରେ ଯିଏ ଆମଠାରୁ ବଡ଼ ? ଉତ୍ତରରେ କୁହାଯିବ ଯେ ଉଭୟ କଥାକୁ ଆମେ ବଡ଼ ବୋଲି ବିଋର କରିବା ।

ବୟସରେ ଯିଏ ବଡ଼ ଅର୍ଥାତ୍ ଯିଏ ଆମଠାରୁ ପୂର୍ବରୁ ପୃଥିବୀକୁ ଆସିଛନ୍ତି, ସେମାନଙ୍କର ଜୀବନ ବିଷୟରେ ଆମଠାରୁ ଅନୁଭୂତି ଅଧିକ ଥିବା ସ୍ୱାଭାବିକ । ତାଙ୍କର ଡିଗ୍ରୀ ଅଧିକ ଥାଉ କି ନଥାଉ ସେଥିରେ କିଛି ଯାଏ ଆସେ ନାହିଁ । ବାସ୍ତବିକ ଜୀବନର ସାର୍ଥକତା ଥାଏ ଅଭିଜ୍ଞତାରେ । ଅଭିଜ୍ଞତା ହେଉଛି ଅନୁଭୂତିର ଶ୍ୟାମଳ ସାରାଂଶ । ପଞ୍ଚଇନ୍ଦ୍ରିୟ ମାଧ୍ୟମରେ ଆସେ ଅନୁଭୂତି । ସେହି ଅନୁଭୂତିର ସାର ନିର୍ଯ୍ୟାସ ଅଭିଜ୍ଞତା ଆକାରରେ ମନରେ ରହିଯାଏ । ତାହା ଶିଳାଲେଖ ପରି ଖୋଦିତ ହୋଇ ରହିଯାଏ, ସହଜରେ ଲିଭେ ନାହିଁ । ଧନରମାପରେ ଅଭିଜ୍ଞତାକୁ ମାପିହୁଏ ନାହିଁ କିମ୍ବା କ୍ଷମତାର ମାପରେ ଅଭିଜ୍ଞତାକୁ ମାପିହୁଏ ନାହିଁ । ସେ ଅଭିଜ୍ଞତା ନିଜର ଓ ଅନ୍ୟମାନଙ୍କର ଉପକାରରେ ଅଧିକ ଆସେ । ଅନ୍ୟମାନେ ତାହାଦ୍ୱାରା ଅଧିକ ଉପକୃତ ହୁଅନ୍ତି । ମାତ୍ର ଏହା 'ମାଗି ଓଳଗି, ଯାଚି କଲ୍ୟାଣ'ର କଥା ନୁହେଁ । ଏଥିପାଇଁ ଆବଶ୍ୟକ ଶ୍ରଦ୍ଧା, ଗ୍ରହଣଶୀଳତା ଓ ଆନ୍ତରିକତା ।

ଅଭିଜ୍ଞତା ଅମୂଲ୍ୟରତ୍ନଠାରୁ ଆହୁରି ମୂଲ୍ୟବାନ । ସେ ମୂଲ୍ୟକୁ କଳନା କରିହେବ ନାହିଁ । ଚଲାବାଟରେ କେଉଁଠି ଖାଲ ଢିପ ଅଛି, କଣ୍ଟାଝଣ୍ଟା ଅଛି, ଆଗରୁ ଋଲିଥିବା

ଲୋକଟି ଜାଣିଥାଏ । ଶୁଣି କରି ଜାଣିଥାଏ ଅଥବା ଝୁଣ୍ଟି କରି ଜାଣିଥାଏ । ଯେଉଁ ପ୍ରକାରେ ଜାଣିଥାଉ ପଛକେ ତା'ର ଅଭିଜ୍ଞତା ବଳରେ ଅନ୍ୟଲୋକର ବାଟ ଚାଲିବା ଟିକିଏ ସହଜ ହୁଏ ।

କବି ରାଧାନାଥଙ୍କ ଭାଷାରେ-'ସବୁଠାରୁ ମୁହିଁ କଳୁଛି ଅଧିକ/ସବୁଠାରୁ ଯେଣୁ ହଲୁଛି ଅଧିକ । ଅବଶ୍ୟ ଏ ଦିଗରେ ଆଉ ଗୋଟିଏ କଥା ଜାଣିବା ପାଇଁ ଅଛି । କଥାଟି ହେଉଛି-'ମାନିଲେ ଈଶ୍ୱର, ନମାନିଲେ ପଥର ।'

ବୟସରେ ବଡ଼ ନ ହୋଇ ଆମଠାରୁ କୌଣସି ଏକ ନିର୍ଦ୍ଦିଷ୍ଟ ଦିଗରେ ଆମଠାରୁ ଅଧିକ ଜାଣିଥିବା ବ୍ୟକ୍ତିକୁ ମଧ୍ୟ ଆମେ ବଡ଼ ବୋଲି ଗ୍ରହଣ କରି ତାଙ୍କୁ ପଚାରିବାରେ କିଛି ଅସୁବିଧା ନାହିଁ । ଜ୍ଞାନର ସୀମା ନାହିଁ, ଜ୍ଞାନ କ୍ଷେତ୍ରରେ ବଡ ସାନ ଭେଦ ନାହିଁ । ଯେତେ ଜାଣିଲେ ଆହୁରି ଜାଣିବାକୁ ବାକି ରହେ, ଯେତେ ବୁଝିଲେ ଆହୁରି ବୁଝିବାକୁ ବାକିଥାଏ । କୌଣସି ଏକ ବୈଜ୍ଞାନିକ ଜ୍ଞାନ କୌଶଳ ହେଉ ଅଥବା ତତ୍ତ୍ୱ କିମ୍ବା ତଥ୍ୟ ହେଉ, ତାହା ଜାଣିବା ପାଇଁ ବୁଝିବା ପାଇଁ ବଡ଼ ସାନ ଭେଦ ନାହିଁ । ସାନବଡ଼ ନିର୍ବିଶେଷରେ ସମସ୍ତଙ୍କଠାରୁ ଶିଖିବାର ଅଛି । ବୟସ ସେଠାରେ ବଡ଼ କଥା ନୁହେଁ, ଜ୍ଞାନ ସେଠାରେ ବଡ଼ କଥା । ଶିଖିବା ଓ ଶିଖାଇବା, ଜାଣିବା ଓ ଜଣାଇବା ଏବଂ ବୁଝିବା ଓ ବୁଝାଇବାପାଇଁ କୌଣସି ବୟସର ସୀମା ନଥାଏ । ଶିଖିବା, ଜାଣିବା ଓ ବୁଝିବା ଆଦୌ ଲାଜର କଥା ନୁହେଁ । ଶିଖି ନାହିଁ ବୋଲି ତ ଶିଖିବ, ଜାଣି ନାହିଁ ବୋଲି ତ ଜାଣିବ, ବୁଝି ନାହିଁ ବୋଲି ତ ବୁଝିବ, ଏଥିରେ ଅସୁବିଧା କେଉଁଠି ?

ଜାଣିବା ପାଇଁ ତ ଜୀବନ ଆସିଛି । ଜୀବନର ସାର୍ଥକତା ନିହିତ ଅଛି ଜାଣିବାରେ । ଅବଧୂତ ତ ଜାଣିବାପାଇଁ ଚବିଶଗୁରୁ କରିଥିଲେ । ଯାହାଠାରେ ଯେଉଁ ଭଲକଥାଟି ଅଛି ଯାହା ଶିକ୍ଷଣୀୟ,ତାହାକୁ ଶିଖିବାରେ କୁଣ୍ଠା ରହିବା ଉଚିତ ନୁହେଁ । ମାତ୍ର ସାଧାରଣ ଜୀବନରେ ଏପରି ଘଟେ ନାହିଁ । ଏହାର ଓଲଟା କଥାଟି ଘଟେ । ଆମଠାରୁ ଅଧିକ ଜାଣିଥିବା ଓ ବୁଝିଥିବା ଲୋକଙ୍କୁ ଆମେ ସହ୍ୟ କରିପାରୁନା, ଈର୍ଷାକରୁ । ତା'ର ପ୍ରତିଭା ସ୍ୱୀକାରଯୋଗ୍ୟ ହେଲେ ମଧ ଆମେ ସ୍ୱୀକାର କରୁନା । ଆମ ମନରେ ଭୟଥାଏ ଯେ ତାକୁ ଆମେ ଯଦି ସ୍ୱୀକାର କରିବା ତେବେ ଆମେ କାଳେ ସାନ ହୋଇଯିବା । ଆମେ କେତେବେଳେ ହେଲେ ସାନ ହେବାକୁ ଚାହୁଁନା । ସବୁବେଳେ ସବ୍‌ଜାନତା ହୋଇ ରହିବାକୁ ଚାହୁଁ । ଏହା ହେଉଛି ଅହଂକାରର କରାମତି । ଅହଂକାର ମନକୁ ସ୍ଫୀତ କରାଏ । ମନରେ ବୃଥା ବଡ଼ିମା ସୃଷ୍ଟି କରେ, ନିଜକୁ ଅନ୍ୟମାନଙ୍କଠାରୁ ଅଲଗା ବୋଲି ବିଚାର ଆଣେ ।

ଅହଂକାରର ଫଳସ୍ୱରୂପ ବଡ଼ମାନଙ୍କୁ କିଛି ପଚାରି ହୁଏନା କିମ୍ବା ସାନମାନଙ୍କ ସହ କିଛି ବିଚାରି ହୁଏନା । ଚଲାବାଟରେ ବାରମ୍ବାର ଝୁଣ୍ଟିବାକୁ ହୁଏ । ଝୁଣ୍ଟିଲେ ବାଟକୁ

ଦୋଷ ଦେଇ ମନକୁ ବୁଝାଇବାକୁ ପଡ଼େ । ବାଟକୁ ଦୋଷ ଦେଇ ଦେଇ ବାଟ ସରିଯାଏ, ଦେହ ଓ ମନରେ କ୍ଳାନ୍ତି ଭରିଯାଏ ।

ଶିକ୍ଷାର ଅନ୍ୟ ନାମ ଜୀବନ ଏବଂ ଜୀବନର ଅନ୍ୟନାମ ଶିକ୍ଷା । ଶ୍ରୀ ଅରବିନ୍ଦଙ୍କ ମତରେ-'ସମଗ୍ର ଜୀବନ ହିଁ ଶିକ୍ଷା ।' ଏଇ ଶିକ୍ଷାର କେତେକ ଉତ୍ସ ଭିତରୁ ବଡ଼ମାନଙ୍କଠାରୁ ପଚାରି ଜାଣିବା ଅନ୍ୟତମ । ବୟସରେ ସାନହେଲେ ମଧ୍ୟ ଅନ୍ୟଠାରୁ ପଚାରି ଜାଣିବା ହେଉଛି ଶିକ୍ଷାର ଅନ୍ୟତମ ଉତ୍ସ ।

ଏଥିପାଇଁ ସବୁଠାରୁ ବଡ଼ କଥାଟି ହେଉଛି ଜିଜ୍ଞାସା ଯାହାର ଅର୍ଥ କେବଳ ଜାଣିବାର ଇଚ୍ଛା ନୁହେଁ, ବୁଝିବାର ଇଚ୍ଛା ମଧ୍ୟ । ଯାହାର ଜିଜ୍ଞାସା ଯେତେ ଅଧିକ ତା'ର ସଚେତନତା ସେତେ ଅଧିକ । ଅନ୍ୟଠାରୁ ଶିଖିବାର ଇଚ୍ଛା ସୃଷ୍ଟି ହୁଏ ଅନ୍ୟକୁ ଅନୁମୋଦନ କରିବା ଦ୍ୱାରା । ଯାହାର ଅନ୍ୟପ୍ରତି ଅନୁମୋଦନ ନାହିଁ ସେ ଆଦୌ ବିଶେଷ କିଛି ଶିଖିପାରିବ ନାହିଁ । ଅନ୍ୟକୁ ଗୁରୁତ୍ୱ ଦେଲେ ଅନ୍ୟ ପ୍ରତି ଅନୁମୋଦନ ଭାବ ସୃଷ୍ଟି ହୁଏ । 'ତୃଣାଦପି ସୁନୀଚେନ' ନୁହେଁ ବରଂ ମନୋଭାବଟିଏ ଏହିପରି ରହିବା ଉଚିତ ଯେ ମୁଁ କିଛି ଜାଣିଛି, ଅନ୍ୟମାନେ ମଧ୍ୟ କିଛି କିଛି ଜାଣିଛନ୍ତି । ଯାହା ମୁଁ ଜାଣିନାହିଁ, ତାହା ଅନ୍ୟମାନଙ୍କଠାରୁ ଜାଣିବି । ଶିଖିବାରେ ଆନନ୍ଦ ଅଛି ଆତ୍ମସନ୍ତୋଷ ରହିଛି । ପାରସ୍ପରିକତା ଏଇ ଶିଖିବା ଶିଖେଇବା, ବୁଝିବାବୁଝେଇବାରୁ ହିଁ ବଢ଼ିଥାଏ । ଯେତେକଥା ପୃଥିବୀକୁ ଆସିଛି ସେ ସବୁ କଥା ଶିଖି ଶିଖାଇବା, ବୁଝି ବୁଝାଇବା ବାଟ ଦେଇ ଆସିଛି । ଜଣକର ଅଭିଜ୍ଞତାରୁ ଆଉ ଜଣେ, ଆଉ ଜଣକରୁ ଆଉ ଜଣେ ଉପକୃତ ହୋଇଛନ୍ତି । ତା' ନହେଲେ ପ୍ରତ୍ୟେକ ନିଜ ନିଜ ଅଭିଜ୍ଞତାରୁ ସବୁକଥା ଶିଖିବାପାଇଁ ବର୍ଷ ପରେ ବର୍ଷ ଲାଗିଯାନ୍ତା ଅର୍ଥାତ ବହୁ ସମୟ ଲାଗିଯାନ୍ତା, ବହୁକଷ୍ଟ ଅଧିକ ହୁଅନ୍ତା ।

ଏ ଦିଗରୁ ବିଚାର କଲେ ଢଗଢମାଳି, ଲୋକଗୀତର ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସେଗୁଡ଼ିକ ଅନୁଭବ ସିଦ୍ଧ ଓ ଅଭିଜ୍ଞତା ଲବ୍ଧଜ୍ଞାନରେ ଭରପୂର । ସମୟ ଅନୁସାରେ ସବୁକଥା ଶତକଡ଼ା ଶହେ ଭାଗ ଗ୍ରହଣୀୟ ନହେଲେ ମଧ୍ୟ ବହୁକଥା ଏବେ ମଧ୍ୟ ଶିକ୍ଷଣୀୟ ହୋଇ ରହିଛି । ଏଇ ଯେମିତି-ବନ୍ଧୁ ଦେଖିଲେ ହସିବା/ଖଳ ଦେଖିଲେ ଖସିବ । ଏଇ ଯେମିତି-ଆଲୋ ସଖି ! ଆପଣା ମହତ ଆପେ ରଖି । ଏଇ ଯେମିତି-ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି । ଏଇ ଯେମିତି-ଅତିଲେମ୍ବୁ ଚିପୁଡ଼ିଲେ ପିତା ଇତ୍ୟାଦି ଇତ୍ୟାଦି ।

ଅତଏବ ବୟସ୍କ ଲୋକଙ୍କଠାରୁ ଅନୁଭୂତି, ସାନମାନଙ୍କଠାରୁ କିଛି ନୂଆ ତଥ୍ୟ ଏବଂ ଆମ ପୂର୍ବପୁରୁଷଙ୍କର ଅଭିଜ୍ଞତା ଲବ୍ଧ ଉକ୍ତି ଆମ ପାଇଁ ଅତ୍ୟନ୍ତ ଉପଯୋଗୀ । ଜୀବନର ଚଲାବାଟ ଏତେ ସହଜ ନୁହେଁ, ଅଙ୍କି ଝଟିଳ । ସେ ବାଟରେ ଯଥାଯଥ ଭାବରେ ଚାଲିବାକୁ ହେଲେ ଉପରୋକ୍ତ କଥାଗୁଡ଼ିକ ପ୍ରତି ଧ୍ୟାନ ଦେବା, ଏକାନ୍ତ ଆବଶ୍ୟକ, ଏଥିରେ ସନ୍ଦେହ ନାହିଁ ।

ଘଘ

# ଶ୍ରଦ୍ଧା ଓ ଜୀବନ

ଶ୍ରଦ୍ଧାକୁ ଏକ ବିଷୟ ଭାବରେ ଶିକ୍ଷାନୁଷ୍ଠାନମାନଙ୍କରେ ପଢ଼ାଯାଏ ନାହିଁ । ତେଣୁ ଛାତ୍ରଛାତ୍ରୀମାନଙ୍କୁ ଏ ବିଷୟରେ ଅଧିକ ଜାଣିବାର ସୁଯୋଗ ମିଳେ ନାହିଁ । ଯଦି କେଉଁ କାରଣରୁ ଶ୍ରଦ୍ଧା ସଂପର୍କରେ କିଛି କଥା ଶୁଣିବାକୁ ମିଳେ ତାହା ତାଙ୍କୁ ଅଡୁଆ ଲାଗେ କାରଣ ତାହା ତାଙ୍କର ପାଠରେ ନ ଥାଏ କି ପରୀକ୍ଷାରେ ପ୍ରଶ୍ନ ରୂପେ ପଡ଼ିବାର ସମ୍ଭାବନା ନ ଥାଏ । ଯେଉଁ ବହିରେ ଏଇ ଶବ୍ଦ ଥାଏ, ସେଇ ବହିକୁ 'ଧର୍ମ ବହି' କହି ସେମାନେ ଆଡ଼େଇ ଦେଇ ଥାଆନ୍ତି ଓ କହିଥାଆନ୍ତି ଯେ ଏହା ସବୁ ବାର୍ଦ୍ଧକ୍ୟର ବହି, ବୟସ୍କଲୋକମାନେ ଏହାକୁ ପଢ଼ିବା କଥା । ବହୁ ଅମୂଳକ, ଅଯୁକ୍ତିଯୁକ୍ତ କାହାଣୀରେ ସେ ବହି ସବୁ ଭର୍ତ୍ତି ବୋଲି ସେମାନଙ୍କ ଧାରଣା । ପଢ଼ିବା ତ ଦୂରର କଥା, ଏସବୁ ବହି ବିଷୟରେ କିଛି ଶୁଣିବା ଓ ଜାଣିବାରେ ଯୁବପୀଢ଼ିର ଏକ ଭୟ ଥାଏ, ଭୟଟି ହେଉଛି କାଳେ କିଏ ଆମକୁ ବାବାଜୀ କରିଦେବେ, କାରଣ ଏହି ବହିରେ ଥିବା ପାଠରେ ଖାଲି ବାବାଜିଆ କଥା ଅଛି । ବାସ୍ତବରେ ଏ ଭୟ ନିତାନ୍ତ ଅମୂଳକ ।

ପରିତାପର ବିଷୟ ଯେ କିଏ ତାଙ୍କୁ ଏହା କେତେବେଳେ କେମିତି ବୁଝାଇ ଦେଲା, ବତାଇଦେଲା ଜାଣି ହେଲା ନାହିଁ । କିଏ ବତାଇ ଦେଲା ଜୀବନକୁ ଉପରେ ଉପରେ ଜୀଇଁବା ପାଇଁ, ଜୀବନ ଆସିଛି ଉପଭୋଗ ପାଇଁ ଏବଂ ଉପରେ ଉପରେ ଭାସିବା ପାଇଁ । ଯୁବଶକ୍ତି ଫଳତଃ ସବୁକଥାକୁ ଉପରୁ ଦେଖୁଛି, ଉପରୁ ବୁଝୁଛି, ଆଉ ଉପରେ ଉପରେ ହାଲକା ହାଲକା ସ୍ୱପ୍ନ ରାଜ୍ୟରେ ଉଡ଼ି ବୁଲୁଛି । ବାହାରେ ଢେର ବୁଲୁଛି, ବୁଲିବୁଲି ହାଲିଆ ହୋଇଯାଉଛି । ବିବ୍ରତ ହୋଇଯାଉଛି ପୁଣି ଶେଷରେ ବିରକ୍ତ

ହୋଇଯାଉଛି । ପ୍ରକୃତରେ ନିଜ ଉପରେ ବିରକ୍ତ ହେଉଛି, ଜାଣି ନ ପାରି ଅନ୍ୟ ଉପରେ ବିରକ୍ତ ହେଉଛି, ଦୋଷ ଲଦୁଛି । ବାସ୍ତବରେ ଦୋଷଟି କେଉଁଠି ତାହା ଜାଣିପାରୁ ନାହିଁ । ଆଉ ଯଦିବା ଜାଣୁଛି ତାହା ବହୁ ଡେରିରେ ଜାଣୁଛି । ସେ ଜାଣିବା ନ ଜାଣିବା ସାଙ୍ଗରେ ସମାନ ହୋଇଯାଉଛି ।

କେବଳ ଦୋଷ ନୁହେଁ, ଅନ୍ୟକୁ ଆଘାତ ଦେବାକୁ ମଧ ପଛାଉ ନାହିଁ । ଜାଣିପାରୁ ନାହିଁ ଯେ ଅନ୍ୟକୁ ଆଘାତ ଦେଲେ, କଷ୍ଟ ଦେଲେ ଅନ୍ୟ ଯେତିକି ଆଘାତ ବା କଷ୍ଟ ପାଏ, ନିଜକୁ ତହିଁରୁ ବହୁଗୁଣ ଆଘାତ ବା କଷ୍ଟ ମିଳେ ବୋଲି । ଚାଲି ନ ଜାଣି ବାଟର ଦୋଷ ଦେଇ ଦେଇ ସମୟ ଚାଲିଯାଏ, ବସନ୍ତ ସମୟ ଚାଲିଯାଏ । ଆସେ ଦାରୁଣ ଗ୍ରୀଷ୍ମ, ନିଆଁ ପବନର ତାତି, ଅଂଶୁଘାତର କଷ୍ଟ, ଭାରି କଷ୍ଟ ଲାଗେ, ରହିହୁଏ ନାହିଁ କି ସହି ହୁଏ ନାହିଁ ।

ଏ ସବୁ ସମସ୍ୟାର ମୂଳ କାରଣ ହେଉଛି ଆମର ଗୋଟିଏ ଭିତର ଜୀବନ ଅଛି, ଏକଥା ନ ଜାଣିବା । ଭିତର ଜୀବନ ହେଉଛି ବିଚାରର ଜୀବନ, ବିବେକର ଜୀବନ, ସଚେତନତାର ଜୀବନ ସର୍ବୋପରି ଶ୍ରଦ୍ଧାର ଜୀବନ । ଏପରି କହି ବାହାର ଜୀବନକୁ ଅଦରକାରୀ ବୋଲି କୁହାଯାଉ ନାହିଁ । କୁହାଯାଉଛି ବାହାର ଜୀବନ ସହିତ ଭିତର ଜୀବନକୁ ମିଶାଇ ଜୀବନକୁ ତିଆରି କରିବା ପାଇଁ । ଧର୍ମଶାସ୍ତ୍ର ମାନ ପଢ଼ିବା ପାଇଁ ଘଣ୍ଟା ଘଣ୍ଟା ସମୟ ଦେବା କଥା ପଡ଼ି ନାହିଁ । ପ୍ରତ୍ୟେକ ଧର୍ମଶାସ୍ତ୍ରର ଯାହା ସୂକ୍ଷ୍ମ ସାରାଂଶ ସେହି କଥାକୁ ଜାଣି ଜୀବନରେ ପ୍ରୟୋଗ କରିବା କଥା ପଡ଼ିଛି । ସେହି ସାରାଂଶଟି ଭିତର ଜୀବନର ମୂଳକଥା । ଶ୍ରଦ୍ଧା ସେହିପରି ଏକ ଶାସ୍ତ୍ରୀୟ ସୂକ୍ଷ୍ମ ସାରାଂଶ ।

କେବଳ ଯୁବପୀଢ଼ି ନୁହେଁ ଆମ ସମସ୍ତଙ୍କ ପାଇଁ ଏଇ 'ଶ୍ରଦ୍ଧା'ର ଆବଶ୍ୟକତା ରହିଛି । ଶ୍ରଦ୍ଧାରୁ ଆସେ ଜ୍ଞାନ ଏବଂ ଜ୍ଞାନରୁ ଦୟା, କ୍ଷମା, ସହନଶୀଳତା, ଏକାତ୍ମତା ସର୍ବୋପରି ଏକତା ଆସିଥାଏ । ଶ୍ରଦ୍ଧାରୁ ମିଳେ ଆନନ୍ଦ । ଶ୍ରଦ୍ଧା ଓ ଆନନ୍ଦ ହେଉଛି ଗୋଟିଏ ମୁଦ୍ରାର ଦୁଇ ପାଖ । ଯେଉଁଠାରେ ଶ୍ରଦ୍ଧା, ସେଇଠାରେ ଆନନ୍ଦ ପୁଣି ଯେଉଁଠାରେ ଆନନ୍ଦ ସେଇଠାରେ ଶ୍ରଦ୍ଧା ଥାଏ । ଏଠାରେ ସୁଖ କଥା ପଡ଼ି ନାହିଁ । ସୁଖ ଓ ଆନନ୍ଦ ଭିନ୍ନ କଥା, ଆଦୌ ଏକା କଥା ନୁହେଁ । ସଭିଙ୍କୁ ଶ୍ରଦ୍ଧା କରିବାରେ ଅସୀମ ଆନନ୍ଦ ମିଳେ । ଗଛପତ୍ର, ପଶୁପକ୍ଷୀ, ମାଟି ଆକାଶ, ଚନ୍ଦ୍ର ତାରା, ପର୍ବତ ପ୍ରପାତ ସମସ୍ତେ ଶ୍ରଦ୍ଧାର ବଳୟରେ ଥାଆନ୍ତି ।

ମଣିଷ ପ୍ରତି ଶ୍ରଦ୍ଧାର ଚିହ୍ନ ହେଉଛି ଅନ୍ୟର ସୁଖରେ ସୁଖୀ ଓ ଅନ୍ୟର ଦୁଃଖରେ ଦୁଃଖୀ ହେବାର ମାନସିକତା । ନିଜକୁ ଅନ୍ୟ ସ୍ଥାନରେ ରଖିବା ଓ ଅନ୍ୟକୁ ନିଜ ସ୍ଥାନରେ ରଖିବାର ଭାବରୁ ଶ୍ରଦ୍ଧାର ଜନ୍ମ । ଶ୍ରଦ୍ଧାରେ ଭଙ୍ଗାମନ ଯୋଡ଼ି ହୁଏ, ହଜିଲା ଜିନିଷ

ହାତପାଆନ୍ତାରେ ମିଳିଯାଏ । ପାଖରେ ଫୁଲଗଛ ନ ଥିଲେ ମଧ ପେଣ୍ଟା ପେଣ୍ଟା ସଜଫୁଲ ମହମହ ବାସେ । ଝରା ଶ୍ରାବଣରେ ପିକ ମୂକ ହେଲେ ମଧ କୁହୁକୁହୁ ତାନ ଶୁଭେ । ଆହା ! ଶ୍ରଦ୍ଧାର ଶକ୍ତିର କଳନା ନାହିଁ କି ତୁଳନା ନାହିଁ । ସେ କଥାର କଥା ନୁହେଁ କି କବିର କଳ୍ପନା ନୁହେଁ, ସେ ଏକ ଲଳିତ ସୁନ୍ଦର ବିରଳ ଅନୁଭବ ।

ଆମେ ସାଧାରଣତଃ ଶ୍ରଦ୍ଧା ଜନିତ ଏ ଆନନ୍ଦ ପାଇପାରୁନା କାରଣ ଆମେ ଅନ୍ୟକୁ ଏକ ଗୁଣ ଶ୍ରଦ୍ଧା କରିବା ଅପେକ୍ଷା, ଅନ୍ୟଠାରୁ ବହୁଗୁଣ ଶ୍ରଦ୍ଧା ଚାହୁଁ । ତାହା ହିଁ ଭୁଲ ଧାରାର ଅଙ୍କକଷା । ସେ ଅଙ୍କକଷାରେ ଫଳ ଭୁଲ ହିଁ ଆସିଥାଏ । ଶ୍ରୀମାଙ୍କ ମତରେ, ''ତୁମେ ଅନ୍ୟଠାରୁ ଶ୍ରଦ୍ଧା ଚାହୁଁଛ, ତେଣୁ ତୁମକୁ ଏକୁଟିଆ ଲାଗୁଛି । ଥରେ ନିଃସର୍ତ୍ତ ଭାବରେ ଅନ୍ୟକୁ ଶ୍ରଦ୍ଧା କରି ଶିଖ, ଦେଖିବ ତୁମକୁ ଏକୁଟିଆ ଲାଗିବ ନାହିଁ ଏବଂ ସେ ଶ୍ରଦ୍ଧାରୁ ଯେଉଁ ଆନନ୍ଦ ମିଳିବ, ଜଗତରେ ତାହାର ପଟାନ୍ତର ନାହିଁ ।'' ଶ୍ରଦ୍ଧାର ସ୍ପର୍ଶରେ ସବୁ ସୁନ୍ଦର ହୋଇଯାଏ, ଜଗତ ଶ୍ରଦ୍ଧାମୟ ହୋଇଯାଏ, ଜୀବନ ଶ୍ରଦ୍ଧା ବିମଣ୍ଡିତ ହୋଇଯାଏ । ସେ ତ ଅୟସ୍କାନ୍ତ ମଣି, ଲୁହାକୁ ସୁନା କରିଦିଏ, ସେ ତ ଆକର୍ଷଣୀ ଚୁମ୍ବକ ଯାହା ଲୁହାକୁ ଆକର୍ଷଣ କରି ଆଣେ । ବାସ୍ତବରେ ଜୀବନକୁ ଧନ୍ୟ କରେ ଶ୍ରଦ୍ଧା, ଜୀବନକୁ ପୂର୍ଣ୍ଣ କରେ ଶ୍ରଦ୍ଧା ।

ବାହାର ଜୀବନ ସହିତ ମିଳିମିଶି ରହିପାରେ ଶ୍ରଦ୍ଧାର ଜୀବନ । ଧନ, ଜନ, ଯଶ, ଆରୋଗ୍ୟ ଏବଂ ମାନ ସମ୍ମାନ ସହିତ ଶ୍ରଦ୍ଧା ଏକାଠି ରହିପାରେ । ଏଥିପାଇଁ ଲୋଡ଼ା ଦୃଷ୍ଟିଭଂଗୀର ପରିବର୍ତ୍ତନ । ଦୃଷ୍ଟିଭଂଗୀ ବଦଳିଗଲେ ଦୃଶ୍ୟ ମଧ ବହୁଳାଂଶରେ ବଦଳିଯାଏ । ନଗଣ୍ୟ ପରି ଦିଶୁଥିବା ଅନ୍ୟ ଜଣକ ଅନନ୍ୟ ପରି ଦିଶନ୍ତି । ମୋ ପାଖରେ କିଛି ଭଲ କଥା ଥିଲା ବେଳେ ଅନ୍ୟମାନଙ୍କ ପାଖରେ ମଧ କିଛି ଭଲ କଥା ଅଛି ବୋଲି ମନରେ ବିଚାର ଆସେ ।

ବିଚାର ଆସିଲେ ଆଚାର ବା ଆଚରଣ ବଦଳିଯିବା ସ୍ୱାଭାବିକ ହୁଏ କାରଣ ବିଚାର ଉପରେ ଆଚରଣ ନିର୍ଭର କରିଥାଏ । ଆଚରଣ ବଦଳିଗଲେ ପ୍ରକୃତରେ ବଦଳିଯିବ ଆମ ଘରର ପରିବେଶ, ବଦଳିଯିବ ଆମ ବାହାରର ବାତାବରଣ । ଶ୍ରଦ୍ଧା ତ ସୁନାସୂତା, ମଣିଷ ସହିତ ବିଶ୍ୱପ୍ରକୃତିକୁ ମଧ ବାନ୍ଧି ଦେବ । ଗଛପତ୍ର ଆମକୁ ଅତି ଆପଣାର ଲାଗିବେ, ପଶୁପକ୍ଷୀ ଆମକୁ ନିଜର ଲାଗିବେ, ମାଟିରୁ ଆକାଶ ପର୍ଯ୍ୟନ୍ତ ସବୁ କିଛି ଆପଣାର ଆପଣାର ଲାଗିବେ । ଶ୍ରଦ୍ଧା ଆମ ପୃଥିବୀକୁ ସୁନ୍ଦର କରିବ । କଳହ ସେ ଧର୍ମ କଳହ ହେଉ କି ନାମ କଳହ ହେଉ କରପତ୍ର ଯୋଡ଼ି ଅପସରିଯିବ ଦୂରକୁ ଦୂରକୁ । ଦୂରେଇ ଯିବ ବାରୁଦର ଗନ୍ଧ, ଦୂରେଇ ଯିବ ବନ୍ଧୁକର ଶବ୍ଦ । ପାଖେଇ ଆସିବ ମଧୁମଲ୍ଲୀର ବାସ୍ନା,

ସଜ ସକାଳର ପଦ୍ମଫୁଲିଆ ସତେଜତା । ଦେଶ ଦେଶ ଭିତରେ ବଢ଼ିବ ବନ୍ଧୁତା, ମିତ୍ରପଣ ଆଉ ଅକୁଣ୍ଠ ସହଯୋଗିତା । ବିଶ୍ୱରେ ଅଭିଷିକ୍ତ ହେବ ଦେବ ଦୁର୍ଲଭ ମାନବିକତା । ବିଶ୍ୱଗ୍ରାମ ଗଠନର ସ୍ୱପ୍ନ ସେଦିନ ପୂର୍ଣ୍ଣ ଭାବରେ ସାକାର ହେବ, ବିଶ୍ୱ ଜୀବନ ସେଦିନ ପରିଣତ ହେବ କୁଟୁମ୍ବିକ ଜୀବନରେ ।

ଏସବୁ କଥାର ମୂଳ ଉପାଦାନଟି ହେଉଛି ଶ୍ରଦ୍ଧା । ଏ ଶ୍ରଦ୍ଧା ବିଶ୍ୱ ପ୍ରକୃତିରେ ଅଛି । ଶ୍ରଦ୍ଧାରେ ବହୁଛି ନଦୀ, ଝରୁଛି ଝରଣା, ନାଚୁଛି ମୟୂର, ଗାଉଛି କୋଇଲି । ଶ୍ରଦ୍ଧାମୟଙ୍କ ଶ୍ରଦ୍ଧାରେ ପ୍ରକୃତି ଆତଯାତ । ଶ୍ରଦ୍ଧା ଏକ ସାବଲୀଳ ଦିବ୍ୟ ବିଭୂତି । ଯେଉଁଦିନ ଏହି ଶ୍ରଦ୍ଧା ଆମ ଭିତରକୁ ଅଧିକରୁ ଅଧିକ ଆସିବ ସେଇଦିନ ଘରେ ବାହାରେ ଅମୃତର ବର୍ଷା ହେବ, ଏ ପୃଥିବୀ ହେବ ଦେବତାଙ୍କର ଲୀଳା ନଗରୀ ଓ ବିସ୍ତୃତ କ୍ରୀଡ଼ା ପ୍ରାନ୍ତର । ସେଇ ଦିନର ଅପେକ୍ଷାରେ ଆମେ ସମସ୍ତେ ।



# କୃତଜ୍ଞତାର ମର୍ମକଥା

କୃତଜ୍ଞତା ଏକ ଶବ୍ଦ ମାତ୍ର ନୁହେଁ, ଏକଭାବ, ଏକ ଗଭୀର ଅନୁଭବ । ଏହା ଅନ୍ୟ ପ୍ରାଣୀ ପାଖରେ ରହୁ କି ନରହୁ ମଣିଷ ପାଖରେ ରହିବା ବାଞ୍ଛନୀୟ । କାରଣ ମଣିଷର ମନ ଅଛି ଏବଂ କୃତଜ୍ଞତା ବହୁ ଭାବରେ ମନ ସହିତ ସଂଯୁକ୍ତ ଓ ସଂପୃକ୍ତ । ଜୀବନର ଚଲାପଥରେ ଆଉ କାହାର ଅହେତୁକ ଶ୍ରଦ୍ଧା, ସାହାଯ୍ୟ ଓ ସହଯୋଗ ପାଇଲେ ମନରେ ଯେଉଁ ଭାବାନ୍ତର ଆସେ ତାହାର ଅଭିବ୍ୟକ୍ତି ହିଁ କୃତଜ୍ଞତାର ଅନ୍ୟ ନାମ । ଅହେତୁକ କହିବାର ଅର୍ଥ ହେଉଛି ବିଶେଷ କିଛି ଲାଭର ଆଶା ଓ ଲାଳସା ନ ରଖି ସାହାଯ୍ୟ ସହଯୋଗ କରିବା । ମଣିଷ ପଣିଆର ପ୍ରଭାବରେ ପ୍ରଭାବିତ ହୋଇ ସହଯୋଗ କରିବା । ସାହାଯ୍ୟ ବା ସହଯୋଗଟି ଛୋଟ ହେଉ ବା ବଡ଼ ହେଉ, ସେଥିରେ କିଛି ଯାଏ ଆସେ ନାହିଁ, ଅସଲ କଥାଟି ହେଉଛି ତା' ପଛରେ ଥିବା ମନୋଭାବ । ଏପରି ମନୋଭାବ ପ୍ରସ୍ତୁତ ହୋଇଥାଏ ନୈତିକତା, ସଚେତନତା, ସହାନୁଭୂତି ପ୍ରଭୃତି ଉପାଦାନ ଦ୍ୱାରା । ଏ ତ ଗଲା ସହଯୋଗ କରିଥିବା ବ୍ୟକ୍ତିର ମନୋଭାବର କଥା । ବର୍ତ୍ତମାନ ଦେଖିବା ଏହାକୁ ଗ୍ରହଣ କରୁଥିବା ବ୍ୟକ୍ତିର କଥା । କୃତଜ୍ଞତା ଏହି ଗ୍ରହଣଶୀଳତାର ଅନୁପମ ଅଭିବ୍ୟକ୍ତି । ଏପରି ବ୍ୟକ୍ତି ଅଛନ୍ତି ଯେଉଁମାନେ ଅଯାଚିତ ସାହାଯ୍ୟ ଅହେତୁକ ସହଯୋଗ ଅଳ୍ପ ଟିକିଏ ପାଇଲେ ମଧ୍ୟ ବହୁ ପ୍ରକାରେ କୃତଜ୍ଞ ହୋଇଥାଆନ୍ତି । କୃତଜ୍ଞତା ସେମାନଙ୍କର ଅନ୍ତରରୁ ପ୍ରକଟିତ ସ୍ୱତଃସ୍ଫୁର୍ତ୍ତ ଭାବପ୍ରବାହ । ସେମାନଙ୍କୁ ଏଥିପାଇଁ ବତାଇବାକୁ ପଡ଼େ ନାହିଁ ଅଥବା ମହାବିଦ୍ୟାଳୟ/ ବିଶ୍ୱବିଦ୍ୟାଳୟକୁ ଯିବାକୁ ପଡ଼େ ନାହିଁ । ଡିଗ୍ରୀ, ଡିପ୍ଲୋମାର ଏହା ସହିତ କିଛି ସଂପର୍କ ନାହିଁ, ଏହା ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ । ପୁଣି ଏପରି ଲୋକ ଅଛନ୍ତି ଯେଉଁମାନେ

ଅନ୍ୟଠାରୁ ଉପକାର ପାଇଲେ ତାକୁ ସେମାନଙ୍କର ପ୍ରାପ୍ୟ ବୋଲି ବିଚାରିଥାନ୍ତି ଓ ଅଳ୍ପ ସମୟ ମଧ୍ୟରେ ଭୁଲି ଯାଇଥାନ୍ତି । ସେମାନେ ମନେ ମନେ ଅନ୍ୟମାନଙ୍କଠାରୁ ବଡ଼ ବୋଲି ନିଜକୁ ଭାବୁଥିବାରୁ ତାହା ଅନ୍ୟମାନଙ୍କର ତାଙ୍କ ପ୍ରତି ଅବଶ୍ୟ କର୍ତ୍ତବ୍ୟ ବୋଲି ବିଚାରିଥାନ୍ତି । ପୁଣି କେତେକ ଲୋକ ଅଛନ୍ତି ଯେଉଁମାନେ ଅନ୍ୟର ସାହାଯ୍ୟ ଉପକାରକୁ କାକତାଳୀୟ ନ୍ୟାୟ ଅଥବା ଆକସ୍ମିକ ଯୋଗାଯୋଗ ତଥା ଏକଏକ ଘଟଣା ବୋଲି ବିଚାରି ଥାନ୍ତି । କୃତଜ୍ଞତା ତ ଦୂରର କଥା ଗ୍ରହଣ କରିବାର ସାମାନ୍ୟ ସ୍ୱୀକୃତିର ଚିହ୍ନ ମଧ୍ୟ ସେମାନଙ୍କ ମନରେ ପ୍ରକଟିତ ହୁଏ ନାହିଁ, ମୁହଁରେ ପ୍ରକାଶ ପାଇବାତ ଦୂରର କଥା ।

ଖାଣ୍ଟି ମଣିଷ ପୁଣି ଭଲ ମଣିଷକୁ ଚିହ୍ନିବାକୁ କୃତଜ୍ଞତା ଏକ ମାନଦଣ୍ଡ, ଏହା ବହୁ ଆଗରୁ ଚିହ୍ନିତ ହୋଇଛି । ମନେ ପଡୁଛି କବିବର ରାଧାନାଥଙ୍କ ରଚନାରୁ ପଦେ ଅଧେ –

'ମହତ ଜନଠାରେ କରୁଣାକଲେ / ସେ କରୁଣା ନଯାଏ କେବେ ବିଫଳେ
ଆଶୁ ସୁଫଳ ଜାତ ନିଶ୍ଚେ ହୁଅଇ / ପୁଣି କରୁଣା ପ୍ରଭା ପ୍ରତିଫଳଇ ।'

ଏଠାରେ ଯେଉଁ ସହଯୋଗ, ସହାନୁଭୂତି ଓ ସାହାଯ୍ୟର କଥା କୁହାଯାଇଛି ତାହା କାର୍ଯ୍ୟଘେନା ପ୍ରୀତିର ଅନ୍ତର୍ଭୁକ୍ତ ନୁହେଁ । କାର୍ଯ୍ୟଘେନା ପ୍ରୀତିର ମୂଳ ଉପାଦାନ ହେଉଛି ସ୍ୱାର୍ଥ ହାସଲର ଅନ୍ତଃସଲିଳା ଫଲ୍‌ଗୁ ଧାରାର ମନୋବୃତ୍ତି । ବଡ଼ ଅଫିସରଙ୍କ ପ୍ରତି ତଳତଳିଆ କର୍ମଚାରୀଙ୍କର ସହଯୋଗ ମନୋବୃତ୍ତି ଆଦୌ ଅହେତୁକ ନୁହେଁ ବରଂ ଇଚ୍ଛାକୃତ । ଏଥିରେ ଭକ୍ତି ଥିଲାପରି ଲାଗେ ମାତ୍ର ତାହା ଭକ୍ତି ନୁହେଁ, ତାହା ହେଉଛି ଭୟଜନିତ ଆତ୍ମରକ୍ଷାର ପ୍ରବୃତ୍ତି, ସ୍ୱାର୍ଥସିଦ୍ଧିର ମାଧ୍ୟମ ।

ଆମର ସୃଷ୍ଟି, ସ୍ଥିତି ଓ ସମୃଦ୍ଧି ପାଇଁ ଯେଉଁମାନଙ୍କର ଓ ଯେଉଁ ଉପାଦାନ ସବୁର ଅବଦାନ ରହିଛି ସେମାନଙ୍କ ପ୍ରତି କୃତଜ୍ଞତା ଆମ ପାଇଁ ଏକାନ୍ତ ଜରୁରୀ, ଆମର ପରମ କର୍ତ୍ତବ୍ୟ । ପିତାମାତା ଆମକୁ ପୃଥିବୀକୁ ଆସିବାର ସୁଯୋଗ ଦେଇଛନ୍ତି, ଏଥି ସହିତ ଅସୀମ ଶ୍ରଦ୍ଧା, ଅଶେଷ ସ୍ନେହ ଅଜାଡ଼ି ଦେଇଛନ୍ତି । ଆମ ଓଠରେ ହସ ଟିକିଏ ଦେଖିବା ପାଇଁ କେତେ ଯତ୍ନ କରିଛନ୍ତି, ପରିଶ୍ରମ କରିଛନ୍ତି, ଦରକାର ପଡ଼ିଲେ ଧାର ଧାର ଅଶ୍ରୁ ନିଗାଡ଼ି ଦେଇଛନ୍ତି । ପାଇବାର ଆଶା କିଛି ନାହିଁ, କେବଳ ଦେବାର ଆନନ୍ଦ, ଆନନ୍ଦ ହିଁ ଆନନ୍ଦ । ନିଜ ବୟସ ଯିଏ ଗଣନ୍ତି ଆଉ ଆମ ବୟସ ଯିଏ ଗଣନ୍ତି ନାହିଁ ସେ ହେଉଛନ୍ତି ପିତାମାତା । ସେମାନଙ୍କ ପ୍ରତି ଆମର କୃତଜ୍ଞତା କିପରି ଓ କେତେ ତାହା ପାଠର ବିଷୟ ନୁହେଁ, ଆଲୋଚନାର ବିଷୟ ନୁହେଁ, ଅନୁଭବର ବିଷୟ, କେବଳ ଅନୁଭବର ବିଷୟ ।

ଭଗବାନଙ୍କ ପାଇଁ କୃତଜ୍ଞତା ଜଣାଇବା ନିମନ୍ତେ ପୃଥିବୀର ସମସ୍ତ ଭାଷା ଅକୁଳାଣ ହେବେ । ଆମର ଟିକିଏ ଖୁସିରେ ଯିଏ ବହୁତ ଖୁସି ହୁଅନ୍ତି ସେ ହେଉଛନ୍ତି ଭଗବାନ । ଆମ ମୁହଁ ଶୁଖିଗଲେ ଯାହାର ଅନ୍ତର ବିଦୀର୍ଣ୍ଣ ହୋଇଯାଏ, ସେ ହେଉଛନ୍ତି ଭଗବାନ ।

ସେ ଆମ ଭିତରେ ଅଛନ୍ତି, ଆମ ବାହାରେ ଅଛନ୍ତି, ଆମକୁ ଧରି ରଖିଛନ୍ତି । ସେ ମାଟି ରୂପରେ ଆମକୁ ଧାରଣ କରି ରଖିଛନ୍ତି, ପାଣି ହୋଇ ଆମକୁ ବଞ୍ଚାଇଛନ୍ତି, ଆମ ନିଃଶ୍ୱାସ ପ୍ରଶ୍ୱାସରେ ପବନ ହୋଇ ପ୍ରବାହିତ ହେଉଛନ୍ତି, ଆଖିରେ ଜ୍ୟୋତି ହୋଇ ଆମକୁ ସବୁ କିଛିକୁ ଦୃଶ୍ୟମାନ କରାଉଛନ୍ତି । ପୁରୁଷର ଶକ୍ତିରେ ସେ, କୁମାରୀର ଲାଜରେ ସେ, ଶିଶୁର ହସରେ ସିଏ, ମାଟିର ପବିତ୍ର ଗନ୍ଧ ସେ, ସୂର୍ଯ୍ୟରେ ଆଲୋକ ସିଏ, ପବନର ଝଙ୍କାର ସିଏ, ବେଦର ଓଁକାର ସିଏ, ନିରାଶାରେ ଆଶାସିଏ, ଅଗ୍ନିର ଉତ୍ତାପ ସିଏ, ବରଫର ଶୀତଳତା ସିଏ । ଆମେ ଆସିବା ଆଗରୁ ଅର୍ଥାତ ଆମ ପ୍ରଥମ ବଂଶଧର ଆସିବାର ବହୁ ଆଗରୁ ଆମ ବଞ୍ଚିବା ଓ ବଢ଼ିବା ପାଇଁ ମାଟି, ପାଣି, ପବନ, ଆଲୋକ ଓ ତେଜ ଯିଏ ଖଞ୍ଜି ଦେଇଛନ୍ତି ସେ ହେଉଛନ୍ତି ଭଗବାନ । ଗୋଟିଏ ପ୍ରଣାମ ନୁହେଁ, କୋଟିଏ ପ୍ରଣାମ ମଧ୍ୟ ନଅଣ୍ଟ ହେବ ତାଙ୍କୁ କୃତଜ୍ଞତା ଜଣାଇବା ପାଇଁ । ତାଙ୍କ ପାଇଁ ପୂଜାର ସାମଗ୍ରୀ ଗଙ୍ଗାବାରି ନୁହେଁ ନୟନର ଅଶ୍ରୁ, ସଜଫୁଟା ଏଇ ଫୁଲ ନୁହେଁ ଉଚ୍ଚମନର ଫୁଲ । ତାଙ୍କ ଉପରେ ଅତୁଟ ଭରସା ହିଁ ତାଙ୍କ ପ୍ରତି କୃତଜ୍ଞତାର ଅନ୍ୟ ରୂପ । କୃତଜ୍ଞତାରେ ଭାବ ଓ ଭାବରେ କୃତଜ୍ଞତା ହିଁ ତାଙ୍କର ପ୍ରାପ୍ୟ ।

ଅତଏବ ମାଟି, ପାଣି, ପବନ, ଆଲୋକ କେହି ମାତ୍ର ଜଡ଼ ଭୌତିକ ଉପାଦାନ ନୁହନ୍ତି, ପ୍ରତ୍ୟେକ ଏକ ଏକ ଚିନ୍ମୟ ଉପାଦାନ । ସବୁ ଭିତରେ ରହିଛି ଅମାପ ସାମର୍ଥ୍ୟ, ଅଶେଷ ଜୀବନୀଶକ୍ତି । ସେହି ଜୀବନୀଶକ୍ତି ଏସବୁକୁ ସରସ, ସୁନ୍ଦର ଓ ପ୍ରାଣବନ୍ତ କରି ରଖିଛି । ଏମାନଙ୍କ ଅବଦାନ ଅସୀମ । ଏମାନଙ୍କ ପାଇଁ କୃତଜ୍ଞତା ହିଁ ମାନବିକତାର ଅସଲ ସ୍ୱରୂପ ।

ପିତାମାତାଙ୍କଠାରୁ ଆରମ୍ଭ କରି ବନ୍ଧୁବାନ୍ଧବ ସାଇ ପଡ଼ିଶା ପର୍ଯ୍ୟନ୍ତ ଯେଉଁମାନଙ୍କଠାରୁ ଆମେ ଶ୍ରଦ୍ଧା, ସ୍ନେହ, ଅତ୍ମୀୟତା, ଆନ୍ତରିକତା ପାଇଛୁ ତାକୁ ସ୍ୱୀକୃତି ସହ ସମ୍ମାନ ଜଣାଇବାରେ ଜୀବନର ସାର୍ଥକତା ନିହିତ । କୃତଜ୍ଞତା ସଂପର୍କରେ ଉପଦେଶ ଦେବା ନୁହେଁ ବରଂ ଉଦାହରଣ ହେବା ଆବଶ୍ୟକ । ଆମେ ଆମ ପିତାମାତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କଲେ ଆମ ପିଲାମାନେ ଆମ ପ୍ରତି କୃତଜ୍ଞତା ପ୍ରକାଶ କରିବେ । କୃତଜ୍ଞତା କାହାକୁ ସାନ କରିଦିଏ ନାହିଁ, ମହତ କରିଦିଏ । ଆମକୁ ଶାନ୍ତ, ସହନଶୀଳ, ନମ୍ର, ଶୃଙ୍ଖଳିତ ସର୍ବୋପରି ପ୍ରଫୁଲ୍ଲିତ କରେ କୃତଜ୍ଞତା । ଦେଶ ପ୍ରତି କୃତଜ୍ଞତା ମାଧ୍ୟମରେ ବିଶ୍ୱ ପ୍ରତି କୃତଜ୍ଞତା ଆସିଲେ ଆମେ ବିଶ୍ୱନାଗରିକ ହୋଇପାରିବା । ସେତେବେଳେ ଆମେ ସମସ୍ତଙ୍କର ଓ ସମସ୍ତେ ଆମର ଅତି ଆପଣାର ହୋଇଯିବେ ।

ㅁㅁ

# ବିଦ୍ୟା ଓ ଅବିଦ୍ୟା

ଆଜିକାଲି ବିଦ୍ୟାର ମାପ ଡିଗ୍ରୀର ମାପକାଠିରେ ଏକ ପ୍ରକାର ଚାଲିଛି । ମୁଁ ଏକଥା କହିବାଦ୍ୱାରା ଡିଗ୍ରୀର ନିନ୍ଦା କରୁନାହିଁ, ବରଂ ଡିଗ୍ରୀ ସହିତ ବିଦ୍ୟାର ସମ୍ବନ୍ଧ ଆଂଶିକ ବୋଲି କହୁଛି । ବିଦ୍ୟା ଅତିକମ୍‌ରେ ସଂସ୍କାର ସୃଷ୍ଟିକରେ, ବିନମ୍ରତା, ଭଦ୍ରତା ଓ ଶୃଙ୍ଖଳା ସମେତ ବହୁ ଭଲ କଥା ଦିଏ । ହିଂସ୍ରତା, ଉଗ୍ରତା, ଜଟିଳତା, ସ୍ୱାର୍ଥପରତା, ଛଳନା ସମେତ ବହୁ ବଦ୍‌ଗୁଣକୁ ଦୂରେଇ ଦିଏ । ଡିଗ୍ରୀଥାଇ ମଧ୍ୟ ଜଣେ ବ୍ୟକ୍ତି ମୂର୍ଖ ହୋଇପାରେ । ବିଦ୍ୟାଦ୍ୱାରା ଜୀବନ ଓ ଜଗତକୁ ଆକଳନ କରିହୁଏ । ବିଦ୍ୟା ଆଣେ ଏକ ପ୍ରଶସ୍ତ ଦୃଷ୍ଟିଭଙ୍ଗୀ ଯାହା ମାଧ୍ୟମରେ ନିଜକୁ ତଥା ଅନ୍ୟକୁ ଦେଖିହୁଏ, ବୁଝି ହୁଏ । ବିଦ୍ୟା ନ ଥିଲେ ଯାହା ମଣିଷ ପାଖରେ ଥାଏ ତାହା ହେଉଛି ଅବିଦ୍ୟା । ଅବିଦ୍ୟାର ସରଳ ଅର୍ଥ ଅଜ୍ଞାନତା, ଅଚେତନତା, ଆତ୍ମମ୍ଭରିତା । ଏହି ବିଦ୍ୟା ଓ ଅବିଦ୍ୟା ସମ୍ବନ୍ଧରେ ମନେପଡୁଛି ଶ୍ରୀରାମକୃଷ୍ଣ ପରମହଂସଙ୍କ ଗୋଟିଏ କଥା । କଥାଟି ଏହିପରିଦିନେ ଶ୍ରୀରାମକୃଷ୍ଣ କରୁଥିଲେ ଶିଷ୍ୟମାନଙ୍କ ଗହଣରେ ଆଧ୍ୟାତ୍ମଚର୍ଚ୍ଚା । ସେଦିନ ବହୁଦିନ ଅନୁପସ୍ଥିତ ରହିବା ପରେ ଜଣେ ଶିଷ୍ୟ ଲାଜଲାଜ ହୋଇ ପଛରେ ବସିଥାଆନ୍ତି । ଗୁରୁଦେବ ତାଙ୍କୁ ଦେଖିପକାଇ କାହିଁକି ସେ ଲାଜଲାଜ ହେଉଛନ୍ତି ବୋଲି ଅନ୍ୟମାନଙ୍କୁ ପଚାରନ୍ତେ ଅନ୍ୟମାନେ କହିଲେ ଯେ ଏହା ଭିତରେ ତାଙ୍କର ବିବାହ ହୋଇଯାଇଛି । ଗୁରୁ ଏହା ଶୁଣି ଶିଷ୍ୟଟିକୁ ପାଖକୁ ଡାକିଲେ ଓ ବୋହୂମାଆ ବିଦ୍ୟା କି ଅବିଦ୍ୟାର ଅଧିକାରୀ ବୋଲି ପଚାରିଲେ । ଶିଷ୍ୟଟି ତତ୍‌କ୍ଷଣାତ୍ ଉତ୍ତର ଦେଲେ ଯେ ବୋହୂଟି ବି.ଏ. ପାସ୍ କରିଛି । ଗୁରୁଦେବ ଟିକିଏ ହସି କହିଲେ ଯେ ବି.ଏ ପାସ୍

କରିଛି ବୋଲି ଯେ ବିଦ୍ୟାବତୀ ହୋଇଛି ଏପରି ନୁହେଁ, ତା'ର ଜୀବନ, ଜଗତ ଓ ଭଗବାନଙ୍କ ପ୍ରତି ଯଥାର୍ଥ ଦୃଷ୍ଟିଭଙ୍ଗୀ ଅଛି ତ ? ତା' ଥିଲେ ସେ ବିଦ୍ୟାର ଅଧିକାରିଣୀ ହୋଇଛି । ନହେଲେ ନୁହେଁ । ଏହି କଥାର ମର୍ମ ହେଉଛି ବିଦ୍ୟା କହିଲେ ମାନବିକ ମୂଲ୍ୟବୋଧକୁ ବୁଝାଏ ଯାହା ହେଉଛି ବ୍ୟକ୍ତିର ଅସଲ ବ୍ୟକ୍ତିତ୍ୱ ।

ବିଦ୍ୟା ଥିଲେ ଜଣେ ନିଜକୁ କିଛିକିଛି ଜାଣିବା ସହ ଅନ୍ୟକୁ ମଧ୍ୟ କିଛିକିଛି ଜାଣିପାରେ । ଠକାଇ ହେବା ପୂର୍ବରୁ ଠକାମିକୁ ଚିହ୍ନିପାରେ । ଠକାମିଠାରୁ ଦୂରରେ ରହିବାକୁ ଚେଷ୍ଟା କରେ । ଆଉ କାହାର ଖୋସାମତିଆ କଥାକୁ ସହଜରେ ବୁଝିପାରେ ଓ ତହିଁରେ ଆତ୍ମହରା ହୁଏ ନାହିଁ । ଅବାଟରେ ଯାଏ ନାହିଁ । ବିଦ୍ୟା ଆଣେ ଚିନ୍ତାଗତ ସ୍ଥିରତା ଅର୍ଥାତ୍ ମାନସିକ ସ୍ଥିରତା । କର୍ତ୍ତବ୍ୟବୋଧର ଦ୍ୱାର ପ୍ରଶସ୍ତ ହୁଏ ଏବଂ ଦାୟିତ୍ୱବୋଧ ବଢ଼ିଯାଏ । କେଉଁଟା କରଣୀୟ ଏବଂ କେଉଁଟା ଅକରଣୀୟ, ତାହାର ବିଚାର ସହଜରେ କରିହୁଏ । କେଉଁଠି କେଉଁକଥା କିପରି କୁହାଯିବ, ତାହା ବୁଝି ହୁଏ । ବିଦ୍ୟା ଯେପରି ହୀନମଣ୍ୟତାକୁ ଦୂରକରେ ସେପରି ସବ୍‌ଜାନତା ଭାବକୁ ମଧ୍ୟ ଦୂରକରେ । ଅର୍ଥାତ୍ ବିଦ୍ୱାନବ୍ୟକ୍ତି ନିଜକୁ ସାନ ମନେକରେ ନାହିଁ କି ବଡ଼ ମନେ କରେ ନାହିଁ । ନିଜେ ଯାହା ନିଜକୁ ତାହା ବୋଲି ବିଚାରକରେ ।

ଭିତରେ ବିଦ୍ୟାଥିବା ବ୍ୟକ୍ତି ଲୋକଙ୍କ କଥାରେ ବିଚଳିତ ହୁଏ ନାହିଁ । ଲୋକକଥା ଶୁଣି ଭୁଲଥିଲେ ନିଜକୁ ସଂଶୋଧନ କରେ, ଆଉ ଭୁଲ୍ ନ ଥିଲେ ସେ କଥାକୁ ଭ୍ରୂକ୍ଷେପ କରେ ନାହିଁ । ତେଣୁ ସେ କଥାରେ ସେ ଆକ୍ରମିତ ବା ଆକ୍ରାନ୍ତ ହୁଏ ନାହିଁ । ବିଦ୍ୟା ଆଣେ ପାରସ୍ପରିକ ଅନୁମୋଦନ । ଅନ୍ୟଠାରେ ଭଲ ଗୁଣଟିଏ ଦେଖିଲେ ବିଦ୍ୟାଥିବା ବ୍ୟକ୍ତି ପ୍ରଶଂସା କରେ । ଅନ୍ୟର ପ୍ରତିଭାକୁ ଅନୁମୋଦନ କରିବାସହ ପ୍ରତିଭାର ବିକାଶ ନିମନ୍ତେ ପ୍ରେରଣାଦିଏ । ସଂପ୍ରତି ସମାଜରେ ଏହି ଅନୁମୋଦନ ଓ ପ୍ରେରଣାର ହ୍ରାସ ଘଟୁଛି । ଏହା ଅବିଦ୍ୟାର କରାମତି । ଅବିଦ୍ୟାକୁ ପରିହାର କରି ବିଦ୍ୟାର ଆବାହନ ଏତେବେଳେ ଏକାନ୍ତ ଜରୁରୀ । ମଣିଷର ପୂର୍ଣ୍ଣତା ପାଇଁ ଦୁଇଟିକଥା ଅତି ଆବଶ୍ୟକ, ଗୋଟିଏ ହେଲା ବୌଦ୍ଧିକତା ଓ ଅନ୍ୟଟି ହେଲା ହୃଦୟବତ୍ତା । ଦୁଇଟିର ଭାରସାମ୍ୟ ଏକାନ୍ତ ଆବଶ୍ୟକ । ଏଥିରୁ ଗୋଟିଏ ବଢ଼ିଗଲେ ଓ ଅନ୍ୟଟି କମିଗଲେ ଚଳିବ ନାହିଁ । ଦୁଇଟି କଥା ପାଖାପାଖି ସମାନ ଭାବରେ ଜଣେ ମଣିଷ ପାଖରେ ରହିବା ଦରକାର । ଅର୍ଥାତ୍ ଜଣକ ପାଖରେ ଯେମିତି ବୁଦ୍ଧି, ଜ୍ଞାନ, ବହିଃଜୀବନ ପ୍ରତି ଶ୍ରଦ୍ଧା, ବସ୍ତୁ ପ୍ରତି ଅନୁରକ୍ତି ପ୍ରଭୃତି ରହିବ ସେମିତି ରହିବ ଦୟା, କ୍ଷମା, ସ୍ନେହ, ସହନଶୀଳତା, ଶ୍ରଦ୍ଧା, ସହାନୁଭୂତି ତଥା ଅନ୍ତଃଜୀବନ ପ୍ରତି ଶ୍ରଦ୍ଧା । ସର୍ବୋପରି ବିଦ୍ୟାଦିଏ ବ୍ୟକ୍ତିକୁ ଅହଂକାରରୁ ମୁକ୍ତି । ତେଣୁ ତ କୁହାଯାଏ 'ସା' ବିଦ୍ୟା ଯା ବିମୁକ୍ତୟେ' । ଅହଂକାରର ସରଳ ଅର୍ଥ

ହେଉଛି ନିଜକୁ ଜାହିର କରିବା । ଭୁଲ କଥାରେ ନିଜକୁ ଜାହିର କରିବା ଯେପରି ଅହଂକାର, ଠିକ୍ କଥାରେ ନିଜକୁ ଜାହିର କରିବା ମଧ୍ୟ ସେପରି ଅହଂକାର । ଜାହିର କଥାଟି ସାବ୍ୟସ୍ତ ନ ହେଲା ପର୍ଯ୍ୟନ୍ତ ଅନ୍ତର ଜଳୁଥାଏ । ଆଉ ସାବ୍ୟସ୍ତ ନହେଲେ ଅନ୍ତରର କ୍ରୋଧ ବଢ଼ିଯାଏ । କାର୍ଯ୍ୟରେ ନକାରାତ୍ମକତା ଆସେ । ସ୍ଥାନ, କାଳ, ପାତ୍ରର ବିବେଚନା ରହେ ନାହିଁ, ଫଳତଃ ବହୁ ଅକଥା କହି ହୋଇଯାଏ ଓ ବହୁ ଅକାର୍ଯ୍ୟ କରି ହୋଇଯାଏ । ସଂପ୍ରତି ବିଶ୍ୱରେ ଧନର ପରିମାଣ ବେଶ୍ ବଢ଼ିଛି, ସଂପଦ ବଢ଼ିଛି ଜନସଂଖ୍ୟା ବଢ଼ିଛି, ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନ ବଢ଼ିଛି, ମାତ୍ର ମଣିଷର ମନରେ ଶାନ୍ତି ଓ ସନ୍ତୋଷ ଯେତେ ବଢ଼ିବାକଥା ସେତେ ବଢ଼ି ନାହିଁ । ବହିଃଜୀବନର ସମୃଦ୍ଧି ଘଟିଛି, ମାତ୍ର ଅନ୍ତରାୟ ହେଉଛି ଅହଂକାର । ଏହି ଅହଂକାରର ବିନାଶ କେବଳ ବିଦ୍ୟାର ପ୍ରଭାବରେ ଘଟିପାରେ । ଅହଂକାରର କବଳରୁ ବ୍ୟକ୍ତି ମୁକ୍ତ ହେଲେ କ୍ରମଶଃ ସମାଜ, ରାଷ୍ଟ୍ର ଏବଂ ସମଗ୍ର ବିଶ୍ୱ ମୁକ୍ତହେବ । ଆଉ ଏହି ଅହଂମୁକ୍ତ ବିଶ୍ୱହେବ ସ୍ୱର୍ଗପରି ସୁନ୍ଦର ଓ ଶୋଭନୀୟ, ଦେବତାଙ୍କର ନିବାସସ୍ଥଳ ଓ ବିହାର ଭୁବନ ।



# ବିଶ୍ୱାସ, ଅବିଶ୍ୱାସ ଓ ଅନ୍ଧବିଶ୍ୱାସ

ବିଶ୍ୱାସ ଏକ ଅମୂଲ୍ୟଧନ । ଜୀବନରେ ଏହାର ଉପଯୋଗିତା ଅଛି । ଏହା ଏକ ମୂଲ୍ୟବାନ ଅଳଙ୍କାର, ଯିଏ ଏଇ ଅଳଙ୍କାର ପିନ୍ଧେ ସେ ବଡ଼ ହୁଏ, ଯିଏ ପିନ୍ଧାଇଚି ସେ ମଧ ବଡ ହୁଏ । ବିଶ୍ୱାସର ମହତ୍ତ୍ୱ ସମସ୍ତେ ବୁଝିପାରନ୍ତି ନାହିଁ । ଯେଉଁମାନେ ଏଇ ଅମୂଲ୍ୟଧନ ସହିତ ବିଶ୍ୱାସଘାତକତା କରନ୍ତି, ସେମାନେ ନିଜେ କ୍ଷତିଗ୍ରସ୍ତ ହୁଅନ୍ତି, କେହି ତାଙ୍କୁ ବିଶ୍ୱାସ କରନ୍ତି ନାହିଁ, ଫଳତଃ ସେମାନେ ଅବିଶ୍ୱସ୍ତ ହୋଇ ରହିଯାଆନ୍ତି ।

ବିଶ୍ୱାସର ବନ୍ଧୁତା ସବୁଠାରୁ ବଡ଼ ବନ୍ଧୁତା, ତାହା ଏକାନ୍ତ ଦୁର୍ଲ୍ଲଭ । ସେଇଥିପାଇଁ କୁହାଯାଏ ‘ସାଙ୍ଗକେ ମରି, ସାଙ୍ଗକେ ତରି,ସାଙ୍ଗକେ ଘର ଦୁଆର କରି ।’ ସେହି ହେଉଛି ପ୍ରକୃତବନ୍ଧୁ ଯିଏ ବିଶ୍ୱସ୍ତ ଭାବରେ ଅନ୍ୟ ବନ୍ଧୁର ଦୋଷ ତ୍ରୁଟିକୁ ଦର୍ଶାଇ ଦିଏ ଏବଂ ସୁଧାରିବାକୁ ଆଗ୍ରହୀ ହୁଏ । ବନ୍ଧୁତାର ହସ୍ତକ୍ଷେପରେ ଅନ୍ୟ ବନ୍ଧୁର କେତେ ଅସୁବିଧା ଦୂର ହୁଏ, କେତେ ସମସ୍ୟାର ସମାଧାନ ହୋଇଯାଏ । ପୁଣି କେତେ ବଦ୍‌ଗୁଣ ପରିଣତ ହୋଇଯାଏ ସଦ୍‌ଗୁଣରେ ।

ବିଶ୍ୱାସରେ ଅସମ୍ଭବ ହୋଇଯାଏ ସମ୍ଭବ । ବିଶ୍ୱାସ ବଳରେ ଶ୍ରୀରାମ ଦର୍ଶନ ଦିଅନ୍ତି ଶବରୀକୁ, ବିଶ୍ୱାସରେ ବାରିଗାଡ଼ିଆ ପ୍ରୟାଗ ପୁଷ୍କରରେ-ପରିଣତ ହୁଏ, ପଙ୍ଗୁ ଗିରି ଲଂଘନ କରେ, ମୂକ ବାଚାଳ ହୁଏ । ସ୍ତମ୍ଭରୁ ନରସିଂହ ମୂର୍ତ୍ତି ବିଶ୍ୱାସ ବଳରେ ପ୍ରକଟିତ ହୁଅନ୍ତି । ଭଗବତ୍ ବିଶ୍ୱାସରେ ଜୀବନ ଧନ୍ୟ ହୁଏ, ପୂର୍ଣ୍ଣ ହୁଏ । ବିଶ୍ୱାସରୁ ଭଗବାନଙ୍କ ଉପରେ ଭରସା ଆସେ । ଭରସାରୁ ସଂକଳ୍ପ ଏବଂ ସଂକଳ୍ପରୁ ସିଦ୍ଧି ଆସେ । କାରଣ ବିଶ୍ୱାସର ବାଟ ଦେଇ ଭଗବତ୍ କୃପା ଝରିଆସେ ।

ସାଧାରଣ ଜୀବନରେ ସମସ୍ତ ପ୍ରକାର ସଫଳତାର ମୂଳରେ ରହିଛି ବିଶ୍ୱାସ, ନିଜ ଉପରେ ବିଶ୍ୱାସ ଯାହାକୁ ଆତ୍ମବିଶ୍ୱାସ ବୋଲି କୁହାଯାଏ । ଆତ୍ମବିଶ୍ୱାସ ଆଣେ ଏକାଗ୍ରତା, ଅଧ୍ୟବସାୟର ମାନସିକତା । ଯାହାର ଆତ୍ମବିଶ୍ୱାସ ନାହିଁ, ତା'ର ଅଗ୍ରଗତି ନାହିଁ ।

ଜୀବନରେ ବିଶ୍ୱାସର ସ୍ଥାନ ଯେପରି ଅଛି ଅବିଶ୍ୱାସର ସ୍ଥାନ ମଧ୍ୟ ସେପରି ରହିଛି । କେତେ କଥାକୁ ଅବିଶ୍ୱାସ କରିବାକୁ ପଡ଼ିବ । ଏଇ ଯେମିତି ଶଠ ଲୋକଙ୍କୁ ଅବିଶ୍ୱାସ କରିବାକୁ ପଡ଼ିବ, ଦୁଷ୍ଟ ଲୋକକୁ ଅବିଶ୍ୱାସ କରିବାକୁ ପଡିବ, ଖଳଲୋକଙ୍କୁ ଅବିଶ୍ୱାସ କରିବାକୁ ପଡିବ । ଆମ ପ୍ରବଚନରେ ତେଣୁ କୁହାଯାଇଛି 'ଖଳକୁ ଦେଖିଲେ ଖସିବ ।' ଖଳ ଲୋକଙ୍କର ଚଉରିପଟରେ ଏକ ଭୟଙ୍କର ବିଷାକ୍ତ ବଳୟ ଥାଏ, ସେହି ବଳୟର ସ୍ପର୍ଶ ଲାଗିଲେ ଶାନ୍ତ ଲୋକ ଅଶାନ୍ତ ହୋଇଯାଏ, ଦୁଃଖ ଦୁଶ୍ଚିନ୍ତା ମାଡ଼ିଧରେ । ଘଡ଼ିକରେ ଏକ ଘର ଭାଙ୍ଗି ସାତଘର ହୋଇଯାଏ । ମନେ ପଡ଼େ ଏଇ ପ୍ରସଙ୍ଗରେ ଶ୍ରୀରାମକୃଷ୍ଣଙ୍କ କଥା । ସେ କହନ୍ତି-''ସମସ୍ତଙ୍କ ଭିତରେ ଭଗବାନ ଅଛନ୍ତି, ଏପରିକି ବାଘ ଭିତରେ ମଧ୍ୟ ଭଗବାନ ଅଛନ୍ତି, ଖଳ ଲୋକଙ୍କ ଭିତରେ ମଧ୍ୟ ଭଗବାନ ଅଛନ୍ତି । ବାଘ ଭିତରେ ଭଗବାନ ଥିଲେ ମଧ୍ୟ ଯେପରି ବାଘ ପାଖକୁ ଯିବା ଉଚିତ ନୁହେଁ, ଖଳ ଭିତରେ ଭଗବାନ ଥିଲେ ମଧ୍ୟ ସେପରି ଖଳ ପାଖକୁ ଯିବା ଉଚିତ ନୁହେଁ ।'' ଆଉ ଅବିଶ୍ୱାସ କରିବାକୁ ହେବ କାନ କୁହାଲୋକଙ୍କୁ ଏବଂ ଖୋସାମତିଆ ଲୋକଙ୍କୁ । କାନରେ ଫୁସୁଫାସ୍ କଥା କହି ସେମାନେ ନିଜ ସ୍ୱାର୍ଥ ହାସଲ କରିବା ସହିତ ଅନ୍ୟର ବହୁତ କ୍ଷତି କରିବାକୁ ଚେଷ୍ଟା କରିଥାନ୍ତି । ପୁଣି ଖୋସାମତିଆ ଲୋକ ନ ଡାକିଲେ ଆସନ୍ତି ଏବଂ ନ ପଚାରିଲେ ବହୁ କଥା ପ୍ରଗଳ୍ଭ ହୋଇ ଭାଷନ୍ତି । ଅଯଥା ପ୍ରଶଂସା କରନ୍ତି, ଅନ୍ୟକୁ ଖୁସି କରିବାକୁ ଚେଷ୍ଟା କରୁଥାନ୍ତି । ସେମାନେ ଏହି ଶ୍ରେଣୀର ''ଅନାହୂତୋ ପ୍ରବିଶ୍ୟନ୍ତି, ଅପୃଷ୍ଟୋ ବହୁ ଭାଷତେ ।'' ଆମ ପ୍ରବାଦ ପ୍ରବଚନ ଅନୁସାରେ ସର୍ବଦା ଚୁଙ୍ଗୁଚୁଙ୍ଗୁ ହେଉଥିବା ଲୋକ ଉପରେ ଆସ୍ଥା ରଖିବା ଉଚିତ ନୁହେଁ ବରଂ ସେମାନଙ୍କର କଥାକୁ ଅବିଶ୍ୱାସ କରିବା ଉଚିତ । ଯିଏ ସର୍ବଦା ଚୁଙ୍ଗୁଚୁଙ୍ଗୁ ଅର୍ଥାତ ଅସ୍ଥିର, ଭାବନାରେ ଅସ୍ଥିର, ବୋଧଗମ୍ୟରେ ଅସ୍ଥିର, ପଦକ୍ଷେପ ଗ୍ରହଣରେ ଅସ୍ଥିର । ସିଏ ଅନ୍ୟକୁ ସ୍ଥିରତା ପ୍ରଦାନ କରିବ କିପରି ? ମିଛ କହୁଥିବା ବ୍ୟକ୍ତି ଅତ୍ୟନ୍ତ ମାରାତ୍ମକ । ଏପରି ବ୍ୟକ୍ତି ଅନେକ ଅଛନ୍ତି ଯେଉଁମାନେ କି କଥା କଥାକେ ମିଛ ହିଁ କହନ୍ତି । ମିଛ କଥା ତାଙ୍କ ତୁଣ୍ଡରେ ବସା ବାନ୍ଧିଥାଏ । ସେମାନେ ଭାବନ୍ତି କେହି ତାଙ୍କ ମିଛ କଥାକୁ ଜାଣିପାରୁନାହାନ୍ତି । ସେପରି ଲୋକଙ୍କୁ ଅବିଶ୍ୱାସ କରିବା ଉଚିତ । ଏପରି ଲୋକ ଗୁଜବକୁ ପ୍ରଚାର କରିବା ଦିଗରେ ଆଗୁଆ ହୋଇଥାଆନ୍ତି । ସତକୁ ମିଛ ଏବଂ ମିଛକୁ ସତ କରି ଗୁଜବକୁ ଆଉ ଟିକିଏ ରଙ୍ଗ ଦେଇ ବଢ଼େଇ ବଢ଼େଇ କହିବା ଦିଗରେ ଏମାନେ ବଡ଼ ପାରଙ୍ଗମ । ଏମାନଙ୍କୁ ଅବିଶ୍ୱାସ କରିବା ସଂଗେ ସଂଗେ ଗୁଜବକୁ ଅବିଶ୍ୱାସ କରିବା ଉଚିତ । କୌଣସି ଘଟଣାକୁ ନ ବୁଝି ଶୁଝି ହଠାତ୍ ସେଥିରେ ପ୍ରଭାବିତ ହେବା ଉଚିତ ନୁହେଁ ।

ପୁନଶ୍ଚ ଅପରିଚିତ ବ୍ୟକ୍ତି ପ୍ରତି ବିଶେଷତଃ ରେଳ ଯାତ୍ରା କାଳରେ ସତର୍କ ରହିବା ଉଚିତ । ସେମାନଙ୍କ ହାତରୁ କିଛି ଖାଦ୍ୟ ଅଥବା ପାନୀୟ ଗ୍ରହଣ ନକରିବା ଉଚିତ । ସେହି କ୍ଷେତ୍ରରେ ଅବିଶ୍ୱାସ ଏକାନ୍ତ ପ୍ରୟୋଜନ କାରଣ ସେହି ଅବିଶ୍ୱାସ ହିଁ ଆତ୍ମରକ୍ଷାର ଅନ୍ୟନାମ । ସେମାନଙ୍କ ସହିତ ଅତ୍ୟଧିକ ମିଳାମିଶା ଓ ପ୍ରଗଳ୍‌ଭତା ଗ୍ରହଣୀୟ ନୁହେଁ ।

ଅନ୍ଧବିଶ୍ୱାସ ଆଉ ଏକ କଥା ଯାହାର କରାଳଗ୍ରାସରେ ମଣିଷର ସର୍ବନାଶ ହୋଇଯାଏ । ଥରେ ଅନ୍ଧବିଶ୍ୱାସର ଶିକାର ହୋଇଗଲେ ଆଉ ହିତାହିତ ଜ୍ଞାନ ରହେ ନାହିଁ । ମୁଣ୍ଡ ଭିତରେ ସେହି ଅନ୍ଧବିଶ୍ୱାସ ଏପରି ବସା ବାନ୍ଧି ରହିଯାଏ ଯେ ସେହି ବସାକୁ ଭାଙ୍ଗିବା ସହଜ ହୁଏ ନାହିଁ । ଏଇ ଯେମିତି ସାପ କାମୁଡ଼ିଥିବା ବ୍ୟକ୍ତିକୁ ଗଦ ଶୁଙ୍ଘାଇବା, ତା'ଉପରେ ଗରାଗରା ପାଣି ଢାଳିବା, ତାକୁ ନିମପତ୍ର ଚଖାଇ ପିତା ଲାଗୁଛି କି ମିଠା ଲାଗୁଛି ବୋଲି ପଚାରିବା ହାସ୍ୟାସ୍ପଦ କଥା । ତାକୁ ଡାକ୍ତରଙ୍କ ପାଖକୁ ନ ନେଇ ଏସବୁ କଥାରେ ମାତି ସମୟ ନଷ୍ଟ କରିବା ହିଁ ଅନ୍ଧବିଶ୍ୱାସ, ଗଭୀର ଅନ୍ଧବିଶ୍ୱାସ । ହାଡ଼ଫୁଟି ହେଲେ ମା'ଠାକୁରାଣୀ ବିଜେ ହୋଇଛନ୍ତି କହି ଚିକିତ୍ସା ନକରିବା ଅନ୍ୟ ଏକ ଅନ୍ଧବିଶ୍ୱାସ । ବିଲେଇଟିଏ ଯାନବାହନ ଆଗରେ ଗୋଟିଏ ପାଖରୁ ଅପରପାଖକୁ ଚାଲିଗଲା, ଅତଏବ ବିପଦର ସୂଚନା ଆସିଲା, ଏପରି ଭାବନା ହିଁ ଅନ୍ଧବିଶ୍ୱାସ । ତିନିଜଣ ଏକାଠି ଗୋଟିଏ ଘରୁ କୌଣସି ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟରେ ବାହାରିବା ଅମଙ୍ଗଳଜନକ, ଏହା ଏକ ଅନ୍ଧବିଶ୍ୱାସ । ନିଃଶ୍ୱାସ କେଉଁ ପୁଡ଼ାରେ ଚାଲୁଛି ବାମ ଅଥବା ଡ଼ାହାଣରେ ବାରି ଅନୁକୂଳ କରିବା ଅନ୍ୟ ଏକ ଅନ୍ଧବିଶ୍ୱାସ । ଯାତ୍ରାକାଳରେ ଘରୁ ବାହାରିଲାବେଳେ କିଏ ଛିଙ୍କି ଦେବା ଅଶୁଭଜନକ ବୋଲି ବିଚାରିବା ଏକ ଅନ୍ଧବିଶ୍ୱାସ ।

ସବୁଠାରୁ ବଡ଼ ଅନ୍ଧବିଶ୍ୱାସ ହେଉଛି ନୀଳତିମି ଏବଂ 'ମୋମୋ' ଜନିତ ଅନ୍ଧବିଶ୍ୱାସ ଯାହା ଆଜିକାଲି ଯୁବସମାଜକୁ କେତେକାଂଶରେ ପ୍ରଭାବିତ କରୁଛି । ସମସ୍ତଙ୍କୁ ନୁହେଁ ଯେଉଁମାନଙ୍କୁ ପ୍ରଭାବିତ କରୁଛି ସେମାନଙ୍କର ବହୁକ୍ଷତି ଘଟାଉଛି । ସେମାନଙ୍କୁ ସର୍ବସ୍ୱାନ୍ତ କରାଉଛି ପୁଣି ସେମାନଙ୍କର ସର୍ବନାଶ ମଧ୍ୟ ଘଟାଉଛି । ଅପଶକ୍ତିଙ୍କର ଦୁଷ୍ଟବୁଦ୍ଧିର ଜାଲରେ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ କେତେକ ଯୁବକ ଏପରି ଛନ୍ଦି ହୋଇଯାଉଛନ୍ତି ଯେ ତହିଁରୁ ମୁକୁଳିବା ସହଜ ହେଉନାହିଁ ଏପରିକି ସମ୍ଭବ ମଧ୍ୟ ହେଉ ନାହିଁ । ମୋବାଇଲରେ ଏସବୁ ନିର୍ଦ୍ଦେଶମାନ ଆସୁଛି ଯାହା ଭିତ୍ତିହୀନ ଓ ଯୁକ୍ତିହୀନ । କେବଳ ଅନ୍ଧ ବିଶ୍ୱାସର ଶିକାର ହୋଇ କିଛି ଯୁବଶକ୍ତି ଏହାକୁ ବିଶ୍ୱାସ କରି ସର୍ବନାଶର କରାଳଗ୍ରାସରେ ପଡ଼ିଯାଉଛନ୍ତି । ଏପରି ଅନ୍ଧବିଶ୍ୱାସ ସର୍ବଥା ବର୍ଜନୀୟ । ଏଥିପ୍ରତି ସଚେତନ ରହିବାର ମନୋବୃତ୍ତି ହିଁ ଏଥିପାଇଁ ପ୍ରତିଷେଧକ । ଏହି ସଚେତନତା ଯୁବଶକ୍ତି ନିମନ୍ତେ ଏକାନ୍ତ କାମ୍ୟ । ସଚେତନ ରହିବା ପାଇଁ ଯୁବଶକ୍ତିକୁ ବାରମ୍ବାର ଅନୁରୋଧ ।

ାା

# ସତର୍କତା କ'ଣ ଓ କାହିଁକି ?

ଦେହଟିଏ ମିଳିଛି ଏବଂ ତହିଁରେ ପାଞ୍ଚଗୋଟି ଇନ୍ଦ୍ରିୟ ଖଞ୍ଜା ଯାଇଛି । ଆମେ ବୁଝିଛୁ ଯେ ଇନ୍ଦ୍ରିୟମାନଙ୍କର ତୃପ୍ତିରେ ଜୀବନର ସାର୍ଥକତା ଆସେ । ଆମେ କିନ୍ତୁ ବୁଝି ନାହୁଁ ଯେ ଇନ୍ଦ୍ରିୟମାନେ ତୃପ୍ତ ହୁଅନ୍ତି ନାହିଁ, ଅତୃପ୍ତି ହେଉଛି ସେମାନଙ୍କର ଧର୍ମ । ଯେତେ ଖାଇଲେ ତାଙ୍କ ଭୋକ ମରେ ନାହିଁ । ଅବଶ୍ୟ ବେଳେବେଳେ ଅଗ୍ନିମାନ୍ଦ୍ୟ ହୁଏ, ତାହା ସାମୟିକ । ଶ୍ମଶାନ ବୈରାଗ୍ୟ ପରି ତାହା ସାମୟିକ । ହାଏ ହାଏ କରି ଶ୍ମଶାନରୁ ଫେରି ଦୁଆରେ ପହଞ୍ଚି ଖଳାବାଡ଼ିରେ ଛଣପାଳ ଖାଉଥିବା ଓଲେଇ ଗାଇକୁ ଦେଖିଲା ମାତ୍ରକେ ରାଗ ଚଢ଼ିଯାଏ ମଥା ଉପରକୁ, ଅଣଆୟତ୍ତ ହୋଇଯାଏ ପରିସ୍ଥିତି, ଗାଇକୁ ଗୋଗଛ ବାଡ଼ିଆ ହୁଏ । ଏହାକୁ କୁହାଯାଏ ସାମୟିକ ଅଗ୍ନିମାନ୍ଦ୍ୟ । ବେଳେବେଳେ ଅଜୀର୍ଣ୍ଣ ହୁଏ, ବାନ୍ତି ହୁଏ । ହେଲେ ଏପରି ଘଟଣା କୋଟିକରେ ଗୋଟିଏ । ସେପରି ବାନ୍ତି ହେଲେ ସେପରି ଖାଦ୍ୟ 'ଛି' ହୋଇଯାଏ । ମନରେ ଅସଲ ବୈରାଗ୍ୟ ଆସେ ସେଦିନ ଯେପରି ଆସିଥିଲା ପିଙ୍ଗଳା ମନରେ । ସଞ୍ଜ ବଢ଼ି ରାତିହେଲା, ମନରେ ଉଦ୍‌ବେଗ ବଢ଼ିଲା କାରଣ ଧନୀ ସୌଦାଗର ଆସିବ ବୋଲି କହିଥିଲା । ରାତି ଯେତେ ବଢ଼ିଲା ଉଦ୍‌ବେଗ ସେତେ ବଢ଼ିଲା ପିଙ୍ଗଳା ମନରେ । ଆକାଶ ଭାଙ୍ଗି ପଡୁଥିଲା ତାରାର ଫୁଲରେ । ଧୀର ଧୀର ପବନ ଅଳସ ଭାଙ୍ଗୁଥିଲା ପ୍ରଶାନ୍ତ ମୁଦ୍ରାରେ । ଶବ୍ଦ ନ ଥାଇ ମଧ୍ୟ ଶବ୍ଦ ଶୁଭୁଥିଲା ସୌଦାଗରର । ଲାଗୁଥିଲା ଏଇ ବୋଧେ ସିଏ ଆସିଗଲେ । ପବନରେ ଫୁଲ ବାସ ଭାସି ଆସୁଥିଲା, ଲାଗୁଥିଲା ଏଇ ପରା ସୌଦାଗରୀ ଅତରର ବାସ୍ନା । ଦେହ ଥରୁଥିଲା, ମନରେ ବସନ୍ତ ପବନ ଲହଡ଼ି ଭାଙ୍ଗୁଥିଲା । ଘର ମୁକୁଳା ଥିଲା, ମନ ମଧ୍ୟ ସେଦିନ ପାଇଁ

ମୁକୁଳା ଥିଲା । ଘରକୁ ବାହାର ପୁଣି ବାହାରରୁ ଘର, ପାଦରେ ଝୁଲାଝୁଲା ଚାଲି ପିଙ୍ଗଳାର । ଧନୀଘରର ପୁଅ, ଏତେ ଧନର ମାଲିକ, ହାତ ଛାଟି ଦେଲେ ସୁନାମୁଦି ଖସିପଡ଼ିବ । ଛନ୍ଦଣିହାର ମଝିରେ ପାରିଜାତକ ପଦକଟିଏ ସେ । ମିଳିବ ମୋଟା ଅଙ୍କର ଧନ, କାହୁଁ ମିଳେ ଏ ସୁଯୋଗ, ଅହୋ ମହାଭାଗ୍ୟ ।

ରାତି ଆହୁରି ବଢ଼ିଲା, ତାରାମାନେ ଫୁଟି ଫୁଟି ମଉଳିବାକୁ ବସିଲେ । ଧନୀ ସୌଦାଗର ଆସିଲା ନାହିଁ । ହତାଶାର ଅନ୍ଧାର ବଢ଼ିଗଲା ପିଙ୍ଗଳା ମନରେ ହଠାତ୍ ଆଶାର ସ୍ୱର୍ଣ୍ଣିମ ସୂର୍ଯ୍ୟୋଦୟ ହେଲା । ଚେତନା ଅନ୍ତର୍ମୁଖୀ ହେଲା । 'ମୋ ପ୍ରାଣନାଥ ମୋର ପାଖେ ପାଖେ ନିରନ୍ତର' ରହିବାର ଅନୁଭବ ହେଲା । ଧନୀର ମୁଖ ବଦଳରେ ଦିଶିଲା ଭଗବାନଙ୍କ ମୁହଁ । ଶାନ୍ତିର ଆଭାରେ ପ୍ରଭାଯୁକ୍ତ ହୋଇଗଲା ପିଙ୍ଗଳାର ଅନ୍ତର । ବଦଳିଗଲା ଜୀବନର ଲକ୍ଷ୍ୟ ଓ ଆଭିମୁଖ୍ୟ । ଜୀବନପୂର୍ଣ୍ଣ ହୋଇଗଲା, ଧନ୍ୟ ହୋଇଗଲା । ବେଳେବେଳେ ଏପରି ହୁଏ ଯେ ପ୍ରବୃତ୍ତିର ପ୍ରାବଲ୍ୟ ଆଣିଦିଏ ନିବୃତ୍ତିର ବିରଳଭାବ ।

ମାତ୍ର ଏପରି ଉଦାହରଣ ସର୍ବଦା ଅନୁସରଣୀୟ ହୋଇନପାରେ । ନିବୃତ୍ତି ପାଇଁ ପ୍ରବୃତ୍ତି ବଢ଼ାଇବା ଯୁକ୍ତିଯୁକ୍ତ ନୁହେଁ । ଖତ ଗଦାରେ ବେଳେବେଳେ ପଦ୍ମଫୁଟେ । ତା'ମାନେ ନୁହେଁ ଯେ ପଦ୍ମଫୁଲ ପାଇଁ ଖତଗଦାଟିଏ ନିହାତି ଦରକାର । ପଦ୍ମଫୁଲଟିଏ ପାଇଁ ସଚେତନତା ଦରକାର, ସତର୍କତା ଦରକାର । ସତର୍କତା ଆସେ ସଚେତନତାରୁ । ସତର୍କତା ଆଣିଦିଏ ଅଗ ଗୋଡ଼ରେ କଣ୍ଟା ନ ବାଜି ସିଧା ସିଧା ବାଟ ଚାଲିବାର ବିପୁଳ ସୁଯୋଗ ।

ସତର୍କତା ଭିତରେ କଥା କହିବାର ସତର୍କତା ହେଉଛି ପ୍ରଧାନ ସତର୍କତା । ନିଜକୁ ସଂଯତ କରି କଥା କହିଲେ ତାହା ହେଉଛି ବଡ଼ ସତର୍କତାର ଚିହ୍ନ । କହୁ କହୁ କହିଗଲେ ବହୁ ଅକଥା କହି ହୋଇଯାଏ, ଏଣୁ ତେଣୁ କଥା ପାଟିରୁ ବାହାରି ପଡ଼େ । ପକାଇଲା ଛେପ ଆଉ ଢୋକି ହୁଏ ନାହିଁ । ସେଇ କଥାରେ ଗଣ୍ଠି ପଡ଼ିଯାଏ, ଗଣ୍ଠି ପଡ଼ି ପଡ଼ି ସୂତା ଅଡୁଆ ହୋଇଯାଏ, ଫିଟାଇଲେ ଆଉ ଫିଟେ ନାହିଁ, ଛିଡ଼ିଯାଏ । ଛିଣ୍ଡାସୂତା କିଛି କାମରେ ଲାଗେ ନାହିଁ । ଅତଏବ କଥା କହିବା ଆଗରୁ ଭାବିବା ଆବଶ୍ୟକ । କାହାକୁ କହୁଛି, କ'ଣ କହୁଛି, କିପରି କହୁଛି ଇତ୍ୟାଦି ବିଷୟରେ ସତର୍କ ହେବା ଉଚିତ୍ । ଏହାକୁ ସ୍ଥାନ କାଳ ଓ ପାତ୍ରର ବିବେଚନା ବୋଲି କୁହାଯାଏ । ବେଳେବେଳେ ନୀରବତା ବହୁତ ଉପକାର କରିଥାଏ । ଟିକିଏ ନୀରବତା କେତେ ବଡ଼ବଡ଼ ଝଡ଼କୁ ଶାନ୍ତ କରିପାରେ । ନୀରବତାର ଶକ୍ତି ପ୍ରବଳ, ସେ ଶକ୍ତି ଅପରାଜେୟ । କେଉଁଠି ନୀରବତା ବରଣୀୟ ତ କେଉଁଠି କେଉଁ ସ୍ୱରରେ କେତେ କଥା ଅଭିନନ୍ଦନୀୟ, ତାହାକୁ ନିଜକୁ ଜାଣିବାକୁ ହେବ, ବୁଝିବାକୁ ହେବ, ଶିଖିବାକୁ ହେବ । ପ୍ରତ୍ୟେକଙ୍କ ନିମନ୍ତେ ଗୋଟିଏ ନିୟମ ଲାଗୁ କରାଯାଇ

ପାରିବ ନାହିଁ । ପରିସ୍ଥିତି ଅନୁସାରେ ସେହି କଥା କହିବାର କଳାକୁ ଶିଖିବାକୁ ହେବ । କେଉଁ ଶବ୍ଦ କେଉଁଠାରେ କେଉଁ କଥା ପାଇଁ କହିବାକୁ ହେବ ତାକୁ ନିଜକୁ ଆବିଷ୍କାର କରିବାକୁ ହେବ । ତାହା କେଉଁ ବହିପାଠରେ ନାହିଁ କିମ୍ବା ଆନୁଷ୍ଠାନିକ ଡିଗ୍ରୀ ଡିପ୍ଲୋମାରେ ନାହିଁ । ଏହା ସଂପୂର୍ଣ୍ଣ ବ୍ୟକ୍ତିଗତ, ଏଥିପାଇଁ ପ୍ରୟାସ ଓ ପ୍ରଯତ୍ନ କରିବାକୁ ହେବ । ଆମକୁ ଏଇ ଶକ୍ତି ଭଗବାନ ଦେଇଛନ୍ତି । ପ୍ରାଣୀଠାରୁ ଅଧିକ କେତେ କଥା ସେ ଆମକୁ ଦେଇଛନ୍ତି । ସେଥିମଧ୍ୟରୁ ଗୋଟିଏ ହେଉଛି ଚିନ୍ତାଶକ୍ତି ଏବଂ ଅନ୍ୟଟି ହେଉଛି ବାକ୍‌ଶକ୍ତି । ଚିନ୍ତାଶକ୍ତି ଓ ବାକ୍‌ଶକ୍ତି ପରସ୍ପର ସହ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଚିନ୍ତାଶକ୍ତି ବ୍ୟତୀତ ବାକ୍‌ଶକ୍ତି ଅର୍ଥହୀନ ଏବଂ ବାକ୍‌ଶକ୍ତି ବ୍ୟତୀତ ଚିନ୍ତାଶକ୍ତି ଅପୂର୍ଣ୍ଣ । ଅତଏବ ବାକ୍‌ଶକ୍ତିର ମୂଳଉତ୍ସ ହେଉଛି ଚିନ୍ତାଶକ୍ତି । ଯାହାର ଚିନ୍ତାଶକ୍ତି ଯେତେ ଅଧିକ ତାହାର ବାକ୍‌ଶକ୍ତି ସେତେ ପରିବେଶ ଉପଯୋଗୀ, ସେତେ ଗ୍ରହଣୀୟ ଓ ସେତେ ମହନୀୟ । ଚିନ୍ତାଶକ୍ତିଭିତ୍ତିକ ବାକ୍‌ଶକ୍ତି ବଢ଼ାଇବା ପାଇଁ ଆବଶ୍ୟକ ଅନ୍ୟଠାରୁ ଶୁଣି ଶିଖିବାର ମନୋବୃତ୍ତି ପୁଣି ପୁସ୍ତକ ଅଧ୍ୟୟନ ପୂର୍ବକ ଶିଖିବାର ମାନସିକତା । ମାଆ ପେଟରୁ ସବୁକିଛି ଶିଖିବାକୁ ହୋଇନଥାଏ, ପରେ ଦେଖି, ଶୁଣି, ବୁଝିକରି ବହୁ ଜିନିଷ ଶିଖିବାକୁ ହୁଏ । ଶିଖିବା ପାଇଁ ଆଗ୍ରହ ଓ ଆନ୍ତରିକତା ଏକାନ୍ତ କାମ୍ୟ ।

ବ୍ୟବହାରରେ ସତର୍କତା ହେଉଛି ଅନ୍ୟ ଏକ ସତର୍କତା । କାହାକୁ କିପରି ବ୍ୟବହାର କରିବାକୁ ହେବ ତାହା ନିଜକୁ ଶିଖିବାକୁ ହେବ । ଏଥିପାଇଁ ବିଦ୍ୟାଳୟ ମହାବିଦ୍ୟାଳୟ ଅଥବା ବିଶ୍ୱବିଦ୍ୟାଳୟ ଖୋଲା ହୋଇ ନାହିଁ । ଅନ୍ୟମାନଙ୍କର ଅଭିଜ୍ଞତା ଏବଂ ନିଜର ଅଭିଜ୍ଞତା ସହିତ ପଢ଼ାଶୁଣାରୁ ଏହା ଶିଖିବାକୁ ହେବ । ନ ଶିଖିଲେ ହଟହଟା ହେବାକୁ ପଡ଼ିବ । ତାକୁ ଯାକୁ ଦୋଷ ଦେଇ ଦେଇ ଜୀବନ ସରିଯିବ । ଚାଲି ନ ଜାଣି ବାଟର ଦୋଷ ଦେବାପରି କଥାଟି ହେବ । କିଏ ଗୁରୁ, କିଏ ଗୁରୁଜନ, କିଏ ଲଘୁଜନ ତଦନୁସାରେ ବ୍ୟବହାର କରିବାକୁ ପଡ଼ିବ । ସାଙ୍ଗକୁ ଯେପରି କଥା କୁହାଯିବ ଶାଶୁଙ୍କୁ ସେପରି କୁହାଯିବ ନାହିଁ, ବନ୍ଧୁଙ୍କୁ ଯେପରି ବ୍ୟବହାର କରାଯିବ, ଉପରିସ୍ଥ ଅଫିସରଙ୍କୁ ସେପରି ବ୍ୟବହାର କରାଯିବ ନାହିଁ । କେଉଁଠାରେ ନମ୍ରତା, କେଉଁଠାରେ ଶାଳୀନତା, କେଉଁଠାରେ ସମଧର୍ମିତା ପୁଣି କେଉଁଠାରେ ସମମର୍ମିତା ରଖି ବ୍ୟବହାର କରିବାକୁ ହେବ । ପୁଣି କେଉଁଠାରେ ''ଗୋଡ଼ାଇଥିବ ଧରିବନି, ଉଞ୍ଚେଇଥିବ ମାରିବନି''ର ନୀତି ଅବଲମ୍ବନ କରିବାକୁ ହେବ । ଏସବୁ ପାଠ ନୁହେଁ, ବହିର ପାଠ ଯଥେଷ୍ଟ ନୁହେଁ । ପାଠ ସହିତ ଶାଠ ମିଶିଲେ ତାହା ମଣିକାଞ୍ଚନର ସଂଯୋଗ ଘଟାଏ, କମକଟା ହୀରାପରି ଉଜ୍ଜ୍ୱଳି ଉଠେ ।

ବ୍ୟବହାର ଯଥାଯୋଗ୍ୟ ନ ଥିଲେ ସବୁକଥା ବିଗିଡ଼ିଯାଏ, ଅଲଣା ତିଅଣ ପରି ପରିବେଶ ଅରୁଚିକର ହୋଇଯାଏ । ସମୟ ଭଣଜାକୁ ମାମୁ କରିଦିଏ ୯.ତ୍ର ମାମୁତ୍ୱ

ଦେଇପାରେ ନାହିଁ । ମାମୁଦ୍ଧ ଦିଏ ବ୍ୟବହାର । ଯଥାଯଥ ବ୍ୟବହାର ଆଣେ ପରିବେଶ ଓ ବାତାବରଣରେ ସ୍ୱଚ୍ଛତା ଓ ନିର୍ମଳ ଭାବ । ନିଜ ଚାରିପାଖକୁ ସଫା ରଖିବା ବା ଅସନା ମଇଳା କରିବା ପରିବେଶ ପ୍ରତି ଆମର ବ୍ୟବହାର ଉପରେ ନିର୍ଭର କରେ । ଆମେ ଚାହିଁଲେ ଆମ ଚାରିପାଖକୁ ସଫା ରଖିପାରିବା ପୁଣି ପୂତିଗନ୍ଧମୟ କରିପାରିବା । ସବୁକିଛି ନିର୍ଭର କରୁଛି ଆମର ଚଳଣି ବା ବ୍ୟବହାର ଉପରେ । ଗୋଟିଏ ଛୋଟ ଉଦାହରଣରୁ କଥାଟି ଟିକିଏ ଅଧିକ ସ୍ପଷ୍ଟ ହୋଇପାରିବ । ଗୋଟିଏ ସ୍ଥାନରୁ ଦୁଇଜଣ ବସ୍‌ଯାତ୍ରୀ ପ୍ରତ୍ୟେକ ଏକ ଏକ ଚିନାବାଦାମ ପୁଡ଼ିଆ କିଣି ଖାଇଲେ । ଜଣେ ଗୋଟିଏ ଗୋଟିଏ ଚିନାବାଦାମ ମଞ୍ଜିଖାଇ ଚୋପାଟିମାନ ସିଟ୍ ତଳକୁ ପକାଇ ଦେଲେ ଅନ୍ୟଜଣକ ମଞ୍ଜିଖାଇ ଚୋପାଟିକୁ ସେହି କାଗଜରେ ରଖି ବସ୍ ବାହାରକୁ ଠିକଣା ଜାଗା ଦେଖି ପକାଇ ଦେଲେ । ଉଭୟେ ଡିଗ୍ରୀଧାରୀ ଥିଲେ । ମାତ୍ର କିଏ ପାଠୁଆ କିଏ ପାଠୁଆ ନୁହେଁ ବାରି ହୋଇପଡୁଥିଲା ଦୁହିଁଙ୍କ ବ୍ୟବହାରରୁ । ଅତଏବ ବ୍ୟବହାର ପ୍ରମାଣ ଦିଏ ଆଭିଜାତ୍ୟର, ଶୃଙ୍ଖଳିତ ମାନସିକତାର, ଭଦ୍ରତାର ତଥା ମାର୍ଜିତ ରୁଚିର । ଏଥିପାଇଁ କିଛି କଥା କହିବାର ଆବଶ୍ୟକତା ପଡ଼େ ନାହିଁ ।

ଚିନ୍ତାର ସତର୍କତା ହେଉଛି ଆଉ ଏକ ସତର୍କତା ଯାହା ହେଉଛି ସବୁକିଛିର ଉତ୍ସ । ଚିନ୍ତା ମାର୍ଜିତ ହେଲେ କଥାମାର୍ଜିତ ଓ ବ୍ୟବହାର ମଧ୍ୟ ମାର୍ଜିତ ହୋଇଥାଏ । ସ୍ୱାଭାବିକ ଭାବରେ ମନ ଭିତରେ ଈର୍ଷା, କ୍ରୋଧ, ସ୍ୱାର୍ଥପରତା, ପକ୍ଷପାତିତା, ବିରକ୍ତି, ଘୃଣା, ଛଳନା, ପ୍ରତାରଣା ସମେତ ବହୁ ବିରୋଧଭାବ ଆସେ । ଏସବୁ ଆସିଲାକ୍ଷଣି ଏମାନଙ୍କୁ ଗୋଟି ଗୋଟିଗୋଟି ଚିହ୍ନି ମନରୁ ବାହାର କରିଦେବାକୁ ପଡ଼ିବ । ଅନ୍ୟଥା ଏମାନେ ମନରେ ଆସ୍ଥାନ ଜମାଇ ମନକୁ ବିଷାକ୍ତ କରିଦେବେ, ମନର ସରସତାକୁ ଟିକ୍‌ଟିକ୍ କରି ଖାଇଯିବେ । ସେଥିପାଇଁ କେବଳ ଆବଶ୍ୟକତା ସତର୍କତା । ଅତଏବ ସତର୍କତା ଏପରି ଏକ କଥା ଯାହାର ତୁଳନା ନାହିଁ । ଜୀବନ ପ୍ରତି ଏହାର ଉପଯୋଗିତାର କଳନା ନାହିଁ ।

❑❑

# ବିନମ୍ରତା ଓ କୃତଜ୍ଞତା

ବିନମ୍ରତା ଏକ ଶବ୍ଦ ମାତ୍ର ନୁହେଁ, ଏକ ସୁକୁମାର ଅନୁଭବ । ମଣିଷ ପାଖରେ ଏହି ଗୁଣଟି ରହିବା ବାଞ୍ଛନୀୟ । ମନ ସହିତ ଏହି ବିନମ୍ରତା ସଂପୃକ୍ତ । ଜୀବନର ଚଲାପଥରେ ଯାହାର ଶ୍ରଦ୍ଧା, ଆଦର, ସାହାଯ୍ୟ ଓ ସହଯୋଗ ଆମକୁ ମିଳିଛି ତାହାର ବିନିମୟରେ ତାଙ୍କ ପ୍ରତି ବିନମ୍ରତା ଆସିବା ସ୍ୱାଭାବିକ । ଶ୍ରଦ୍ଧାରେ ସାନ ବଡ଼ ନ ଥାଏ, ଥାଏ ମନୋବୃତ୍ତିର ମହତ୍ତ୍ୱ । ସେହିପରି ସାହାଯ୍ୟ ଓ ସହଯୋଗରେ ବଡ଼ ବା ସାନ କିଛି ନ ଥାଏ, ଥାଏ ମନୋବୃତ୍ତିର ମହତ୍ତ୍ୱ । ସେହିପରି ସାହାଯ୍ୟ ଓ ସହଯୋଗରେ ବଡ଼ ବା ସାନ କିଛି ନ ଥାଏ, ଥାଏ ନିର୍ମଳ ମନୋଭାବ । ସେହି ମନୋଭାବକୁ ସମ୍ମାନ ଜଣାଇବା ପାଇଁ ବିନମ୍ରତା ତଥା କୃତଜ୍ଞତା ଏକାନ୍ତ ଆବଶ୍ୟକ । ଶ୍ରଦ୍ଧାଶୀଳ, ସହଯୋଗୀ ବ୍ୟକ୍ତିର ମନୋଭାବଟି ପଛରେ ଥାଏ ସ୍ନେହସିକ୍ତ ଭାବ, ନୈତିକତା ତଥା ଏକ ବଳିଷ୍ଠ ବ୍ୟକ୍ତିତ୍ୱ । ଏ ତ ଗଲା ସହଯୋଗ କରିଥିବା, ସାହାଯ୍ୟ କରିଥିବା ବ୍ୟକ୍ତିଙ୍କର କଥା । ବର୍ତ୍ତମାନ ଦେଖିବା ଏହାକୁ ଗ୍ରହଣ କରିଥିବା ବ୍ୟକ୍ତିଙ୍କର କଥା । ବିନମ୍ରତାର ସହ ସହାୟ୍ୟ ସ୍ୱୀକୃତିର ନାମ କୃତଜ୍ଞତା । ଯେଉଁଠାରେ ବିନମ୍ରତା ସେଠାରେ କୃତଜ୍ଞତା । ଏ ଉଭୟେ ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଯାହାର ବିନମ୍ରତା ନାହିଁ, ତା ପାଖରେ କୃତଜ୍ଞତା ନ ଥାଏ । ସେ ବ୍ୟକ୍ତି ଭାବେ ସବୁ ତା'ର ପ୍ରାପ୍ୟ, ଦାବିରେ ସେ ସବୁ କିଛି ପାଇବାର ଯୋଗ୍ୟ । ବିନମ୍ରତା ହେଉଛି ମଣିଷପଣିଆର ଅନ୍ୟ ଏକ ଅଭିବ୍ୟକ୍ତି । ଏଥିପାଇଁ ଡିଗ୍ରୀ ଡିପ୍ଲୋମାର ଆବଶ୍ୟକତା ନାହିଁ । ଏଥିପାଇଁ ମହାବିଦ୍ୟାଳୟ ଅଥବା ବିଶ୍ୱବିଦ୍ୟାଳୟକୁ ଯିବା ଆବଶ୍ୟକ ନାହିଁ ।

ଅବଶ୍ୟ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ ଅନ୍ୟ ସାହାଯ୍ୟ ଓ ଉପକାରକୁ କାକତାଳୀୟ ନ୍ୟାୟ ଅଥବା ଆକସ୍ମିକ ଯୋଗାଯୋଗ ବୋଲି ବିଚାରନ୍ତି । କୃତଜ୍ଞତା ତ ଦୂରର କଥା ଗ୍ରହଣ କରିବାର ସାମାନ୍ୟ ସ୍ୱୀକୃତି ଚିହ୍ନ ମଧ ମନରେ ପ୍ରକଟିତ ହୁଏ ନାହିଁ । ଖାଣ୍ଟି ମଣିଷ ପୁଣି ଭଲ ମଣିଷକୁ ଚିହ୍ନିବାକୁ କୃତଜ୍ଞତା ଏକ ମାନଦଣ୍ଡ, ମାପକାଠି ।

ପ୍ରଥମ କଥା ହେଲା ଭଗବତ କରୁଣା ଯାହା ବଳରେ ଆମେ ଜୀବନ ଧାରଣ କରିଛୁ । ତାଙ୍କ କୃପାବଳରେ ଆମକୁ ମିଳିଛି ଯାହା କିଛି ଯଶ, ଧନ,ମାନ, ସମ୍ମାନ, ଆନନ୍ଦ ଇତ୍ୟାଦି ଇତ୍ୟାଦି । ସେହି କୃପା ଆମ ପାଖେ ପାଖେ ରହି ଆମକୁ ସୁରକ୍ଷା ଦେଉଛନ୍ତି, ଆମ ହାତ ଧରି ଆଗକୁ ଚାଲିଛନ୍ତି । ତାଙ୍କ ଶକ୍ତିରେ ଆମେ ଶକ୍ତିମାନ । ତାଙ୍କ ପ୍ରତି ବିନମ୍ରତା ହିଁ ତାଙ୍କ ପ୍ରତି କୃତଜ୍ଞତା । ତାଙ୍କ ଦିବ୍ୟଦାନକୁ ସ୍ୱୀକୃତି ପ୍ରଦାନ ହିଁ କୃତଜ୍ଞତା । ସେ ଆମର ଗୁରୁ, ଗୁରୁଜନ, ଗରୀୟାନ । ତାଙ୍କ ଦାନକୁ ସଦ୍‌ବ୍ୟବହାର କରିବା ହିଁ ଯଥାର୍ଥ ବିନମ୍ରତା । ନିଜକୁ ମାଲିକ ନ ଭାବି ରକ୍ଷକ ଭାବିବାର ମାନସିକତା ଆସିଲେ ଅହଂଭାବ ମନରୁ ଦୂର ହୁଏ । ଅହଂଭାବ ଯେତିକ କମେ ବିନମ୍ର ଭାବ ସେତିକି ବଢ଼େ । ମନେପଡ଼େ ଶ୍ରୀରାମକୃଷ୍ଣ ପରମହଂସଙ୍କ କଥା । ସେ ସବୁ କିଛିକୁ ମା'ଙ୍କର ଦାନ ବୋଲି ବିଚାର କରିଥିଲେ । ସେ ମୁକ୍ତକଣ୍ଠରେ କହୁଥିଲେ, "ହେ ମାଆ, ନିଅ ତୁମ ଯଶ, ନିଅ ତୁମ ଧନ, ସବୁ ତ ତୁମ ଦାନ, ସବୁ ତୁମ ଦାନ' । ଭଗବାନଙ୍କ ପାଇଁ କୃତଜ୍ଞତା ଜଣାଇବା ନିମନ୍ତେ ସମସ୍ତ ଭାଷା ଅକୁଳାଣ ହେବ । ଆମର ଟିକିଏ ଖୁସିରେ ସେ ବହୁତ ଖୁସି ହୁଅନ୍ତି । ଆମର ମୁହଁ ଶୁଖିଗଲେ ଯାହାର ଅନ୍ତର ବିଦୀର୍ଣ୍ଣ ହୋଇଯାଏ ସେ ହେଉଛନ୍ତି ଭଗବାନ । ସେ ଆମ ଭିତରେ ଅଛନ୍ତି, ଆମ ବାହାରେ ଅଛନ୍ତି, ଆମକୁ ଧରି ରଖିଛନ୍ତି । ସେ ମାଟି ହୋଇ ଆମକୁ ଧରି ରଖିଛନ୍ତି, ପାଣି ହୋଇ ଆମକୁ ବଞ୍ଚାଇ ରଖିଛନ୍ତି, ଆମ ନିଃଶ୍ୱାସପ୍ରଶ୍ୱାସରେ ପବନ ହୋଇ ପ୍ରବାହିତ ହେଉଛନ୍ତି, ଆଖିରେ ଜ୍ୟୋତି ହୋଇ ଆମକୁ ସବୁ କିଛିକୁ ଦୃଶ୍ୟମାନ କରାଉଛନ୍ତି । ସୂର୍ଯ୍ୟରେ ଆଲୋକ ସିଏ, ଶିଶୁର ହସରେ ସିଏ, ମାଟିରେ ପବିତ୍ର ଗନ୍ଧ ସିଏ, ବରଫର ଶୀତଳତା ସିଏ, ଅଗ୍ନିର ଉତ୍ତାପ ସିଏ । ଗୋଟିଏ ପ୍ରଣାମ ନୁହେଁ, କୋଟିଏ ପ୍ରଣାମ ତାଙ୍କ ପାଇଁ ନିଅଣ୍ଟ ହେବ । ତାଙ୍କ ପାଇଁ ପୂଜାର ସାମଗ୍ରୀ ଗଙ୍ଗା ବାରି ନୁହେଁ, ଭକ୍ତ ନୟନର ଅଶ୍ରୁ । ତାଙ୍କ ଉପରେ ଅତୁଟ ଭରସା ହିଁ କୃତଜ୍ଞତାର ଅନ୍ୟ ରୂପ ।

ମାଟି,ପାଣି, ପବନ, ଆଲୋକ କେହି ମାତ୍ର ଜଡ଼ ଭୌତିକ ଉପାଦାନ ନୁହନ୍ତି, ପ୍ରତ୍ୟେକ ଏକ ଏକ ଚିନ୍ମୟ ଉପାଦାନ । ସବୁ ଭିତରେ ରହିଛି ଅମାପ ସାମର୍ଥ୍ୟ, ଅସୀମ ଶକ୍ତି । ସେହି ଶକ୍ତି ଏହି ଜଗତକୁ ସରସ ସୁନ୍ଦର ଓ ପ୍ରାଣବନ୍ତ କରି ରଖିଛି । ଆମ ପାଇଁ

ଏମାନଙ୍କର ଅବଦାନ ଅସୀମ । ଏମାନଙ୍କ ବ୍ୟତୀତ ଆମର ବଞ୍ଚିବା ଅସମ୍ଭବ । ଅତଏବ ଏମାନଙ୍କ ପ୍ରତି ବିନମ୍ରତା ତଥା କୃତଜ୍ଞତା ଏକାନ୍ତ କାମ୍ୟ ।

ପିତାମାତା ଆମ ପାଇଁ ଜୀବନ୍ତ ଦେବତା । ଭକ୍ତକବି ମଧୁସୂଦନ ରାଓ ପିତାମାତାଙ୍କୁ ପ୍ରତ୍ୟକ୍ଷ ଦେବତା ବୋଲି ଉଲ୍ଲେଖ କରିଛନ୍ତି । ସେ ଦୁହିଁଙ୍କ ଶ୍ରଦ୍ଧା, ତ୍ୟାଗ, ସ୍ନେହର ପଟାନ୍ତର ନାହିଁ । ପିତାଙ୍କୁ ଆକାଶ ଠାରୁ ବଡ଼ ଓ ମାତାଙ୍କୁ ପୃଥିବୀ ଠାରୁ ବଡ଼ ବୋଲି ଶାସ୍ତ୍ରମାନଙ୍କରେ କୁହାଯାଇଛି । ପିତାମାତାଙ୍କ ଋଣ କାଳେକାଳେ ଅଶୁଝା ବୋଲି କୁହାଯାଇଛି । ନିଜ ଜୀବନର ସୁଖସୁବିଧାକୁ ଜଳାଞ୍ଜଳି ଦେଇ ଏମାନେ ଆମ ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କରିଥାନ୍ତି । ବାସ୍ତବରେ ଆମେ କଳନା କରିପାରିବା ନାହିଁ ପିତାମାତାଙ୍କ ମହତ୍ତ୍ୱକୁ ଓ ଗୁରୁତ୍ୱକୁ । ସମୁଦ୍ରକୁ ଜାଲ ପକାଇ ଧରିହେବ ନାହିଁ, ସେହିପରି ପିତାମାତାଙ୍କ ମହନୀୟତାକୁ କଥାରେ କହି ହେବ ନାହିଁ । କିଛି ସେମାନଙ୍କୁ ଦେଇ ହେବ ନାହିଁ, ଯେତେ ଯାହା ଦେଲେ ମଧ କମ ହେବ । କେବଳ ଦେଇ ହେବ ବିନମ୍ର କୃତଜ୍ଞତା । କୃତଜ୍ଞତାର ସହିତ ପାଦ ଛୁଇଁ ପ୍ରଣାମପୂର୍ବକ ନିଜକୁ ଧନ୍ୟ ମଣିବାକୁ ହେବ । ଆମେ ଆମ ପିତାମାତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କଲେ ଆମ ପିଲାମାନେ ଆମ ପ୍ରତି କୃତଜ୍ଞତା ପ୍ରକାଶ କରିବେ ।

କେବଳ ପିତାମାତା ନୁହନ୍ତି, ଗୁରୁ ଗୁରୁଜନମାନଙ୍କ ପ୍ରତି ବିନମ୍ରତା ପ୍ରଦର୍ଶନ ଆମର ପରମ କର୍ତ୍ତବ୍ୟ । ଶିକ୍ଷାଗୁରୁ ଓ ଦୀକ୍ଷାଗୁରୁ ଉଭୟଙ୍କର ଦାନ ଅସୀମ । ଅକ୍ଷର ଶିଖାଇବା, ପାଠ ପଢ଼ାଇବା, ଶୁଭ ମନାସିବା, ବାଟ ଦେଖାଇବା, ପୁଣି ହାତ ଧରି ବାଟ ଚଲାଇବା କ୍ଷେତ୍ରରେ ଶିକ୍ଷାଗୁରୁଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କ ଋଣ କାଳେ କାଳେ ଶୁଝି ହୁଏ ନାହିଁ । କୃତଜ୍ଞତା ମାଧ୍ୟମରେ ସେହି ଋଣ ଶୁଝିବାର ପ୍ରୟାସ କରାଯାଏ ମାତ୍ର ।

ଦୀକ୍ଷାଗୁରୁଙ୍କ ଅବଦାନ ମାପି ହୁଏ ନାହିଁ । ବଞ୍ଚିବାରକଳା, ଜୀବନ ବାଟରେ ଚାଲିବାର କୌଶଳ ସର୍ବୋପରି ଭଗବତ ଉପଲବ୍ଧିର ମାର୍ଗ ଦର୍ଶାଇ ସେ ଯେଉଁ ଉପକାର ଆମର କରିଥାନ୍ତି, ତାହାକୁ ଭାଷାରେ କହିହେବ ନାହିଁ । ସେ ଆମ ପାଇଁ ଦେବତାର ପ୍ରତିନିଧି ହୋଇଥାନ୍ତି । ଗୁରୁଙ୍କ ମାଧ୍ୟମରେ ଭଗବାନ ଅବତରି ଆସନ୍ତି ବୋଲି ଶାସ୍ତ୍ରମାନଙ୍କରେ ଉଲ୍ଲେଖ କରାଯାଇଛି । ସେହି ଗୁରୁଦେବଙ୍କୁ ଯେତେ ପ୍ରଣାମ ଜଣାଇଲେ ମଧ ତାଙ୍କ ଋଣ ଶୁଝି ହେବ ନାହିଁ । କୌଣସି ଦ୍ରବ୍ୟ ଦ୍ୱାରା ତାଙ୍କ ଋଣ ଶୁଝି ହେବ ନାହିଁ । ଋଣ ତ କେଉଁ ବାଟରେ ଶୁଝି ହେବ ନାହିଁ । କେବଳ ଟିକିଏ ପ୍ରୟାସ କରିହେବ ବିନମ୍ରତା ଓ କୃତଜ୍ଞତା ମାଧ୍ୟମରେ ।

ଆମ ଦେଶ ପାଇଁ ଆମ ମନରେ ବିନମ୍ରତା ଏକାନ୍ତ ଜରୁରୀ । ଆମ ଦେଶ ଆମକୁ ପରିଚିତି ଦେଇଛି । ଆଧ୍ୟାତ୍ମିକତା ହେଉଛି ଆମର ସ୍ୱତନ୍ତ୍ରତା ଯାହାର ତୁଳନା ନାହିଁ କି କଳନା ନାହିଁ । ଆମର ଗୌରବ ଯେ ଆମେ ଏଇ ଦେଶର ସନ୍ତାନ । ଏ ମାଟି ଆମ ପାଇଁ

ସ୍ୱର୍ଗ ଠାରୁ ବଡ଼ । ମନେପଡ଼େ ସ୍ୱାମୀ ବିବେକାନନ୍ଦଙ୍କ କଥା । ସେ କହୁଥିଲେ, 'ସଦର୍ପରେ ଡାକି କହ, ଭାରତର ମୃତ୍ତିକା ମୋର ସ୍ୱର୍ଗ, ଭାରତର ଦେବଦେବୀ ମୋର ଈଶ୍ୱର, ଭାରତର ସମାଜ ମୋର ଶୈଶବର ଶିଶୁଶଯ୍ୟା, ମୋର ଯୌବନର ଫୁଲବନ, ମୋର ବାର୍ଦ୍ଧକ୍ୟର ବାରାଣସୀ ।'

ଅତଏବ ଆମ ଦେହ, ପ୍ରାଣ, ମନ ଓ ଆତ୍ମା ଯାହାଙ୍କ ସ୍ନେହ, ଦୟା, ଶ୍ରଦ୍ଧା, ତ୍ୟାଗ, ପ୍ରେମରେ ବନ୍ଧା ହୋଇଛି, ଆମେ ସେମାନଙ୍କୁ ବିନିମୟରେ କିଛି ଦେଇପାରିବା ନାହିଁ । ସେ ଦାନର ପ୍ରତିଦାନ ନାହିଁ । ମନରେ ବିନମ୍ରତା ଓ ଅନ୍ତରରେ କୃତଜ୍ଞତାରେ ସେମାନଙ୍କ ସେବା କରିପାରିଲେ ଋଣ ତ ଶୁଝିପାରିବା ନାହିଁ, କେବଳ ଟିକିଏ ଆତ୍ମସନ୍ତୋଷ ପାଇବା । ସେହି ଆତ୍ମସନ୍ତୋଷ ଟିକକ ଆଣିଦବ ଆମ ଜୀବନର ସାର୍ଥକତା ଓ ଆମ ଜନ୍ମର ସାରବତ୍ତା ।

□□

# ବିବେକ ଓ ବିଚାର

ଧନ ଆମର ଆବଶ୍ୟକ ମାତ୍ର ଧନ ହିଁ ଜୀବନ ନୁହେଁ । ଯଶ ଆମର ଆବଶ୍ୟକ ମାତ୍ର ଯଶ ହିଁ ଜୀବନ ନୁହେଁ । ଯେଉଁମାନେ ଧନମାନ ଯଶକୁ ଜୀବନ ବୋଲି ଭାବିଥାନ୍ତି ସେମାନେ ପ୍ରକୃତରେ ଜୀବନକୁ ବୁଝିନଥାନ୍ତି । ଜୀବନର ସ୍ୱାଦକୁ ଅନୁଭବ କରିନଥାନ୍ତି । ସେମାନେ ଟିକିଏ ଅସୁବିଧା ପଡ଼ିଲେ ବିଚଳିତ ହୋଇପଡ଼ନ୍ତି, ବିବ୍ରତ ହୋଇଯାଆନ୍ତି । ବିଭ୍ରମିତ ହୋଇପଡ଼ିବାରୁ ଚାରିଦିଗ ସେମାନଙ୍କୁ ଅନ୍ଧାରିଆ ଦିଶେ । ଘର ବାହାର ବିଷପ୍ରାୟ ଲାଗେ, ପାଦତଳୁ ମାଟି ଖସିଗଲା ପରି ଲାଗେ ।

ବାସ୍ତବରେ ଜୀବନ ଏକ ଅନୁଭବ । ଜୀବନରେ ଘଟୁଥିବା ଘଟଣାମାନ ଅନୁଭୂତି ଆଣି ଦିଅନ୍ତି, ଅନୁଭୂତି ମାନଙ୍କର ସାରନିର୍ଯ୍ୟାସ ହେଉଛି ଅନୁଭବ । ଏହା ଅତ୍ୟନ୍ତ ସୂକ୍ଷ୍ମ ଓ ଗଭୀର । ଯାହାର ଅନୁଭବ ଯେତେ ଅଧିକ ତା'ର ଜୀବନ ସେତେ ବେଶୀ ସାର୍ଥକ । ସମୁଦ୍ରରେ ଲହରୀମାନ ରହିଛନ୍ତି ମାତ୍ର ଲହରୀମାନେ ସମୁଦ୍ର ନୁହନ୍ତି । ସେହିପରି ଜୀବନରେ ଘଟଣାମାନ ରହିଥାନ୍ତି ମାତ୍ର ଘଟଣାମାନେ ଜୀବନ ନୁହନ୍ତି ବା ଘଟଣାମାନଙ୍କ ସମାହାର ଜୀବନ ନୁହେଁ । ଏସବୁ ସହିତ ଆଉ କିଛି କଥା ମିଶିଲେ ଜୀବନ ହୁଏ । ଆଉକିଛି କଥା ମାନେ ଅନୁଭବ ।

ଏହି ଅନୁଭବଟି ଛାଡ ହେଲେ ଘଟଣାମାନ ହେଉଛନ୍ତି ସିଡ଼ି । ଅର୍ଥ, ଖାଦ୍ୟ, ବସ୍ତ୍ର, ବାସଗୃହ, ମାନ, ଯଶ, କ୍ଷମତା ପ୍ରଭୃତି ଉପାଦାନକୁ ଭିତ୍ତିକରି ଘଟଣାମାନ ସଂଗଠିତ ହୁଏ । ଘଟଣାମାନଙ୍କରେ ବନ୍ଧା ପଡ଼ିଗଲେ ବା ବାନ୍ଧି ହୋଇଗଲେ ଜୀବନକୁ ଅନୁଭବ

କରିହୁଏ ନାହିଁ । ଘଟଣାର ଚାରିପଟେ ଘୂରି ଘୂରି ଦିନ ସରିଯାଏ । ଘଟଣାମାନ ବାହାରେ ଘଟନ୍ତି ଓ ମନରେ ଆଲୋଡ଼ନ ସୃଷ୍ଟି କରନ୍ତି । କେବଳ ବାହାରେ ବାହାରେ ରହି ସମୟ କଟାଇ ଦେବା ହେଉଛି ଜୀବନ ଜୀଇଁବା । ବାହାରୁ ଭିତରକୁ ଯିବା ଓ ଭିତରୁ ବାହାରକୁ ଆସିବାର ଜୀବନ ହେଉଛି ଅନୁଭବର ଜୀବନ । ଅନ୍ୟ ଅର୍ଥରେ କୁହାଯିବ ଯେ ବାହାର ଜୀବନ ଜୀଇଁବା ସହିତ ଭିତର ଜୀବନ ବଞ୍ଚିବାକୁ ମିଶାଇ ଦେଲେ ଅସଲ ଜୀବନର ପରିଚୟ ମିଳେ ।

ଏହାକୁ ନିଦାଜୀବନ ବୋଲି କୁହାଯାଇପାରେ । ଭିତର ଜୀବନରେ ଅଛି ସନ୍ତୋଷ, ସମତା, ଶ୍ରଦ୍ଧା, ସ୍ନେହ, କ୍ଷମା, ଦୟା, ତ୍ୟାଗ, ଅନୁରାଗ, କୃତଜ୍ଞତା, ଶୁଭେଚ୍ଛା, ସହାନୁଭୂତି, କର୍ତ୍ତବ୍ୟବୋଧ ସମେତ ବହୁ ସଦ୍‌ଗୁଣ । ଏସବୁ ଗୁଣର ମୂଳଦୁଆ ହେଉଛି ମଣିଷ ପଣିଆ । ମନକୁ ନେଇ ବାହାର ଜୀବନ ଗଢ଼ି ଉଠେ ମାତ୍ର ବିବେକକୁ ନେଇ ଭିତର ଜୀବନ ଗଢ଼ି ଉଠେ । ମନ ଓ ବିବେକର ସମନ୍ୱୟରେ ପୂର୍ଣ୍ଣାଙ୍ଗ ଜୀବନ ଗଢ଼ି ଉଠେ । ସମନ୍ୱୟର ଅର୍ଥ ଗୋଟିକ ଭିତରେ ଆଉ ଗୋଟିଏ ହଜିଯିବା ନୁହେଁ, ବରଂ ଦୁଇଟି ଭିତରେ ଭାରସାମ୍ୟ ରହିବା ।

ଅତଏବ କଥାଟିଏ କହିଲାବେଳେ ଖାଲି ମନକୁ ନେଇ କଥା କହିଲେ ଚଳିବ ନାହିଁ, ଏଥି ସହିତ ବିବେକକୁ ଯୋଡ଼ିବାକୁ ହେବ । ଫଳରେ ଅନେକ ମାନସିକ ଯନ୍ତ୍ରଣାରୁ ମୁକ୍ତି ମିଳିବ, ଅଶାନ୍ତିରୁ ମୁକ୍ତି ମିଳିବ, କାମଟିଏ କଲାବେଳେ ମନ ସହିତ ବିବେକକୁ ଯୋଡ଼ିବାକୁ ପଡ଼ିବ । ଯୋଡ଼ିଲେ ଅନେକ ଦୁଃଖ କଷ୍ଟରୁ ମୁକ୍ତି ମିଳିବ । ଭୁଲ କାମ ନ ହୋଇ ଠିକ୍ ଠିକ୍ କାମ ହେବ । ଟିକିଏ ପଛକୁ ଘୁଞ୍ଚି ଆସି ବିବେକର ପରାମର୍ଶ ଲୋଡ଼ିଲେ କର୍ମ ସୁନ୍ଦର, ତା'ର ଫଳ ମଧ୍ୟ ମଧୁର ହେବ । ଅକାର୍ଯ୍ୟ ହେବନାହିଁ କି ଅସୁବିଧା ଭୋଗ କରିବାକୁ ପଡ଼ିବ ନାହିଁ । ବିବେକର ନିର୍ଦ୍ଦେଶ ହିଁ ଅସଲ ନିର୍ଦ୍ଦେଶ । ବିବେକର ସ୍ୱର ହିଁ ଈଶ୍ୱରଙ୍କ ସ୍ୱର । ବିବେକଟି ମଞ୍ଜି ହେଲେ ମନ ତାହାର ବେଢ଼ଣ । ବିବେକର ସ୍ୱର ଅତି ଧୀର, ମଧୁର, ଅତ୍ୟନ୍ତ ଅନ୍ତରଙ୍ଗ ଓ ଆନ୍ତରିକ । ବିବେକ ନିଜକୁ ଜାହିର କରନ୍ତି ନାହିଁ । ନୀରବରେ ବାଟ ଦେଖାନ୍ତି, ହାତ ବଢ଼ାଇଲେ ହାତଧରି ବିଲବନଖାଲଖମା ପାରି କରାଇ ଦିଅନ୍ତି । ଆମ ଭିତରେ ସେ କି ଦିନ କି ରାତି କି ବର୍ଷା କି ଖରା ସବୁବେଳେ ରହିଛନ୍ତି । ତାଙ୍କର କାମ ହେଲା ଆମକୁ ଠିକ୍ ବାଟରେ ଚଲାଇବା ଯଦି ଆମେ ଚଲାବାଟରେ ତାଙ୍କର ସହାୟତା ଲୋଡ଼ୁ ।

ବିବେକର ସହାୟତାରେ ଆମେ ଜୀବନର ସ୍ୱାଦ ଚାଖି ପାରିବା । ପ୍ରଥମ ସର୍ତ୍ତଟି ହେଲା ଆମେ ଜୀବନର ସ୍ୱାଦ ଚାଖିବାକୁ ଆଗ୍ରହୀ ହେବା । ତା'ପରେ ଅଭ୍ୟାସ କରିବା

ମନ ଓ ବିବେକକୁ ଯୋଡ଼ିବା ନିମନ୍ତେ । ଅଭ୍ୟାସ ବଳରେ ଏହି କାର୍ଯ୍ୟଟି ସମାହିତ ହୋଇପାରିବ । ବିବେକ ଯେତେ ଯୋଡ଼ାଯିବ, ଜୀବନ ସେତେ ଧନ୍ୟ ହେବ । ଜୀବନର ଲକ୍ଷ୍ୟ ସେତେ ଅଧିକ ଭାବରେ ପୂରଣ ହେବ । ଜୀବନ ସାର୍ଥକ ହେବ ।

ଅତଏବ ବିବେକ ହେଉଛି ଦିବ୍ୟ ଚେତନାର ପ୍ରତୀକ । ସେ ମର୍ତ୍ତ୍ୟର ନଦୀ ନୁହେଁ, ସ୍ୱର୍ଗର ଗଙ୍ଗାଧାରା, ସେ ମର୍ତ୍ତ୍ୟର ଫୁଲ ନୁହେଁ ଗଗନର ତାରା । ତାଙ୍କ ସ୍ପର୍ଶରେ ମାଟି ହୋଇଯାଏ ସୁନା, ଲୁହା ହୋଇଯାଏ ଚୁମ୍ବକ । ସେ ଦିବ୍ୟଧାମରୁ ଆସି ଆମ ଭିତରେ ରହିଛନ୍ତି । ସେ ଆମର ଶୁଭଚିନ୍ତକ, ପଥ ପ୍ରଦର୍ଶକ । ସେ ଆମକୁ ପ୍ରାଣ ଭରି ଭଲପାଆନ୍ତି । ଆମର ଖୁସିରେ ସେ ଖୁସି ହୁଅନ୍ତି । ସେଇ ବିବେକ ଓ ମଣିଷପଣିଆର ଜୟ ହେଉ ।



# ଭାବ ହିଁ ଜୀବନ

ଭାବହିଁ ଜୀବନ, ଅଭାବ ହିଁ ମୃତ୍ୟୁ । ଏ ଭାବ ମନର ଭାବ ଆଉ ଏ ଅଭାବ ହେଉଛି ମନର ଅଭାବ । ଧନର ଅଭାବ, ଯଶର ଅଭାବ, କ୍ଷମତାର ଅଭାବ କଥା ଏଠାରେ କୁହାଯାଇନାହିଁ । ଭାବ କହିଲେ ପ୍ରେମର ଭାବ, ବାତ୍ସଲ୍ୟଭାବ, କରୁଣ ଭାବ, ଶାନ୍ତଭାବ, ଭକ୍ତି ଭାବ ଇତ୍ୟାଦି ଇତ୍ୟାଦି ଭାବର କଥା ଏଠାରେ କୁହାଯାଉଛି ।

ପ୍ରେମର ଭାବ କହିଲେ କାମର କଥା କୁହାଯାଉନାହିଁ । କାମ ହେଉଛି ଦେହ ଓ ପ୍ରାଣର ମାତ୍ର ପ୍ରେମ ହେଉଛିମନର ଭାବ । ଯାହା ସୂକ୍ଷ୍ମତଃ ଅନୁଭବ କରି ହୁଏ । ଏଇ ଯେମିତି–

'ତୁମୋ ପ୍ରତି ଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦିଶୁ ନାହିଁ କାହିଁ କିଛି ଆନ ପ୍ରତିକାର
ନୂଆ ଅନ୍ଧ ପ୍ରାୟ ହୋଇ
ବାରମ୍ବାର ଆକୁଳ କରୁଛି ପ୍ରାଣ ସହି ।' (ଉପେନ୍ଦ୍ର ଭଞ୍ଜ)

ପ୍ରେମଭାବ ଯେପରି ମଣିଷର ସହଜାତ, ବାତ୍ସଲ୍ୟଭାବ ମଧ୍ୟ ସେପରି ସହଜାତ, ପିଲାଟିପାଇଁ ଆଶାଠାରୁ ଆଶଙ୍କା ବଳିଯିବା ଏହାର ଅନ୍ୟତମ ଲକ୍ଷଣ । ଝିଅଟି ବିବାହ ପରେ ଶାଶୁଘରକୁ ଗଲାବେଳେ ପିତାମାତାଙ୍କର ମନର ଭାବ ଭାଷାରେ କହି ହେବ ନାହିଁ, କଅଁଳ ପାଦରେ ସଂସାରର ଜଟିଳ ପଥ, ପଙ୍କିଳ ଓ କଙ୍କରିଳ ପଥ ଝିଅଟି କିପରି ଚାଲିବ ସେ କଥା ଭାବିଲେ ଆଖିରୁ ଲୁହ ଝରେ, ଅନ୍ତରରୁ କୋହ ଆସେ । ଘରିଆଡ଼ ଖାଲି ଖାଲି ଲାଗେ, ଖାଁ ଖାଁ ଲାଗେ । ସେତେବେଳେ ଫୁଲରେ ରଙ୍ଗ ନଥାଏ, ଫଳରେ ରସ

ନଥାଏ, ଆକାଶରେ ନୀଳିମା ନଥାଏ, ବନାନୀରେ ସବୁଜିମା ନଥାଏ । କ'ଣ ଲାଗେ, କ'ଣ ଲାଗେ- ତାହା ଅନୁଭବୀ ହିଁ ଜାଣେ ।

ଅବଶ୍ୟ ଆଜିକାଲି ଏ ପରିବେଶ ଏତେ ନାହିଁ । ଶାଶୁଘର ଆଉ ଆଗର ଶାଶୁଘର ହୋଇ ରହିନାହିଁ । ମୋବାଇଲ ଫୋନ ଦୂରକୁ ନିକଟ କରି ଦେଇଛି । ମନରେ ବ୍ୟସ୍ତତା ନାହିଁ, ଅସ୍ଥିରତା ନାହିଁ । ଆଇନକାନୁନ ନାନା ପ୍ରକାରେ ମନକୁ ଦମ୍ଭ କରିଛି । ତଥାପି... ତଥାପି...ତଥାପି । ତଥାପି ବାପ ମାଆଙ୍କର ମନର ଭାବ ହଜିଯାଇନାହିଁ । କେତେ ଆଶଙ୍କା ଝିଅ ମୋର କଥା କହି ଜାଣିବ କି ନାହିଁ, ପରିବେଶର ପ୍ରଭାବ ସହିତ ନିଜକୁ ଖାପଖୁଆଇ ପାରିବ କି ନାହିଁ । ବାପଘରର ଅଲିଅଳତା ସେଠାରେ ତ ମିଳିବ ନାହିଁ । ନ ମିଳିବା ସ୍ୱାଭାବିକ କାରଣ ସେଠାରେ ଭୂମିକା ଅତି ଭିନ୍ନ, ଓଜନିଆ ଭୂମିକା । ବାପ ଘରେ ସିନା ଝିଅର ଭୂମିକା, ଶାଶୁଘରେ ବୋହୂର ଭୂମିକା । ସେଠାରେ ସେ ନଣନ୍ଦର ଭାଉଜ, ଶାଶୁଙ୍କର ବୋହୂ, କେତ୍ରେକେତ୍ରେ ଓଜନିଆ ପଦବୀ ।

ଭକ୍ତିଭାବର ପ୍ରଭାବ ଅସାଧାରଣ । ମନରେ ଭଗବାନଙ୍କ ପ୍ରତି ଏହିଭାବ ଯୋଗୁଁ ଭରସା ଆସେ, ଦମ୍ଭ ଆସେ । ସେଇ ଭରସା ଘଟାଇ ଦିଏ ବହୁ ଅଲୌକିକ ଘଟଣା । ପାଦରେ ଦିଏ ଶକ୍ତି, ମନରେ ଦିଏ ସାହସ । ଆଗକୁ ଯିବାପାଇଁ ପ୍ରାଣରେ ଭରିଦିଏ ଉତ୍ସାହ ଓ ଆଗ୍ରହ । ଭଗବାନଙ୍କୁ ଦୁଃଖ କହିଦେଲେ ମନ ହାଲ୍‌କା ଲାଗେ । ଭଗବାନଙ୍କୁ ନିଜକୁ ଓ ନିଜର ଦୁଃଖକୁ ସମର୍ପଣ କରିଦେଲେ, ବାଟ ଚାଲିବାକୁ ବଳ ଆସେ । ଲଗେ ଆଉ କିଏ ଅଛି ନିଜ ସହିତ ବାଟ ଚାଲିବା ପାଇଁ ।

'ଦୂର ଦିଗହଜା ମରୁ ବାଲୁକାରେ
ନାଗଫେଣୀ କଣ୍ଟାକେତେ
ମୋ ମନ କହୁଛି ଆଉ କିଏ ଅଛି
ଚାଲିବାକୁ ମୋର ସାଥେ ।'

ଭକ୍ତିଭାବର ଫଳଶ୍ରୁତି ହେଉଛି ଆତ୍ମତୃପ୍ତି । ଭକ୍ତିରେ ଫଳଫୁଲ ଜଳଫଳ ଯାହା ଦେଲେ ଭଗବାନ ଗ୍ରହଣ କରନ୍ତି କାରଣ ସେ ଭାବଗ୍ରାହୀ । ଭାବକୁ ନିକଟ ସିଏ ଅଭାବକୁ ଦୂର । ଭକ୍ତିରେ ତାଙ୍କ ଚିନ୍ତା ଭଲ ଲାଗେ । ତାଙ୍କ କଥା ଶୁଣିବାକୁ ଭଲ ଲାଗେ, ତାଙ୍କ ସାନ୍ନିଧ୍ୟ ପାଇବାକୁ ଇଚ୍ଛା ହୁଏ । ଭକ୍ତିରୁ ପ୍ରେମ ଆସେ, ପ୍ରେମ ସହିତ ଭକ୍ତି ମିଶି ପ୍ରେମ ଭକ୍ତି ହୁଏ । ପ୍ରେମର ସଂଜ୍ଞା ଶାସ୍ତ୍ରରେ ଏହିପରି-

'ଦର୍ଶନେ ସ୍ପର୍ଶନେ ବାଃପି ଶ୍ରବଣେ ଭାଷଣେ ପିଃବା
ହୃଦୟସ୍ୟ ଦ୍ରବତ୍ଵଂ ଯତ୍ ତତ୍ ପ୍ରେମ ଇତି କଥ୍ୟତେ ।'

ପ୍ରେମଭକ୍ତିରେ ନିଶାଲାଗେ । ପ୍ରେମଭକ୍ତିର ନିଶା ଯେ କୌଣସି ସୁରାପାନର ନିଶାଠାରୁ ଅଧିକ ବୋଲି ଶ୍ରୀମା କହନ୍ତି । ସେଥିରେ ନଥାଏ ଇନ୍ଦ୍ରିୟ ଲାଳସା, ପ୍ରାଣଗତ, କାମନା ବାସନା । ଥାଏ ନିର୍ମଳ ଆତ୍ମିକ ଆନନ୍ଦ । 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ କୁହାଯାଇଛି-

ଆତ୍ମେନ୍ଦ୍ରିୟ ପ୍ରୀତି ବାଞ୍ଛା ତାରେ ବୋଲି କାମ
କୃଷ୍ଣେନ୍ଦ୍ରିୟ ପ୍ରୀତିବାଞ୍ଛା ଧରେ ପ୍ରେମ ନାମ ।

ପ୍ରେମଭକ୍ତି ବ୍ୟକ୍ତି ଜୀବନକୁ ଧନ୍ୟ କରେ, ପୂର୍ଣ୍ଣ କରେ । ଆଣିଦିଏ ଜୀବନରେ ସରସତା ଓ ସାର୍ଥକତା । ଶ୍ରଦ୍ଧା ହେଉଛି ପ୍ରେମଭକ୍ତିର ମୂଳକଥା ଓ ମୌଳିକତା ।

ଶ୍ରଦ୍ଧା ମଧ୍ୟ ଜାଗତିକ ଜୀବନରେ ଅତ୍ୟନ୍ତ ଆବଶ୍ୟକ । ଶ୍ରଦ୍ଧାରେ ସକଳ ସମସ୍ୟାର ସରଳ ସମାଧାନ ସମ୍ଭବ ହୁଏ । ଶ୍ରଦ୍ଧାରେ ଲାଭକ୍ଷତିର ଅଙ୍କ କଷା ନଥାଏ । ନେବାର କାମନା ନଥାଏ, ଦେବାର ଆଗ୍ରହ ବଳବତ୍ତର ଥାଏ । ଜୀବନ ପ୍ରତି ଶ୍ରଦ୍ଧା ପୁଣି ଜଗତ ପ୍ରତି ଶ୍ରଦ୍ଧା ଆଣିଦିଏ ଆତ୍ମସନ୍ତୋଷ । କେବଳ ଜୀବନ ପ୍ରତି ଶ୍ରଦ୍ଧା ରହିଲେ ଜୀବନର ମହତ୍ତ୍ୱ ବଢ଼ିଯାଏ । ପାରିବାରିକ ଜୀବନ ହେଉ ଅଥବା ସାମାଜିକ ଜୀବନ ହେଉ, ଶ୍ରଦ୍ଧା ହିଁ ସୁବର୍ଣ୍ଣସୂତ୍ର ହୋଇ ବନ୍ଧନର କାରଣ ହୋଇଥାଏ । ବସ୍ତୁ ନୁହେଁ ଏଇ ଶ୍ରଦ୍ଧାର ଭାବ ଜୀବନକୁ ମହନୀୟ କରେ, ପ୍ରସନ୍ନ ରଖେ, ପ୍ରଫୁଲ୍ଲିତ କରେ, ପ୍ରଶାନ୍ତ ରଖେ ।

ଭକ୍ତ କବି ମଧୁସୂଦନଙ୍କ ଭାଷାରେ-

'ଜନକଜନନୀ ସୁତ ସୁତା ଜାୟାଧବ
ସହୋଦର ସହୋଦରା ଆତ୍ମୀୟ ବାନ୍ଧବ
ପ୍ରଭୁ, ଏସର୍ବ ସଂପଦ
ତୋର ଦୟା ନିଦର୍ଶନ ଆହେ ଆଦିକନ୍ଦ ।'

ପିଲାଟିର ମଙ୍ଗଳ ନିମନ୍ତେ ପିତାମାତା ସମସ୍ତ ସୁଖ ସୁବିଧାକୁ ଜଳାଞ୍ଜଳି ଦେଇଥାନ୍ତି । ଲକ୍ଷ୍ୟ ମୋ ପିଲାଟି ଭଲରେ ରହୁ, ସୁବିଧାରେ ରହୁ । ମୋଠାରୁ ଆଗକୁ ଯାଉ । ମନ ପ୍ରାଣ ଶରୀରରେ କଷ୍ଟ ସହିତ ପିଲାମାନଙ୍କର ଚଲାପଥକୁ କୁସୁମିତ କରିବାକୁ ଚେଷ୍ଟା କରୁଥାନ୍ତି ପିତାମାତା । ବିନିମୟରେ କିଛି ପାଇବାର ଲାଳସା ନଥାଏ । ପ୍ରତିଦିନର ଆଶା ନରଖି କେବଳ ଦେଇଚାଲି ଥାଆନ୍ତି ପିତାମାତା ଜୀବନର ଶେଷ ପର୍ଯ୍ୟନ୍ତ । ପିଲାମାନେ ବୁଝନ୍ତୁ କି ନବୁଝନ୍ତୁ ସେ ଦିଗକୁ ସେମାନଙ୍କର ନଜର ନଥାଏ । ପିଲାମାନେ ଯେ ନ ବୁଝନ୍ତି ଏପରି ନୁହେଁ । କେତେକସ୍ଥଳରେ ପିଲାମାନେ ଯେ ବୁଝନ୍ତି ଏକଥାର ଅନେକ ଉଦାହରଣ ରହିଛି । ଏଇ ଯେମିତି ଶ୍ରବଣ କୁମାର ପୁଣି ବାଳକ ସନାତନ ।

ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ବେଳର ଅର୍ଥାତ ୧୮୬୬ ମସିହାର କଥା । ସେ ଦୁର୍ଭିକ୍ଷ ଏତେ କରାଳମୟ ଥିଲା ଯେ ତାହାର ପ୍ରଭାବକୁ ଭାଷାରେ ବର୍ଣ୍ଣନା କରି ହେବ ନାହିଁ ।

## ॥ ଜୀବନର ମୂଲ୍ୟ ଓ ମୂଲ୍ୟବୋଧ ॥

ଗଛରୁ ପତ୍ରକୁ ଲୋକେ ଖାଇଲେ ନିରୁପାୟ ହୋଇ । ତେନ୍ତୁଳି ପତ୍ରର ସିଝା ପାଣି ପିଇଲେ ବାଧ୍ୟ ହୋଇ । ସେତିକିବେଳର ଚିତ୍ରଟିଏ । କବିଙ୍କ ଭାଷାରେ-

'ସନାତନ ନାମେ ବାଳକଟିଏ ସେ
ଦୂର ଗାଁ ଗଣ୍ଡା ବୁଲି
ମାଆ ଭାଇ ପାଇଁ ଭିକ ମାଗୁଥିଲା
କାନ୍ଧରେ ପକାଇ ଝୁଲି ।

x x x x

ଦେଖି ତା ବିକଳ ଦୟାବତୀ ଜଣେ
ଭାତ ଦୁଇଗିନା ଆଣି
କାନିରେ ତାହାର ଢାଳି ଦେଇ ଧୀରେ
ମଧୁରେ ଭାଷିଲେ ବାଣୀ
ପଞ୍ଜରା ହାଡ଼ ତୋ ଗଣି ହେଉଅଛି
ଖାଇ ନାହୁଁ କିରେ ଭାତ
ଖାଇଦେ ମୁଠିକ ନକରି ବିଳମ୍ବ
ଦମ୍ଭ ହେବ ଗୋଡ଼ ହାତ ।

x x x x

ମାଆ ଭାଇ ତା'ର ଅନାହାରେ ଥିବେ
କେମନ୍ତେ ଦେବ ସେ ଖାଇ
ଏହା ଭାବି ଭାବି ସନାତନ ବସେ
ଦେଖି ବରଗଛ ଛାଇ
ଭାତ ଦୁଇ ମୁଠି ରହିଛି କାନିରେ
ଭୋକେ ହୋଇ ଛଟପଟ
ସନାତନ ପ୍ରାଣବାୟୁ ଉଡ଼ିଗଲା
ଛାଡ଼ି ଦେଇ ମାଟିଘଟ
ନଅଙ୍କ ଗଲାଣି ଏବେ ମଧ ଲୋକେ
ମରୁଛନ୍ତି ମାଳମାଳ
ସନାତନ ନାମ ସୁନାଗାର ପରି
ରହିଅଛି ଚିରକାଳ ।'

ହାସ୍ୟ ରସର ପ୍ରଭାବ ଜୀବନରେ ସ୍ୱତନ୍ତ୍ର । ଏହା ନିରାଶାରେ ଆଶା ଆଣେ, ମହୌଷଧି ପରି କାମକରେ ହତାଶାରେ । ଶ୍ରୀଅରବିନ୍ଦ ଏହାକୁ Salt of Life ବୋଲି

କହିଛନ୍ତି । ହସକୁ କେତେ ଅସୁସ୍ଥତାର ପ୍ରତିଷେଧକ ବୋଲି କୁହାଯାଏ । ଆଜିକାଲି ହସକୁ ପ୍ରୟୋଗ କରି କେତେ ଦୁରାରୋଗ୍ୟ ବ୍ୟାଧିର ଉପଶମ କରାଯାଉଛି । ହସ ମାଡୁକି ନ ମାଡୁ କେତେ ଲୋକ ଇଚ୍ଛା କରି ହସୁଛନ୍ତି ଏବଂ ତହିଁରୁ କେତେକାଂଶରେ ଉପକାର ପାଉଛନ୍ତି । କୁହାଯାଏ ଯେ ରାଜାଙ୍କର ବଥ କୌଣସି ପ୍ରକାରେ ଫାଟିଲା ନାହିଁ । ଶେଷରେ କବିସୂର୍ଯ୍ୟ ବଳଦେବ ରଥଙ୍କ ପ୍ରଣୀତ ହାସ୍ୟକଲ୍ଲୋଳ ଗ୍ରନ୍ଥର ଶ୍ରବଣରେ ଉଚ୍ଚ ସ୍ୱରରେ ରାଜା ହସିବାରୁ ବଥ ଫାଟିଗଲା । କବି ଯଦୁମଣି ଥିଲେ ହାସ୍ୟରସିକ । କଥା କଥାରେ ତାଙ୍କର ହାସ୍ୟ ରସିକତା ଫୁଟି ପଡୁଥିଲା । ରାଜା ପଠେଇଲେ, ମିଠା ଆମ୍ବ ଯଦୁମଣିଙ୍କ ନିକଟକୁ ଲେଖା ସହ ଯେ 'ସୁଆଦିଆ ଗଲା ।' ଯଦୁମଣି ଆମ୍ବତକ ଖାଇ ସାରି ଟାକୁଆତକ ପୁନଶ୍ଚ ରଜାଙ୍କ ନିକଟକୁ ପଠାଇ ଦେଲେ ଲେଖା ସହ ଯେ 'ସାରି ଦିଆଗଲା ।' ଯଦୁମଣି ଘରେ ନଥିବାବେଳେ ରଜା ନିଜ ଲୋକଙ୍କୁ ଲଗାଇ ନିଜ ଉଆସରେ ହେବାକୁ ଥିବା ଭୋଜି ନିମନ୍ତେ ଯଦୁମଣିଙ୍କ ବାଡ଼ିରୁ ଦେଶୀଆଳୁ ଖୋଳାଇ ଆଣିଲେ । ଯଦୁମଣି ଘରକୁ କିଛି ସମୟ ପରେ ଫେରିଲେ ଏବଂ ଏକଥା ଜାଣିଲେ । ତତ୍‌କ୍ଷଣାତ୍ ଧାଇଁଲେ ସେ ରଜା ଘରକୁ । ରଜାଙ୍କୁ ସାକ୍ଷାତ୍ କରି କହିଲେ 'ମୋର ପାପ ହେବ, ମୋର ପାପ ହେବ' ଇତ୍ୟାଦି ଇତ୍ୟାଦି ରଜା ହଠାତ୍ ବୁଝି ନପାରିବାରୁ ଯଦୁମଣି ବୁଝାଇ କହିଲେ ଯେ ସେ ଗାତ ଖୋଳି ତହିଁରେ ଦୁଇ ଯାଆନ୍ତି, ଗାତ ପୂରିଗଲେ ସେହି ଗାତରେ ଦେଶୀ ଆଳୁ ମଞ୍ଜିଟିଏ ଲଗାଇ ଦିଅନ୍ତି । ଏଇ ହେଉଛି ରଜା ଆଣିଥିବା ଆଳୁର ଇତିହାସ । ଏହା ଠାକୁର ପୂଜା ନିମନ୍ତେ ଅଯୋଗ୍ୟ । ଏକଥା ଶୁଣି ରଜା ତତ୍‌କ୍ଷଣାତ୍-ମନ୍ତ୍ରୀଙ୍କୁ ଡକାଇ ଭଣ୍ଡାର ଘର ଦେଖାଇ ଯଦୁମଣିଙ୍କୁ ତାଙ୍କ ଆଳୁ ଫେରାଇ ଦେବାକୁ କହିବାରୁ ଯଦୁମଣି ଖୁସିରେ ଯାଇ ଭଣ୍ଡାରଘରୁ ବଡ଼ବଡ଼ ଦେଶୀଆଳୁ ବାଛି ବାଛି ନେଇ ଆସିଲେ । ରଜା ସେହି ବଡ଼ ବଡ଼ ଆଳୁ ସବୁକୁ ଯଦୁମଣିଙ୍କ ଘରକୁ ପଠାଇ ଦେଲେ । ଯଦୁମଣିଙ୍କ ସ୍ତ୍ରୀ ହଠାତ୍ ବେଶୀ କିଛି ବୁଝି ନପାରିଲେ ମଧ୍ୟ ପରେ ସବୁ ବୁଝିଗଲେ ଏବଂ ଯଦୁମଣିଙ୍କ ବୁଦ୍ଧିକୁ ତାରିଫ ନକରି ରହିପାରିଲେ ନାହିଁ ।

ଏହିପରି ବିଚାର କଲେ ଜୀବନରେ ବହୁରସ ଓ ବହୁ ଭାବର ସମ୍ଭାରକୁ ଅନୁଭବ କରାଯାଇପାରେ । ଭାବ ନାହିଁ ତ ରସ ନାହିଁ, ରସ ନାହିଁ ତ ଜୀବନ ନୀରସ ଓ ଶୁଷ୍କ । ଅତଏବ ଭାବ ହିଁ ଜୀବନ । ଭାବ ନାହିଁ ତ ଜୀବନ ନାହିଁ । ଭାବର ଗଭୀରତା ଜୀବନକୁ ସାର୍ଥକ କରିଥାଏ, ଧନ୍ୟ କରିଥାଏ । ସମସ୍ତଙ୍କୁ ଆପଣାର କରିଥାଏ । ସମସ୍ତଙ୍କୁ ଆଦର କରିଥାଏ ଏବଂ ସମସ୍ତଙ୍କ ଦ୍ୱାରା ଆଦୃତ ହୋଇଥାଏ ।

ଶେଷରେ ଏତିକି କୁହାଯିବ ଯେ ଭାବର ମୂଳବୀଜ ପ୍ରତ୍ୟେକ ଭିତରେ 'ଅନ୍ତେବେଳୁତେ' ରହିଛି । ସେହିଭାବକୁ ପରିପୁଷ୍ଟ କରାଇପାରିଲେ ଜୀବନର ସ୍ୱାଦକୁ ଚାଖିହୁଏ ।

❑❑

# ଥିଲେ ଚିରାକନା, ହଜିଲେ ମାଠ

ପାଖରେ ଥିଲେ କେତେକଥା ଚିରାକନା ପରି ଲାଗେ, ହଜିଗଲେ ତାହା ମଠା ହୋଇଯାଏ । ଏହା କେବଳ କଥାର କଥା ନୁହେଁ, ଏକଥାର ଗଭୀରତା ଅଛି । ପାଖରେ ଥିଲାବେଳେ ଅଦରକାରୀ ବା ଅଳ୍ପ ଦରକାରୀ ପରି ଯାହା ଲାଗୁଥାଏ, ଦୂରକୁ ତାହା ଚାଲିଗଲେ ତାହାର ଆବଶ୍ୟକତା ପୂର୍ଣ୍ଣ ଭାବେ ଅନୁଭବ କରି ହୁଏ । ଭାରି ମନେ ପଡ଼େ ତଥା କଥିତ ଚିରାକନାର ରଙ୍ଗ ରୂପ ଓ ଆବଶ୍ୟକତାର କଥା । ଲାଗେ ଯେମିତି ଲିଭିଯାଇଛି ବେଦରୁ ଓଁକାର ଧ୍ୱନି, ହଜିଯାଇଛି ପୂର୍ଣ୍ଣିମାରାତିରୁ ସଫାତୋଫା ଜହ୍ନ । ମଶାରି ଭିତରେ ମଶା ଭ୍ରମିଲା ପରି ମନ ଭ୍ରମୁଥାଏ । ମନ କହୁଥାଏ କିଏ ଆଣି ଦିଅନ୍ତାକି ତଥାକଥିତ ଚିରାକନାଟିକୁ । ଏଇଥର ପାଇଗଲେ ଯତ୍ନରେ ସାଇତି ରଖନ୍ତି, ଆଉ ଯେପରି ହଜନ୍ତା ନାହିଁ । କିନ୍ତୁ ତାହା ମିଳେ ନାହିଁ ଭାବନାରେ ବୁଲି ବୁଲି ହାଲିଆ ଲାଗେ । କାହା ପାଦ ଶବ୍ଦ ଶୁଭିଲେ ଲାଗେ କିଏ ଯେମିତି ହଜିଲା ଚିଜଟିକୁ ଫେରେଇ ଦେବାକୁ ଆସୁଛି । ଚାହିଁ ଚାହିଁ ବେଳଯାଏ, ବାତଚକ୍ରପରି ମନ ଭ୍ରମୁଥାଏ ।

ଏଇ ଯେମିତି ବିତିଗଲା ଦିନ, ବାର୍ଦ୍ଧକ୍ୟରେ ମଧୁର ଯୌବନ । ବସନ୍ତର ଫୁଲବନ ଭିତରେ ଥିଲାବେଳେ ଆକଳନ କରି ହୁଏ ନାହିଁ ତା'ର ମହିମାକୁ । ଲାଗେ ଏଇମିତି ଥିବ ଓ ଚାଲିଥିବ । ମାତ୍ର ଖରାବଢ଼େ, ଫୁଲ ମଉଳେ, ହଜେ ସେ ଫୁଲର ରଙ୍ଗ, ହଜେ ମଧୁ ବାସ୍ନା, ଉଡ଼ିଯାଏ ପାଖୁଡ଼ାର ଲାବଣ୍ୟ । ମଳୟ ପବନ ଆଉ ବହେ ନାହିଁ, କୋଇଲିର କୁହୁ ଆଉ ଶୁଭେ ନାହିଁ । ଖାଲି ଖାଲି ଲାଗେ, ଖାଁ ଖାଁ ଲାଗେ । ସ୍ମୃତିକୁ ରଖିହୁଏ ନାହିଁ କି ଫିଙ୍ଗି ହୁଏ ନାହିଁ । 'ନ ଯଯୌ, ନ ତସ୍ଥୌ' ଅବସ୍ଥା, ଯିଏ ଜାଣେ ସିଏ ଜାଣେ ।

ଏଇ ଯେମିତି ବାପାମାଆଙ୍କର କଥା, ଥିଲାବେଳେ ଲାଗେ ଅଛନ୍ତି ତ ଅଛନ୍ତି। ଏଇମିତି ଥିବେ ଓ ଥିବେ। ମାତ୍ର ତାହା ହୁଏନା, ବେଳ ଆସେ, ସମୟର ଘେରାବାଲିରେ ସେମାନେ ପୋତି ହୋଇ ଯାଆନ୍ତି, ଆଉ ଖୋଜିଖୋଜି ମିଳନ୍ତି ନାହିଁ। ସେତେବେଳେ ସେମାନଙ୍କ କଥା ଭାରି ମନେପଡ଼େ। ଘରିପଟ ଖାଲି ଖାଲି ଲାଗେ, ଘରେ ଆଲୁଅ ଜଳୁଥାଏ, ତା'ର ଉଜ୍ଜ୍ୱଳତା ନଥାଏ, ଅଗ୍ନିଥାଏ, ତା'ର ଉତ୍ତାପ ନଥା,। ସେ ବାପା ହୁଅନ୍ତୁ ଅଥବା ମାଆ ହୁଅନ୍ତୁ, ଆସିଲା ପରି ଲାଗେ, ମାତ୍ର ଘଣ୍ଟିଲାବେଳକୁ କେହି ଆସନ୍ତି ନାହିଁ, କେହି ନଥାନ୍ତି। କାହାକୁ ଏକଥା କହି ହୁଏ ନାହିଁ କି ସହି ହୁଏ ନାହିଁ। ମନ ମାରି ରହିବାକୁ ହୁଏ। କ୍ରମେ କ୍ରମେ ବୁଝିବାକୁ ହୁଏ ଯେ ସମୟର ସ୍ରୋତକୁ କେହି ଅଟକାଇ ପାରିବେ ନାହିଁ, ତାହା ଆଗକୁ ଯିବ ହିଁ ଯିବ। ସତରେ କାହାର ଶକ୍ତି ନାହିଁ ସମୟର ଗତିକୁ ଅଟକାଇବା ପାଇଁ। କେହି ତାକୁ ଧରି ରଖିପାରନ୍ତି ନାହିଁ। ସେ ଅପ୍ରତିହତ ଗତିରେ ଆଗକୁ ଚାଲିଥାଏ। ତେବେ ଏତିକି କହିହେବ ଯେ ସମୟଟି ବର୍ତ୍ତମାନରେ ଅର୍ଥାତ ହାତ ପାଆନ୍ତାରେ ଥିଲାବେଳେ ତାହାର ସଦ୍‌ବ୍ୟବହାର କରିବା।

ଆଖି ଥିଲାବେଳେ ଆଖିରମହତ୍ତ୍ୱକୁ ବୁଝିବାକୁ ହେବ, ପରେ ନୁହେଁ। ବାପା ମାଆ ଥିଲାବେଳେ ତାଙ୍କର ଗୁରୁତ୍ୱକୁ ଅନୁଭବ କରିବାକୁ ହେବ। ସେମାନଙ୍କୁ ହେୟଜ୍ଞାନ କରିବାକୁ ହେବ ନାହିଁ। ଅଲୋଡ଼ା ଭାବି ଅଯତ୍ନ କରିବାକୁ ହେବ ନାହିଁ। ସେମାନେ ପରା ଘରର ଛାତ, ନିଜେ ଖରା, ବର୍ଷା, କାକର ସହି ଆମକୁ ସୁରକ୍ଷା ଦିଅନ୍ତି। ଆମ ଘରର ଏରୁଣ୍ଡି ବନ୍ଧ ହୋଇ ରହିଥାନ୍ତି। ତାଙ୍କ ଯୋଗୁଁ ଘରେ ପୋକ ପଶିପାରନ୍ତି ନାହିଁ। ଦେହରେ ଅଦକ୍ଷ ହୋଇପାରନ୍ତି, ମାତ୍ର ମନରେ ବଡ଼ ଦକ୍ଷିଲା ସେମାନେ।

ତାଙ୍କ ପ୍ରତି କେବଳ ସମ୍ମାନ ନୁହେଁ, ଶ୍ରଦ୍ଧା ମଧ୍ୟ ଦରକାର। ଏପରିକି ସମ୍ମାନଠାରୁ ଶ୍ରଦ୍ଧା ଅଧିକ ଦରକାର। କାରଣ ସେତେବେଳେ ଆଖିର ଶକ୍ତି, କାନର ଶକ୍ତି, ସ୍ମରଣ ଶକ୍ତି କମିଯାଇଥାଏ। ବଡ଼ ମନଟିଏ ନିଜେ ନ ରଖିଲେ ସେମାନଙ୍କ ସହିତ ନିଜକୁ ଖାପଖୁଆଇ ହୁଏ ନାହିଁ। ଚଷମା ପିନ୍ଧି ଚଷମା ଖୋଜୁଥିଲେ ମଧ୍ୟ ବିରକ୍ତ ନହୋଇ, ନରମ ଗଳାରେ ଆଖିରେ ଚଷମା ଅଛି ବୋଲି କହି ଦେବାକୁ ହୁଏ। ଏକା ପ୍ରଶ୍ନ ବାରମ୍ୱାର ପଚାରିଲେ ମଧ୍ୟ ଧୈର୍ଯ୍ୟର ସହିତ ଏକା ଉତ୍ତର ବାରମ୍ୱାର ଦେବାକୁ ହୁଏ। ବିରକ୍ତ ହେଲେ ଚଳିବ ନାହିଁ।

କିପରି ଚଳାଇବାକୁ ହେବ, କଥା କହିବାକୁ ହେବ ତାହା ଶିଖିବାକୁ ହେବ। ଏହି ଶିକ୍ଷା ପ୍ରଚଳିତ ପାଠ୍ୟକ୍ରମରେ ନାହିଁ। ଏହାକୁ ନିଜେ ନିଜ ଭିତରୁ ଶିଖିବାକୁ ହେବ। ନିଜ ଭିତରେ ଗବେଷଣା କରିବାକୁ ହେବ ଯେ କିପରି ସେମାନଙ୍କୁ ଖୁସି ରଖିବାକୁ ହେବ। ସେମାନଙ୍କ ମନରେ କିପରି ସନ୍ତୋଷ ଭାବ ଆସିବ ତାହା ଅନୁଧ୍ୟାନ କରିବାକୁ ହେବ।

ସେମାନଙ୍କୁ ଏକାଧିକ ଥର ବୁଝାଇବାକୁ ହେବ, ସେମାନେ ଅବୁଝା ହେବା ସ୍ୱାଭାବିକ ତାହା ତ ସେମାନଙ୍କ ବୟସର ପ୍ରଭାବ, ତାକୁ ଏଡ଼ାଇ ଦେଇ ହେବ ନାହିଁ ।

ବେଳେବେଳେ ନିଜକୁ ବ୍ୟସ୍ତ ଲାଗିବ, ବ୍ୟସ୍ତ ହେଲେ ଚଳିବ ନାହିଁ । ଶାନ୍ତ ରହିବାକୁ ହେବ । ଶାନ୍ତ ରହିଲେ ବହୁ ସମସ୍ୟାର ସମାଧାନ ଆପେ ଆପେ ହୋଇଯିବ । କେତେ କଥା ସମୟ ଉପରେ ଛାଡ଼ି ଦେବାକୁ ହେବ । ଦ୍ୱନ୍ଦ୍ୱ, କଳହ, କ୍ରୋଧ ଭାବ ମନକୁ ଆଣିଲେ ଚଳିବ ନାହିଁ । ସମସ୍ୟା ବଢ଼ିଯିବ । ଦ୍ୱନ୍ଦ୍ୱ, କଳହ ପ୍ରଭୃତି ଏକଏକ ଅପଶକ୍ତି, ବିରୋଧୀ ଶକ୍ତି । ସେମାନଙ୍କ ପ୍ରଭାବରେ ପରିବେଶ ବିପର୍ଯ୍ୟସ୍ତ ହୋଇଯାଏ । ସେମାନଙ୍କ ପ୍ରତି ସତର୍କ ରହିବାକୁ ହେବ । ସତର୍କତା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କଥା । ସତର୍କତା ସହିତ ସଚେତନତାକୁ ମିଶାଇବାକୁ ହେବ । ସତର୍କତା ଏବଂ ସଚେତନତାର ସମନ୍ୱୟରେ ପରିବେଶ ଯଥାସମ୍ଭବ ଅନୁକୂଳ ରହିବ । ଫଳତଃ ମାନସିକ ଶାନ୍ତିର ସ୍ୱାଦ ଚାଖିବା ସମ୍ଭବ ହେବ । ପାଟମଠା ଲାଗିବ ପାଟ ମଠାପରି, ଚିରାକନା ପରି ଲାଗିବ ନାହିଁ । ପରିବେଶରେ ପ୍ରଶାନ୍ତି ବିରାଜମାନ କରିବ ।



# ପିଲାଏ ଶିଖିବେ କେଉଁଠୁ

ରହୁଁ ରହୁଁ କେତେ କଥା ବଦଳିଯାଉଛି ସତେ ! ଘର ବଦଳିଯାଉଛି, ସମାଜ ବଦଳିଯାଉଛି, ଦେଶର ଅବସ୍ଥା ମଧ୍ୟ ବଦଳିଯାଉଛି । ଗୋଟିଏ ବାକ୍ୟରେ କହିଲେ ଘରଠାରୁ ବାହାର ସବୁ ବଦଳିଯାଉଛି । ଘରେ ପରସ୍ପର ଭିତରେ ଥିବା ଶ୍ରଦ୍ଧା ସ୍ନେହ ବଦଳିଯାଉଛି । କେହି କାହାର କଥା ପଦେ ସହ୍ୟ କରୁନାହାନ୍ତି, ବଡ଼କୁ ସାନମାନଙ୍କର ଯଥାମାନ୍ୟ ନାହିଁ । ସାନମାନେ ଦେଶ ଦୁନିଆଁ ବିଷୟରେ ଅଧିକା କଥା ଜାଣୁଛନ୍ତି ବୋଲି ବଡ଼ମାନଙ୍କୁ ମନେ ମନେ ହେୟଜ୍ଞାନ କରୁଛନ୍ତି ଯାହାକି ଅତ୍ୟନ୍ତ ଦୁଃଖର କଥା । ଅବଶ୍ୟ ଏକଥା ସବୁକ୍ଷେତ୍ରରେ ଘଟୁନାହିଁ, ବହୁ କ୍ଷେତ୍ରରେ ଘଟୁଅଛି । କାଳେ କାଳେ ପୀଢ଼ିରୁ ପୀଢ଼ି ଆଗକୁ ବଢୁଥିଲା ଓ ବଢୁଛି ମାତ୍ର ଆଗରୁ ତ ଏପରି ମନୋବୃତ୍ତି ନଥିଲା, ଆଜିକାଲି ଏପରି ଭାବ କିପରି ଆସୁଛି, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି ।

ପିଲାମାନଙ୍କ ଭିତରେ ବ୍ୟସ୍ତତା ବଢିଛି, ଚିଡ଼ିଚିଡ଼ି ଭାବ ମଧ୍ୟ ବଢ଼ିବାର ଲକ୍ଷ୍ୟ କରି ହେଉଛି । ଏହାର କେତେ କାରଣ ଭିତରୁ ଗୋଟିଏ କାରଣ ହୋଇପାରେ ପାଠପଢ଼ାର ଚାପ । ପାଠପଢ଼ାର ଚାପ ଟିକିଏ ବିବ୍ରତ କରୁଛି, ସତ ମାତ୍ର ଏତେ ଚିଡ଼ିଚିଡ଼ି ଭାବ ଦୃଷ୍ଟି ହେବାର ତ କିଛି କାରଣ ନାହିଁ । ତା'ଛଡ଼ା ଏମିତି ଦେଖିଲେ ଯେତେବେଳର ପାଠ ସେତେବେଳପାଇଁ କଷ୍ଟ ଲାଗୁଥିଲା, ମାତ୍ର ଚିଡ଼ିଚିଡ଼ି ଭାବ ତ ନଥିଲା । ପ୍ରକୃତିରେ ନମନୀୟତା ଥିଲା ଯେତିକି ସମ୍ଭବ ବଡ଼ମାନଙ୍କୁ ସମ୍ମାନ ଦେବାର ମାନସିକତା ଥିଲା । କେବଳ ସମ୍ମାନ ନୁହେଁ ଆବଶ୍ୟକ ପଡ଼ିଲେ ପିତାମାତା ତଥା ଅଭିଭାବକଙ୍କୁ ଘର କାମରେ ସହଯୋଗ କରିବାର ମନୋବୃତ୍ତି ଥିଲା, ମାତ୍ର ଆଜିକାଲି ବହୁକ୍ଷେତ୍ରରେ ଏ ସମ୍ମାନ ନାହିଁ ତ ନାହିଁ

ସହଯୋଗ ମଧ୍ୟ ନାହିଁ । ସବୁ କାମ ତାଙ୍କୁ ବିରକ୍ତିକର ହେଉଅଛି ବିଶେଷତଃ ଘରକାମରେ ଟିକିଏ ସହଯୋଗ ପାଇଁ ତାଙ୍କର ଆଗ୍ରହ ରହୁନାହିଁ । ଗୋଟିଏ ବାକ୍ୟରେ କହି ହେବ ଯେ ଜୀବନ ପ୍ରତି ଦୃଷ୍ଟିଭଂଗୀ ଭିତରେ ବାସ୍ତବତାର ପ୍ରଭାବ କମି କମିଯାଉଛି । ତାଙ୍କ ଜୀବନ ହୋଇଯାଉଛି ଏକ ଦିଗଦର୍ଶୀ ।

ଏଥିରେ ପିଲାମାନଙ୍କ ଯେତିକି ଦୋଷ ରହୁଛି, ଅଧିକ ଦୋଷ ରହୁଛି ପିତାମାତା ଅଥବା ଅଭିଭାବକଙ୍କର । ସେମାନେ ପିଲାଟିକୁ ବୟସ ଅନୁସାରେ ଯଥାର୍ଥ ଶିକ୍ଷା ପ୍ରଦାନ କରିପାରୁନାହାନ୍ତି । ପିଲାମାନଙ୍କ ସ୍ତରକୁ ଆସି ବୁଝାଇବା ପାଇଁ ସେମାନେ ସମୟ ଦେବା ଦରକାର, ଧୈର୍ଯ୍ୟ ରଖିବା ଦରକାର । ବିଦ୍ୟାଳୟରୁ ସଂସ୍କାରସବୁ ପିଲାଟି ଶିଖିଯିବ ଭାବି ପିତାମାତା ତୁନି ରହିଯିବା ଭୁଲକଥା । ବିଦ୍ୟାଳୟର ଭୂମିକା ରହିଛି । ଏଥିରେ ସନ୍ଦେହ ନାହିଁ । ମାତ୍ର ତା'ଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ପରିବାରର କାରଣ ପରିବାର ହେଉଛି ପ୍ରଥମ ବିଦ୍ୟାଳୟ, ପିଲାଟିଏ ତହିଁରୁ ବହୁକଥା ଶିଖେ ଓ ଜାଣେ । ତେଣୁ କୁହାଯାଏ ପରିବାରରୁ ସଂସ୍କାର । ଗଣ୍ଡେ ଖୁଆଇ ଖଣ୍ଡେ ପିନ୍ଧାଇ ବିଦ୍ୟାଳୟ ଅଥବା ଟିଉସନକୁ ଛାଡ଼ି ଦେଲେ ପିତାମାତାଙ୍କର ଦାୟିତ୍ୱ ସରେ ନାହିଁ, ଆହୁରି ବହୁତ କଥା ଥାଏ କରିବାପାଇଁ ।

ଉପଦେଶ ଦେଇ ପୁଣି କେତେକ ସ୍ଥଳରେ ଉଦାହରଣ ହୋଇ ବହୁ କଥା ପିଲାମାନଙ୍କୁ ଶିଖାଇବାକୁ ହୁଏ । ସାନମାନଙ୍କୁ ଶ୍ରଦ୍ଧା ଓ ବଡ଼ମାନଙ୍କୁ ମାନ୍ୟତା ଶିଖାଇବାକୁ ପଡ଼େ । ଟିକିଏ ବଡ଼ ହେଲେ ଜୀବନ ଓ ଜଗତର ମହତ୍ତ୍ୱ କଥା ସେମାନଙ୍କୁ କହିବା ଦରକାର ପଡ଼େ । ଦେଶ ପ୍ରତି ମମତ୍ୱବୋଧର ମାନସିକତା ସେମାନଙ୍କ ଭିତରେ ତିଆରି କରିବାକୁ ପଡ଼େ । ଗାଳି ମାଧମରେ ନୁହେଁ ସ୍ନେହ ମାଧମରେ ଭଲ ଭଲ କଥା ଶିଖାଇବାକୁ ପଡ଼େ । ନିୟମାନୁବର୍ତ୍ତିତା ଏବଂ ସମୟାନୁବର୍ତ୍ତିତାର କଥା ଅଭ୍ୟାସ କରାଇବାକୁ ହୁଏ । ଏକାଗ୍ରତା ପ୍ରତି ସଜାଗ ଦୃଷ୍ଟି ଦେବାକୁ ହୁଏ । ଅଧ୍ୟବସାୟ, ଶୃଙ୍ଖଳା ଓ ଏକାଗ୍ରତା ଜୀବନରେ ସଫଳତା ଆଣେ ବୋଲି କହିଲେ ଯଥେଷ୍ଟ ନୁହେଁ ସେମାନଙ୍କ ଭିତରେ ଏ ଦିଗରେ ଅବବୋଧ ସୃଷ୍ଟି କରିବା ଦରକାର । କେବଳ ମୂଲ୍ୟ ନୁହେଁ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦେବାପାଇଁ ସେମାନଙ୍କୁ ପ୍ରଶିକ୍ଷଣ ଦେବା ଏକାନ୍ତ ଜରୁରୀ । ମୂଲ୍ୟ ଉପରେ କେବଳ ଗୁରୁତ୍ୱ ଦେବା କଥା ପିଲାଟିଏ ଜାଣିଲେ ସେ ଭବିଷ୍ୟତରେ ବସ୍ତୁବାଦୀ ହୋଇଯିବା ସ୍ୱାଭାବିକ ହୋଇଥାଏ । ମୂଲ୍ୟ ସହିତ ମୂଲ୍ୟବୋଧର କଥା ଜାଣିଲେ ସେ ଜୀବନବାଦୀ ହୋଇଥାଏ । କେବଳ ଧନର କଥା ପିଲାଟିଏ ଶୁଣିଲେ ଯଥେଷ୍ଟ ନୁହେଁ ଏହା ସହିତ କର୍ତ୍ତବ୍ୟବୋଧର କଥା ସେ ଶୁଣିବା ଦରକାର । ଧନ ଏକ ଆବଶ୍ୟକତା, ଜୀବନ ବଞ୍ଚିବା ପାଇଁ ଏହା ଦରକାର ପୁଣି ଏଥି ସହିତ ସ୍ୱଚ୍ଛ ନିର୍ମଳ ମନଟିଏ ଯୁକ୍ତ ହୋଇ ରହିବା ଆବଶ୍ୟକ ।

ସର୍ବୋପରି ପିଲାଟି ଭିତରେ ଆମେ ଭାବଟିଏ ସୃଷ୍ଟି କରିବାର ଦାୟିତ୍ୱ ପିତାମାତା ତଥା ଅଭିଭାବକଙ୍କର । ଆମଘର, ଆମ ଦେଶ, ଆମ ମାତୃଭାଷା, ଆମ ରାଷ୍ଟ୍ରଭାଷା, ଆମ ସଂସ୍କୃତି, ଆମ ସଭ୍ୟତା ପ୍ରତି ଶ୍ରଦ୍ଧା ରଖିବାର ମନୋଭାବ ହିଁ ଯଥାର୍ଥ ଆମେ ଭାବ । ଏହି ଆମେ ଭାବ ଜୀବନକୁ ପ୍ରଶସ୍ତ କରେ ଓ ଉତ୍ତରିତ କରେ । ଅତଏବ ଅନ୍ୟ କାହାରି ଉପରେ ଦୋଷ ନ ଲଦି ନିଜର କର୍ତ୍ତବ୍ୟ ପ୍ରତି ସଚେତନ ରହିବା ହିଁ ଯଥାର୍ଥ ଅଭିଭାବକତ୍ୱ । ନିଜେ ଗଢ଼ି ନ ଜାଣିଲେ ଚାଲି ନଜାଣି ବାଟର ଦୋଷ ଦେଲାପରି କଥାଟି ହୋଇଥାଏ । ପିତାମାତାଙ୍କର ସ୍ନେହପୂର୍ଣ୍ଣ ସଚେତନ ଦୃଷ୍ଟି ଥିଲେ ପିଲାଟିଏ ଦୂରରେ ଥିଲେ ମଧ୍ୟ ତାହା ଅନୁଭବ କରିପାରେ । ସେହି ସୂକ୍ଷ୍ମ ସଚେତନ ଦୃଷ୍ଟି ପିଲାକୁ ଭୁଲ କାମଟିଏ କଲା ବେଳକୁ ପଛକୁ ଟାଣି ଆଣେ । ଫଳତଃ ପିଲାଟି ଭୁଲବାଟରୁ ସ୍ୱତଃ ଓହରି ଆସେ ।

ପରିଶେଷରେ ଏତିକି କୁହାଯାଇପାରେ ଯେ ପିଲାଟିକୁ ଉପଯୁକ୍ତ ଭାବରେ ଗଢ଼ିବାର ଅସଲ ଚାବିକାଠି ରହିଛି ପିତାମାତା ଓ ଅଭିଭାବକଙ୍କ ହାତରେ । ସେହି ଚାବିକାଠିର ସଦ୍‌ବ୍ୟବହାର ଯୋଗୁଁ ସୁଫଳ ମିଳିଥାଏ । ଅସଦ୍ ବ୍ୟବହାର କରି ଅନ୍ୟମାନଙ୍କ ଉପରେ ଦୋଷ ଦେବା ଅର୍ଥ ଅରଣ୍ୟରୋଦନ କରିବା, ଏଥିରେ ସନ୍ଦେହର ଅବକାଶ ନାହିଁ ।



# ଆମେ ଆମକୁ ଜାଣିବା

ନିଜକୁ ନ ଜାଣିଲେ ଅନ୍ୟକୁ ଜାଣି ହୁଏ ନାହିଁ, ନିଜକୁ ନ ବୁଝିଲେ ଅନ୍ୟକୁ ବୁଝି ହୁଏ ନାହିଁ । ଯେପରିକି ମତେ ଯଦି ଏପରି ବ୍ୟବହାର ଭଲ ଲାଗୁ ନାହିଁ, ତେବେ ଅନ୍ୟମାନଙ୍କୁ ମଧ୍ୟ ଏପରି ବ୍ୟବହାର ଭଲ ଲାଗୁ ନ ଥିବ । ଅତଏବ ନିଜକୁ ଚିହ୍ନିବା, ନିଜକୁ ବୁଝିବା ହେଉଛି ଏକ ମାପକାଠି ଯାହା ସାହାଯ୍ୟରେ ଅନ୍ୟକୁ ମାପି ହେବ ଓ ବିଚାର ମଧ୍ୟ କରିହେବ । ମାପ ଓ ବିଚାର ମାଧ୍ୟମରେ ଅନ୍ୟର ସ୍ଥାନ ନିରୂପଣ ଓ ଗୁରୁତ୍ୱ ମଧ୍ୟ ନିର୍ଦ୍ଧାରଣ କରିହେବ ।

ଏକଥା କେବଳ ବ୍ୟକ୍ତିପାଇଁ ସତ୍ୟ ନୁହେଁ, ଗୋଟିଏ ଜାତି ଏବଂ ଗୋଟିଏ ଦେଶ ପାଇଁ ମଧ୍ୟ ସତ୍ୟ । କହିବାର ତାତ୍ପର୍ଯ୍ୟ ହେଉଛି ନିଜ ଦେଶକୁ ନ ଜାଣିଲେ, ବିଦେଶକୁ ଜାଣି ହେବ ନାହିଁ, ନିଜ ଦେଶକୁ ନ ବୁଝିଲେ ବିଦେଶକୁ ବୁଝି ହେବ ନାହିଁ । କେବଳ ବିଦେଶ ଭ୍ରମଣ ଓ ବିଦେଶ ରହଣି ଯାନ୍ତ୍ରିକ ହୋଇଯିବ । ଅତଏବ ପ୍ରଥମେ ଦେଶାତ୍ମବୋଧର ଭାବ ମନରେ ଆସିବା ଏକାନ୍ତ ଜରୁରୀ ।

ମୋର ଏପରି କଥାରୁ ଦେଶ ଓ ବିଦେଶକୁ ଅଲଗା କରାଯାଉଛି ବୋଲି କେହି ବୁଝିବା ଉଚିତ୍ ନୁହେଁ । ବରଂ ଏପରି କୁହାଯାଇପାରେ ଯେ ବିଦେଶରେ ରହିଥିଲା ବେଳେ ଓ ବିଦେଶରୁ ଫେରିବା ପରେ ନିଜ ଦେଶକୁ ବୁଝିବା ଅଧିକ ସମ୍ଭବ ହୋଇଥାଏ । କାରଣ ସେତେବେଳେ ତୁଳନା କରିବାର ସୁବିଧା ଓ ସୁଯୋଗ ଅଧିକ ଥାଏ । ମନେପଡ଼େ ଏଇ ପରିପ୍ରେକ୍ଷୀରେ ସ୍ୱାମୀ ବିବେକାନନ୍ଦଙ୍କର କଥା ଓ ମତାମତ । ସେ କହିଲେ – ‘‘ଦେଶରେ ଥିଲାବେଳେ ଦେଶକୁ ଯେତିକି ଚିହ୍ନିଥିଲି, ବିଦେଶକୁ ଆସିଲାପରେ ଦେଶକୁ

ତାହାଠାରୁ ବହୁଗୁଣରେ ଚିହ୍ନିଲି । ବିଦେଶରୁ ଫେରି ଦେଶ ମାଟିକୁ ବାରମ୍ବାର ପ୍ରଣାମ କଲି ।''

ସତରେ ଘରେ ଥିଲେ ଘର ଯେତେ ଭଲ ଲାଗେ ବାହାରେ ଥିଲେ ଘରକଥା ଭାବିବାକୁ ବେଶୀ ଭଲ ଲାଗେ । ଘରକଥା ବେଶୀ ମନେପଡ଼େ । ମନ ଦର୍ପଣରେ ଘଡ଼ିକରେ ଦିଶିଯାଏ ଘର, ଦିଶେ ଗାଁମୁଣ୍ଡ ବଣତୋଟା, ନଈପଠା, ଦୋଳମେଳନ, ରଜର ଦୋଳି ଓ ତାସପାଲି, ବାରିଗାଡ଼ିଆ, ଶରତର କାଶତଣ୍ଡୀ ଆଉ ବସନ୍ତର ବାସମଲ୍ଲୀ । ଅବଶ୍ୟ ଆଜି ବିଜ୍ଞାନର ଅବଦାନ ଫଳରେ ଦୂରରେ ରହି ଘରକୁ ଦେଖି ହେଉଛି । ଦେଖି ହେଉଛି ମାତ୍ର ସାକ୍ଷାତ କରି ହେଉ ନାହିଁ । ଦେଖା ଓ ସାକ୍ଷାତ ଦୁଇଟି ଅଲଗା ଅଲଗା ଅର୍ଥର ଶବ୍ଦ । ଆମେ ଭ୍ରମବଶତଃ ଏକା ଅର୍ଥରେ ବେଳେବେଳେ ବ୍ୟବହାର କରୁ । ଏଇ ଯେମିତି ସଭାସମିତିରେ କେତେ ଆପଣାର ଲୋକଙ୍କସହ ଦେଖାହୁଏ; ମାତ୍ର ସମସ୍ତଙ୍କ ସହ ସାକ୍ଷାତ କରିବା ସମ୍ଭବ ହୁଏ ନାହିଁ ।

କେବଳ ଘର ନୁହେଁ ନିଜ ଦେଶକୁ ଜାଣିବାରେ ଏକ ଗୌରବ ଥାଏ । ତାହା ଜାଣିଲେ ଦମ୍ଭ ଲାଗେ, ଅଭିମାନ ନୁହେଁ, ସ୍ୱାଭିମାନ ଆସେ । ଏକଥା ପ୍ରତ୍ୟେକ ଭାରତୀୟଙ୍କ ପାଇଁ ସତ୍ୟ ସେ ଦେଶରେ ଥାଆନ୍ତୁ ଅଥବା ବିଦେଶରେ ଥାଆନ୍ତୁ । ଆଜିର ପୃଥିବୀ ତ ଆଉ ଦେଶ ଭିତରେ ସୀମିତ ହୋଇରହି ନାହିଁ । ଆଜି ନହେଲେ ବି କାଲି ବିଶ୍ୱଚେତନାର ପୂର୍ଣ୍ଣ ବିକାଶ ହେବ, ବିଶ୍ୱଗ୍ରାମ ଗଠନର ସ୍ୱପ୍ନ ସାକାର ହେବ, ଭାବନାରେ ବିଶ୍ୱନାଗରିକତ୍ୱର ପ୍ରାଣ ପ୍ରତିଷ୍ଠା ହେବ । ଆମେ ଏହା ଲକ୍ଷ୍ୟକରୁ କି ନ କରୁ ବିଶ୍ୱ ସଂସ୍କୃତିର ପ୍ରକାଶ ପ୍ରକ୍ରିୟା ଆରମ୍ଭ ହୋଇଗଲାଣି । ପ୍ରକ୍ରିୟାର ଆରମ୍ଭ ସଂପର୍କରେ ସ୍ମରଣକୁ ଆସେ ଶ୍ରୀଅରବିନ୍ଦଙ୍କର ଉକ୍ତି, ସେ କହିଛନ୍ତି –''ଦୁଇ ବିପରୀତ ଦିଗରୁ ଆସନ୍ନ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତ ମିଳିତ ହେଉଛି ଏବଂ ପରସ୍ପର ଭିତରେ ଲୟ ପ୍ରାପ୍ତ ହେବ । ଯାହାଫଳରେ ସମ୍ମିଳିତ ମାନବଜାତିର ଜୀବନରେ ଏକ ସର୍ବସାଧାରଣ ଜଗତ ସଂସ୍କୃତିର ପ୍ରତିଷ୍ଠା ହେବ ।''

ବାସ୍ତବିକ ଏତେ ବସ୍ତୁ ଆମ ଦେଶରେ ନ ଥିଲା । ବିଦେଶର ବୈଜ୍ଞାନିକ କଳାକୌଶଳରେ ନିର୍ମିତ ବଡ଼ଠାରୁ ସାନପର୍ଯ୍ୟନ୍ତ ବହୁ ବସ୍ତୁ ଆମ ନିକଟରେ ସୁଲଭ ହେଲାଣି । ଆମ ଦେଶର ବହୁକଥା ବିଦେଶରେ ମଧ୍ୟ ଆଦୃତ ହେଲାଣି, ପ୍ରତିଷ୍ଠିତ ହେଲାଣି । ଏଇ ଯେମିତି ଧ୍ୟାନ, ଯୋଗ, ଆସନ, ପ୍ରାଣାୟମ ଇତ୍ୟାଦି ଇତ୍ୟାଦି । ବିଶ୍ୱରେ ଯୋଗ ଉପରେ ଗୁରୁତ୍ୱ ଆରୋପିତ ହେଲାଣି । ଆମ ମାଟିରେ ଫୁଟିଥିବା ଯୋଗର ପାରିଜାତ ଫୁଲ ସମଗ୍ର ବିଶ୍ୱରେ ଆଦୃତ ହେଲାଣି ଯାହାର ପ୍ରମାଣ ସ୍ୱରୂପ ସମଗ୍ର ବିଶ୍ୱରେ ଯୋଗଦିବସ ପାଳିତ ହେଲାଣି । ଆଗରୁ କୁହାଯାଇଥିବା କଥା 'ପୂର୍ବ ହିଁ ପୂର୍ବ ଏବଂ ପଶ୍ଚିମ ହିଁ ପଶ୍ଚିମ' ବଦଳିବାକୁ ଆରମ୍ଭ କଲାଣି । ଆହୁରି ବଦଳିବ ନିଜ

ଦେଶକୁ ଜାଣିଲେ ଓ ଚିହ୍ନିଲେ, ଯେଉଁଠାରେ ଥିଲେ ମଧ୍ୟ । ହାତୀ ବନସ୍ତରେ ଥିଲେ ବି ରଜାଙ୍କର ।

ଆମ ଦେଶର ଗୁରୁତ୍ୱ ଅତୀତରେ ଥିଲା ଏବେ ମଧ୍ୟ ଅଛି । ବର୍ତ୍ତମାନର ବିକାଶ ସଂପର୍କରେ ଆମେ ଅବହିତ ଅଛୁ, ମାତ୍ର ଆମ ଗତଦିନର ମହତ୍ତ୍ୱ ସମ୍ବନ୍ଧରେ ବିଶେଷ କିଛି ଜାଣିବାର ଅବକାଶ ବିଭିନ୍ନ କାରଣରୁ ଆମ ନିକଟରେ ନାହିଁ । ବିଶେଷତଃ ଯୁବଶକ୍ତି ଏସବୁ ଜାଣିବାର ଅଧିକ ଆବଶ୍ୟକତା ରହିଛି କାରଣ ଆଗାମୀ ଦେଶ ହିଁ ସେମାନଙ୍କର ଦେଶ ଏବଂ ଆଗାମୀ ବିଶ୍ୱ ହିଁ ସେମାନଙ୍କର ବିଶ୍ୱ । ସେମାନେ ଦେଶରେ ଥାଆନ୍ତୁ ଅଥବା ବିଦେଶରେ ଥାଆନ୍ତୁ, ସେମାନଙ୍କୁ ଆମ ଦେଶ ବିଷୟରେ କିଛି କଥା ଜଣାଇବା ଉଚିତ ।

ସାଧାରଣ ଭାବରେ ଏକ ଧାରଣା ଆମର ରହିଛି ଯେ, ଆମ ଦେଶରେ ବିଜ୍ଞାନ ଚର୍ଚ୍ଚା ଆଦୌ ନ ଥିଲା । ଏହା ଗୋଟିଏ ଭ୍ରମ ଧାରଣା । ଆମ ଦେଶରେ ଅତୀତରେ ବିଜ୍ଞାନ ଚର୍ଚ୍ଚା ଥିଲା । ବ୍ୟୋମବିଜ୍ଞାନଠାରୁ ବସ୍ତୁବିଜ୍ଞାନ ପର୍ଯ୍ୟନ୍ତ ତାହା ପରିବ୍ୟାପ୍ତ ଥିଲା । ପୃଥିବୀ ଯେ ଚଳମାନ ମାତ୍ର ସ୍ଥିର ଭଳି ପ୍ରତୀୟମାନ ହେଉଛି - ଏକଥା ବହୁପୂର୍ବରୁ ଭାରତ ବର୍ଷରେ କୁହାଯାଇଛି -'ଚଲ୍‌ପୃଥ୍ୱୀ-ସ୍ଥିରଭାତି' । ଏହି ସତ୍ୟଟିକୁ ପରେ ଗାଲିଲିଓ କହିଛନ୍ତି ଯେ ପୃଥିବୀ ବୁଲୁଛି ଓ ସୂର୍ଯ୍ୟ ସ୍ଥିର ଅଛି । ବହୁ ବିଭାଗରେ ନୂତନ ସତ୍ୟର ବହୁ ଆବିଷ୍କାର ପ୍ରଥମେ ହିଁ ଭାରତରେ ଘଟିଛି । କୌଣସିନା କୌଣସି କାରଣରୁ ଏହି ଆବିଷ୍କାର ସବୁ ପ୍ରଥମ ବୋଲି ବିଶ୍ୱ ଦରବାରରେ ପ୍ରତିଷ୍ଠିତ ହୋଇପାରି ନାହିଁ । ତେବେ ଯେଉଁ ୟୁରୋପୀୟ ମନୀଷୀଗଣ କଷ୍ଟ ସ୍ୱୀକାର କରି ତୁଳନାତ୍ମକ ଗବେଷଣା କରିଛନ୍ତି, ସେମାନେ ଏ କଥାକୁ ସ୍ୱୀକାର କରିଛନ୍ତି - ଏକଥା ଶ୍ରୀଅରବିନ୍ଦ ଉଲ୍ଲେଖ କରିଛନ୍ତି । ଏଥିରୁ କିଏ ବଡ଼ କିଏ ସାନ - ଏକଥା କୁହାଯାଉ ନାହିଁ । ଘଟଣାଟି ମାତ୍ର ପ୍ରସଙ୍ଗକ୍ରମେ କୁହାଯାଉଛି । ପ୍ରାଣଶକ୍ତିର ସର୍ବବ୍ୟାପକତା ଭାରତୀୟମାନେ ପ୍ରଥମେ ଆବିଷ୍କାର କରିଥିଲେ । ଉଦ୍ଭିଦ, ପ୍ରାଣୀ ଓ ମନୁଷ୍ୟ ଦେହରେ ସେଇ ଏକ ହିଁ ପ୍ରାଣ ବିରାଜିତ ବୋଲି ଉଦ୍‌ଘୋଷଣା କରିଥିଲେ । ଆର୍ଯ୍ୟଭଟ୍ଟ ପଞ୍ଚମ ଶତାବ୍ଦୀରେ ପୃଥିବୀର ଆବର୍ତ୍ତନ ଯୋଗୁଁ ଦିବାରାତ୍ରି ହେଉଛି ବୋଲି ମତବ୍ୟକ୍ତ କରିଥିଲେ । ପଞ୍ଚଦଶ ଶତାବ୍ଦୀରେ କୋପରନିକସ ଏହି ଆବର୍ତ୍ତନ କଥାଟି ବିଶ୍ୱ ସମକ୍ଷରେ ଉଦ୍‌ଘୋଷଣା କଲେ । ଭାରତଭୂମିର ବୈଜ୍ଞାନିକ ଭାସ୍କରାଚାର୍ଯ୍ୟ ଦ୍ୱାଦଶ ଶତାବ୍ଦୀରେ ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର କରିଥିଲେ । ବହୁପରେ ଅର୍ଥାତ୍ ସପ୍ତଦଶ ଶତାବ୍ଦୀରେ ପାଶ୍ଚାତ୍ୟର ବୈଜ୍ଞାନିକ ନିଉଟନ୍ ଏହି ମାଧ୍ୟାକର୍ଷଣ ଶକ୍ତିର ଉଦ୍‌ଘୋଷଣା କଲେ ।

ପାଟି ଗଣିତ ହେଉଛି ଏକ ବିଦ୍ୟା ଯହିଁରେ ଭାରତବର୍ଷର କୃତିତ୍ୱ ଅସାଧାରଣ । ଏକ ଠାରୁ ନଅ ପର୍ଯ୍ୟନ୍ତ ସଂଖ୍ୟାର ଆବିଷ୍କାର ସହିତ ଶୁନର ବ୍ୟବହାର ପ୍ରଥମେ ଭାରତରେ ହିଁ ଘଟିଥିଲା । ପୂର୍ଣ୍ଣ ସଂଖ୍ୟାର ଯୋଗ, ବିୟୋଗ, ଗୁଣନ, ହରଣ ଓ ବର୍ଗମୂଳ ଆଦି ଭାରତରେ ପ୍ରଥମେ ଆବିଷ୍କୃତ ହୋଇଥିଲା । ଜ୍ୟାମିତି କ୍ଷେତ୍ରରେ ଭାରତର ପାରଦର୍ଶିତା ଅନନ୍ୟ ଥିଲା । ଭାରତର ଋଷି ବୌଧାୟନଙ୍କ ଯଜ୍ଞ ମଣ୍ଡପର ପ୍ରସ୍ତୁତିର ଚିତ୍ରକୁ ଭିତ୍ତିକରି ମଧ୍ୟ ପ୍ରାଚ୍ୟର ଗଣିତଜ୍ଞ ପିଥାଗୋରାସଙ୍କର ଉପପାଦ୍ୟ ପ୍ରତିଷ୍ଠିତ । ଏହି ଉପପାଦ୍ୟର ତତ୍ତ୍ୱ ହେଉଛି – ଗୋଟିଏ ସମକୋଣୀ ତ୍ରିଭୁଜର କର୍ଣ୍ଣ ଉପରେ ଅଙ୍କିତ ବର୍ଗକ୍ଷେତ୍ରର କ୍ଷେତ୍ରଫଳ ସେହି ତ୍ରିଭୁଜର ଅପର ବାହୁଦ୍ୱୟ ଉପରେ ଅଙ୍କିତ ବର୍ଗକ୍ଷେତ୍ର ଦ୍ୱୟର କ୍ଷେତ୍ରଫଳର ସମଷ୍ଟି ସଙ୍ଗେ ସମାନ । ଉପପାଦ୍ୟଟି ପିଥାଗୋରାସ ଉପପାଦ୍ୟ ନାମରେ ନାମିତ ହେଲା, ମାତ୍ର ଏ ବାବଦରେ ବୌଧାୟନଙ୍କ ନାମ କେହି ଜାଣିଲେ ନାହିଁ । ଭାରତୀୟମାନେ ସୁନା, ରୁପା, ଲୁହା, ଟିଣ ଓ ସୀସା ପ୍ରଭୃତି ପଞ୍ଚଧାତୁର ସନ୍ଧାନ ପାଇଥିଲେ । ରସାୟନ ବିଜ୍ଞାନ କ୍ଷେତ୍ରରେ ଭାରତର ପ୍ରାଧାନ୍ୟ ଥିଲା । ନାଗାର୍ଜୁନ ପାତନ ଓ ଭସ୍ମୀକରଣ ପ୍ରକ୍ରିୟାର ଆବିଷ୍କାର କରିଥିଲେ ।

କେତେକ ବିଦେଶୀ ଗବେଷକଙ୍କର ମତ ଯେ ଭାରତ ଥିଲା କେବଳ ସାଧୁସନ୍ନ୍ୟାସୀ ବାବାଜୀ ବୈରାଗୀ ମାନଙ୍କର ଦେଶ । ଏ ଦେଶରେ ଆଇନ, ରାଜନୀତି, ସମାଜ ବ୍ୟବସ୍ଥା ଓ ନାନା ବିଷୟକ ଶିଳ୍ପ ଇତ୍ୟାଦି ନ ଥିଲା । ଏ ମତ ସଂପୂର୍ଣ୍ଣ ଭ୍ରମାତ୍ମକ । ଭାରତବର୍ଷରେ ହିଁ ଜୀବନର ସମସ୍ତ ଦିଗର ଚର୍ଚ୍ଚା ଥିଲା ଏବଂ ପ୍ରାୟ ପ୍ରତ୍ୟେକ ଦିଗ ଉପରେ ଶାସ୍ତ୍ରରଚିତ ହୋଇଥିଲା । ସମର ଶାସ୍ତ୍ରଠାରୁ ସଂଗୀତଶାସ୍ତ୍ର ପର୍ଯ୍ୟନ୍ତ, ନାଟ୍ୟଶାସ୍ତ୍ରଠାରୁ ବିଭିନ୍ନ ଚାରୁକଳା ତଥା କାରୁକଳା ଭିତ୍ତିକ ଶାସ୍ତ୍ର ପର୍ଯ୍ୟନ୍ତ, ଅଶ୍ୱଶାସ୍ତ୍ରଠାରୁ ଔଷଧିଶାସ୍ତ୍ର ପର୍ଯ୍ୟନ୍ତ ସବୁକିଛି ବିରଚିତ ହୋଇଥିଲା । ଔଷଧିଶାସ୍ତ୍ର କ୍ଷେତ୍ରରେ ଚରକ ଓ ସୁଶ୍ରୁତଙ୍କର ନାମ ପୃଥିବୀ ବିଖ୍ୟାତ । ଏ ପରିପ୍ରେକ୍ଷୀରେ ଶ୍ରୀଅରବିନ୍ଦଙ୍କ ବିରଚିତ କେତେକ ପଂକ୍ତିକୁ ଉଦ୍ଧାର କରିବା ପ୍ରାସଙ୍ଗିକ ମନେହୁଏ । ତାଙ୍କ ମତରେ – ''ନୈତିକ ଜୀବନ, ଆଇନ୍, ରାଜନୀତି, ସମାଜ ବ୍ୟବସ୍ଥା, ବିଜ୍ଞାନର ନାନା ଶାଖା, ନାନା ବିଷୟକ ଶିଳ୍ପ ଓ କାରୁକାର୍ଯ୍ୟ ତଥା ମାନବ ଜୀବନ ସହିତ ଯେଉଁ ସକଳ ବିଷୟର ସମ୍ବନ୍ଧ ରହିଛି, ସେ ଦିଗରେ ଭାରତ ସମାନ ଭାବରେ ଦୃଷ୍ଟି ଦେଇଛି । ଅତଏବ ଭାରତୀୟ ସଭ୍ୟତା ଯେ ସ୍ୱାଭାବିକ ଭାବେ କେବଳ ବ୍ୟାବହାରିକ ଜ୍ଞାନଶୂନ୍ୟ, ଅଧ୍ୟାତ୍ମଧର୍ମୀ, କର୍ମବିମୁଖ ଏବଂ ମନୁଷ୍ୟର ପ୍ରାଣଧର୍ମ ବିରୋଧୀ – ଏହି ଭ୍ରାନ୍ତ ଧାରଣାର ବାରମ୍ବାର ପୁନରାବୃତ୍ତି ଅବିଳମ୍ବେ ବନ୍ଦ ହେବା ଉଚିତ୍ ।''

ଉପସଂହାର ପୂର୍ବରୁ ସ୍ୱାମୀବିବେକାନନ୍ଦଙ୍କର କଥା କେତେ ପଦ ଉଦ୍ଧାର ନ କରି ରହି ହେଉ ନାହିଁ । ସେ କହିଛନ୍ତି, ''ଯେତେବେଳେ ଗ୍ରୀସର ଜନ୍ମ ହୋଇନାହିଁ,

ରୋମର କଥା କେହି ଭାବି ନାହିଁ, ବର୍ତ୍ତମାନର ୟୁରୋପୀୟମାନଙ୍କର ପୂର୍ବପୁରୁଷମାନେ ବିଚିତ୍ର ଅଙ୍ଗରାଗରେ ରଞ୍ଜିତ ଅରଣ୍ୟବାସୀ ମାତ୍ର ଥିଲେ, ସେତେବେଳେ ଭାରତ ତାହାର ସଂସ୍କୃତିର ସାଧନାରେ କର୍ମ ମୁଖର ଥିଲା । ବିଶ୍ୱର ଇତିହାସ ପର୍ଯ୍ୟାଲୋଚନା କର ଯେଉଁଠି କୌଣସି ସୁମହାନ ଆଦର୍ଶର ସନ୍ଧାନ ମିଳିବ, ଦେଖିବାକୁ ପାଇବ, ତା'ର ଜନ୍ମ ଭାରତବର୍ଷରେ ।''

ସ୍ୱାମୀ ବିବେକାନନ୍ଦଙ୍କର 'ବାଣୀ ଓ ରଚନା' ଏବଂ ଶ୍ରୀଅରବିନ୍ଦଙ୍କର ଭାରତୀୟ ସଂସ୍କୃତିର ଆଧାର ଶୀର୍ଷକ ଗ୍ରନ୍ଥରେ ଭାରତୀୟ ସଂସ୍କୃତିର ମହତ୍ତ୍ୱ, ଗୁରୁତ୍ୱ ଏବଂ ପୃଥିବୀକୁ ଭାରତର ଅବଦାନ ସଂପର୍କରେ ବିସ୍ତୃତ ଭାବେ ଆଲୋଚନା କରାଯାଇଛି । ଉକ୍ତ ପ୍ରବନ୍ଧରେ ତହିଁରୁ ଅଳ୍ପ କିଛି ତଥ୍ୟ ଉପସ୍ଥାପିତ ହୋଇଛି ଯହିଁରୁ ଆମ ଦେଶର ଗୌରବ ସଂପର୍କରେ କିଞ୍ଚିତ ଆଭାସ ମିଳିପାରିବ ।



# ଉପଦେଶ ନୁହେଁ ଅନୁରୋଧ

ଯେଉଁ ଭୂଖଣ୍ଡର ଭାଷାକୋଷରେ 'ଅନୁରାଗ', 'ଶ୍ରଦ୍ଧା' ପ୍ରଭୃତି ଶବ୍ଦ ନାହିଁ, ସେହି ଭୂଖଣ୍ଡର ପ୍ରଭାବରେ ଆମେ ବହୁଭାବରେ ପ୍ରଭାବିତ । ପ୍ରଭାବିତ ହେବା ଭୁଲ କଥା ନୁହେଁ ମାତ୍ର ଏତେ ବେଶୀ ପ୍ରଭାବିତ ହେବା ଭୁଲ କଥା । ବର୍ତ୍ତମାନର ସମୟ ଜଗତୀକରଣ ତଥା ବିଶ୍ୱାୟନର ସମୟ । ଏତେବେଳେ ଆମେ ନୁହେଁ କି କିଏ ନୁହେଁ ନିଜ ଭିତରେ ନିଜକୁ କିଳି ରଖିପାରିବା ନାହିଁ । ପରସ୍ପର ଭିତରେ ଦେଣନେଣ ଅବଶ୍ୟ ରହିବ, ଗତାଗତ ଅବଶ୍ୟ ରହିବ । ଜୀବନର ପ୍ରାୟ ବହୁ କ୍ଷେତ୍ରରେ ଏଇ ଦେଣନେଣ ରହିବ । ଶିକ୍ଷା କ୍ଷେତ୍ରରେ, ସାହିତ୍ୟ କ୍ଷେତ୍ରରେ, ଅର୍ଥନୀତି କ୍ଷେତ୍ରରେ, ରାଜନୀତି କ୍ଷେତ୍ରରେ ବାଣିଜ୍ୟକ୍ଷେତ୍ରରେ ସର୍ବୋପରି ଚଳଣି କ୍ଷେତ୍ରରେ ଦେଣନେଣ ରହିବ ହିଁ ରହିବ । ଫଳତଃ ସମସ୍ତଙ୍କର ପ୍ରଗତି ହେବ ବାହାରେ ଓ ଭିତରେ । ଜୀବନଯାତ୍ରା ସୁଗମ ହେବ, ଜୀବନ ସୁସ୍ଥ ଓ ସମୃଦ୍ଧ ହେବ ।

ଏଇ ଦିଗରୁ ଦେଖିଲେ ଆମେ ପାଶ୍ଚାତ୍ୟ ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଛୁ ହେବା ସ୍ୱାଭାବିକ । ଆମର ଏକ ବାହାର ଜୀବନ ଅଛି, ପୁଣି ଏକ ଭିତରେ ଜୀବନ ଅଛି । କେବଳ ଆମର ନୁହେଁ ବିଶ୍ୱର ପ୍ରତ୍ୟେକ ଦେଶବାସୀଙ୍କର ଏପରି ରହିଛି । କେଉଁ ଦେଶ, କେଉଁ ଜାତି, କେଉଁ ଜୀବନ ପରଂପରାକ୍ରମେ ବାହାରେ ଅଧିକ ଗୁରୁତ୍ୱ ଦିଏ, ଓ ଦେଉଛି ତାହା ଭିନ୍ନ କଥା । ଏଇ ଯେମିତି ପାଶ୍ଚାତ୍ୟ ବାହାରେ ବଞ୍ଚେ, ଭାରତ ଭିତରେ ବଞ୍ଚେ । ଏହା ପରଂପରା ଅନୁସାରେ ଘଟିଛି । ବାହାରେ ବଞ୍ଚିବା ହେତୁ ଭିତର ଜୀବନ ଉପରେ ପାଶ୍ଚାତ୍ୟରେ କମ୍ ଗୁରୁତ୍ୱ ରହିବା ସ୍ୱାଭାବିକ । ଭିତରେ ବଞ୍ଚିବା ହେତୁ ବାହାର ଜୀବନ ଉପରେ କମ୍ ଗୁରୁତ୍ୱ ରହିବା ଭାରତ ବର୍ଷରେ ସ୍ୱାଭାବିକ । ମାତ୍ର ଏ ଦୁଇଟିଯାକ କଥା

ଅପୂର୍ଣ୍ଣତାର କଥା, ଅସ୍ୱାଭାବିକତାର କଥା । ପୂର୍ଣ୍ଣତାର କଥା ହେଉଛି ବାହାର ଓ ଭିତର ଜୀବନର ସମନ୍ୱୟ । ଅର୍ଥାତ ବାହାର ଜୀବନ ଉପରେ ଯେତିକି ଗୁରୁତ୍ୱ ଭିତର ଜୀବନ ଉପରେ ସେତିକି ଗୁରୁତ୍ୱ ପ୍ରଦାନ କରିବା ।

ବାହାର ଜୀବନ କହିଲେ ବସ୍ତୁଗତ ଜୀବନ, ବିଜ୍ଞାନ ଓ କାରିଗରୀ ବିଦ୍ୟା ଭିତ୍ତିକ ବସ୍ତୁ ସଂଗଠିତ ଜୀବନ । ଭିତର ଜୀବନ କହିଲେ ସ୍ନେହ, ତ୍ୟାଗ, ତିତିକ୍ଷା, ସହନଶୀଳତା, ଅନୁରାଗ, ଶ୍ରଦ୍ଧା, ସାମୂହିକତା ସର୍ବୋପରି ଅଧ୍ୟାତ୍ମ ଜୀବନ । ବାହାର ଜୀବନକୁ ଆମେ ମୂଲ୍ୟର ଜୀବନ କହିଲେ ଭିତର ଜୀବନକୁ ମୂଲ୍ୟବୋଧର ଜୀବନ କହିପାରିବା । ବାହାର ଜୀବନକୁ ବସ୍ତୁଗତ ଜୀବନ କହିଲେ ଭିତର ଜୀବନକୁ ଭାବଗତ ଜୀବନ କହିପାରିବା । ବାହାର ଜୀବନକୁ ବୁଦ୍ଧିଗତ ଜୀବନ କହିଲେ ଭିତର ଜୀବନକୁ ବୋଧିଗତ ଜୀବନ ବା ହୃଦୟଗତ ଜୀବନ ବୋଲି କହିପାରିବା । ଦୁଇଟିଯାକ ଜୀବନ ଏକାଠି ରହିପାରିବେ, ରହିଲେ ଯେଉଁ ଜୀବନର ସମ୍ଭବ ହେବ, ତାହା ହେଉଛି ପୂର୍ଣ୍ଣତାର ଜୀବନ । ଏ ଦିଗରୁ ବିଚାର କଲେ ବସ୍ତୁ ଆମର କାମ୍ୟ । ଆମର ତାହା ଦରକାର । ବସ୍ତୁ ଦରକାର ବାହାର ଜୀବନର ବିକାଶ ପାଇଁ । ବର୍ତ୍ତମାନ ଆମ ମାନସିକତାରେ ବସ୍ତୁପ୍ରତି ଆନ୍ତରିକତା ବଢ଼ିଛି, ଏହା ଅଭିନନ୍ଦନୀୟ କାରଣ ଏହା ଆବଶ୍ୟକ । ମାତ୍ର ଏହାର ଚାପରେ ଆମର ଭିତର ଜୀବନ ଚାପି ହୋଇନଯାଉ, ପଥର ତଳର ଘାସପରି ଶୁଖି ନଯାଉ । ବସ୍ତୁ ଓ ଭାବର ସମ୍ମିଶ୍ରଣରେ ଏକ ନୂଆ ଚେତନାର ସୃଷ୍ଟି ହେଉ । ମୂଲ୍ୟ ଓ ମୂଲ୍ୟବୋଧର ମିଶ୍ରଣରେ ଏକ ନୂଆ ଦିଗନ୍ତ ଉନ୍ମୋଚିତ ହେଉ । ସ୍ୱାମୀ ବିବେକାନନ୍ଦଙ୍କର ସ୍ୱପ୍ନ ସାକାର ହେଉ ଅର୍ଥାତ ବୌଦ୍ଧିକତା (I.Q) ଏବଂ ହୃଦୟବତ୍ତା (E.Q) ର ମଧୁମିଳନ ସଂଗଠିତ ହେଉ ।

ବସ୍ତୁର ପ୍ଲାବନ ଆମକୁ ଭସାଇ ନ ନେଇ ବରଂ ଯଥାର୍ଥ ଧାରାରେ ପ୍ରବାହିତ ହୋଇ ଆମ ବାହାର ଜୀବନକୁ ସମୃଦ୍ଧ କରୁ । ଆମ ନୈତିକତା, ପାରିବାରିକତା, ଆତ୍ମୀୟତା, ଆନ୍ତରିକତା, ଈଶ୍ୱରଚିନ୍ତା, ପାରସ୍ପରିକ ସହନଶୀଳତା, ଧର୍ମନିରପେକ୍ଷତା, ସର୍ବୋପରି ଅଧ୍ୟାତ୍ମିକତା ସହିତ ବସ୍ତୁ ସଂଯୁକ୍ତ ହେଉ । ଆତ୍ମିକଜୀବନର ବିକାଶ କ୍ଷେତ୍ରରେ ବସ୍ତୁବାଧକ ନହେଉ, ବରଂ ସହଯୋଗୀ ହେଉ । ଏକାସାଥୀରେ ପାଦକୁ ପାଦ ମିଳାଇ ଉଭୟ ଚାଲନ୍ତୁ ।

ଆମ ପିଲାମାନେ ଜାଣନ୍ତୁ ବିଭୁଭକ୍ତିର ମହିମା, ଭଗବତ ଚିନ୍ତା ଓ ଚେତନାର ଗରିମା, ଦେବତାଙ୍କ ଆରାଧନା, ପ୍ରଭୁକୃପାର ମଧୁରିମା । ନିଜ ସଂସ୍କୃତିକୁ ହୀନ ଦୃଷ୍ଟିରେ ନ ଦେଖନ୍ତୁ । ନିଜ ଚଳଣିକୁ, ନିଜ ଭାଷାକୁ, ନିଜ ମାଟିକୁ ହେୟ ଜ୍ଞାନ ନ କରନ୍ତୁ । ଏଥି ସହିତ ଅନ୍ୟଦେଶରୁ ଆସୁଥିବା ବିଜ୍ଞାନ ଓ କାରିଗରୀ ବିଦ୍ୟାକୁ ମିଶାନ୍ତୁ । ନୂଆ ଏକ ଜୀବନ ପୃଥିବୀକୁ ଆସୁ । ଯେଉଁ ଜୀବନ ପୃଥିବୀରେ ଏପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ, ସେପରି ଏକ ନବଜୀବନ, ନୂଆ ଛନ୍ଦର ଜୀବନ ଆସୁ । ନିଜ ମାଟିରେ ଦମ୍ଭରେ ଠିଆ ହୋଇ ଆମ

ପିଲାଏ ଘରିପଟରୁ ଭଲ ଭଲ କଥା ସଂଗ୍ରହ କରନ୍ତୁ ଓ ନିଜକୁ ସମୃଦ୍ଧ କରନ୍ତୁ । ଆମ ଭିତରେ ନିଦା ଜୀବନଟିଏ ସୁପ୍ତ ହୋଇ ରହିଛି ଅର୍ଥାତ ଅଧ୍ୟାତ୍ମଜୀବନଟିଏ, ସଂହତିର ଜୀବନଟିଏ, ଚେତନାର ଜୀବନଟିଏ ଚାପି ହୋଇ ରହିଯାଇଛି । ତାହା ଜାଗ୍ରତ ହେଉ, ମୁକ୍ତ ହେଉ । ତାହା ସହିତ ବାହାରର ଆଲୁଅ ଓ ପବନ ଲାଗୁ । ଫଳତଃ ଏକ ପୂର୍ଣ୍ଣତାର ଜୀବନଟିଏ ପ୍ରସ୍ତୁତ ହେଉ ।

ଏ ଦିଗରେ ଆମ ଦେଶ ହେଉ ଦିଗ୍‌ଦ୍ରଷ୍ଟା । କାରଣ ଆମ ଦେଶର ସେ ସାମର୍ଥ୍ୟ ରହିଛି । ଏ ସାମାନ୍ୟ ଦେଶ ନୁହେଁ, ଏ ଋଷି ମୁନିମାନଙ୍କର ଦେଶ, ଅତ୍ରିଅଙ୍ଗୀରାଙ୍କ ଦେଶ, ଏ ଅଗସ୍ତି ଯାଜ୍ଞବଲ୍‌କ୍ୟଙ୍କର ଦେଶ, ଏ ବ୍ୟାସ ବାଲ୍ମୀକିଙ୍କର ଦେଶ, ଏ ଦଧୀଚିଙ୍କର ଦେଶ, ଏ ଶିବିରାଜାଙ୍କର ଦେଶ । ଏ ସର୍ବଧର୍ମ ସମନ୍ୱୟର ଦେଶ, ଦୀପ୍ତି ଯୁକ୍ତ ଭୂଖଣ୍ଡ (ଭା+ରତ) ଏଇ ଆମ ଭାରତବର୍ଷ । ଏ ଦେଶ ଅର୍ଜନକରୁ ବିଶ୍ୱରେ ଗୁରୁର ଗୌରବ । ଯଥାଶୀଘ୍ର କାର୍ଯ୍ୟକାରୀ ହେଉ ଦିବ୍ୟଦ୍ରଷ୍ଟାମାନଙ୍କର ଦିବ୍ୟଦର୍ଶନ । ବିଶ୍ୱଭ୍ରାତୃତ୍ୱର ମନ୍ତ୍ର ଏ ଦେଶରୁ ଉଚ୍ଚାରିତ ହୋଇ ଦିଗେ ଦିଗେ ପ୍ରସାରିତ ହେଉ । ସ୍ୱାମୀ ବିବେକାନନ୍ଦଙ୍କର ସେଦିନର ଆହ୍ୱାନ, 'ସଦର୍ପରେ ଡାକି କହ, ମୂର୍ଖ ଭାରତବାସୀ, ଦରିଦ୍ର ଭାରତବାସୀ ମୋରଭାଇ, ଭାରତର ମୃତ୍ତିକା ମୋର ଶୈଶବର ଶିଶୁ ଶଯ୍ୟା, ଯୌବନର ଉପବନ, ମୋର ବାର୍ଦ୍ଧକ୍ୟର ବାରାଣସୀ, କୁହ ଭାଇ ଭାରତର ମୃତ୍ତିକା ମୋର ସ୍ୱର୍ଗ ।' ଏହା ଯଥାଶୀଘ୍ର କାର୍ଯ୍ୟକାରୀ ହେଉ । ସାକାର ହେଉ ଶ୍ରୀଅରବିନ୍ଦଙ୍କର ସ୍ୱପ୍ନ- 'ଭାରତ ହେବ ଆଗାମୀ ବିଶ୍ୱର ଗୁରୁ, ଦେବ ବିଶ୍ୱକୁ ଦିଗ୍‌ଦର୍ଶନ କାରଣ ଭାରତ ହେଉଛି ପୃଥିବୀର ଆତ୍ମା, ଭାରତ ବଞ୍ଚିଲେ ପୃଥିବୀ ବଞ୍ଚିବ ।'

ନୀଳ ଆକାଶ ତଳେ ଏପରି ମାର୍ଜିତ ରୁଚି ଓ ଚେତନାର ଦେଶର ପଟାନ୍ତର ନାହିଁ । ବସ୍ତୁଗତ ଜୀବନ ସହିତ ମିଶି ଏଇ ରୁଚିବୋଧ ଓ ଚେତନାବୋଧ ବହୁଗୁଣିତ ହେବ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ମିଶ୍ରଣରେ ନୂଆ ଏକ ବିଶ୍ୱ ସଂସ୍କୃତିର ଗଠନ ହେବ । ସେ ସଂସ୍କୃତିର ନକ୍‌ସା ପ୍ରସ୍ତୁତ କରିବ ଆମ ଦେଶ ଭାରତବର୍ଷ । ସମଗ୍ର ବିଶ୍ୱକୁ ଶାନ୍ତି, ଅହିଂସା, ମୈତ୍ରୀ, ଭ୍ରାତୃତ୍ୱ, ସହାବସ୍ଥାନର ମାର୍ଗଦର୍ଶନ ଦେବ ଆମ ଦେଶ ଭାରତବର୍ଷ । ଭାରତୀୟ ଯୁବଶକ୍ତିର ସହଯୋଗ ବିନା ଏହା ଅସମ୍ଭବ । ସତରେ ଆମ ଯୁବଶକ୍ତି ଏ ଦିଗରେ ସକ୍ରିୟ ଦୃଷ୍ଟି ଦେବେ କି ?

❑❑

# ଆଜି ମଧ୍ୟ ପ୍ରାସଙ୍ଗିକ

ସଂସାରରେ ଏମିତି କେତେକ କଥା ଅଛି ଯାହା ପୁରୁଣାପରି ଲାଗିଲେ ମଧ୍ୟ ପୁରୁଣା ନୁହେଁ । ଆଜିର ଫେସ୍‌ବୁକ୍ ଯୁଗରେ ସେସବୁ ତଥାପି ପ୍ରାସଙ୍ଗିକ ତଥା ଗ୍ରହଣଯୋଗ୍ୟ ହୋଇରହିଛି । ଏଥିମଧ୍ୟରୁ ଲୋକଉକ୍ତି, ପ୍ରବାଦ ଓ ପ୍ରବଚନ ଅନ୍ୟତମ । ଏସବୁ ବହୁ ଲୋକଙ୍କର ବହୁ ପରୀକ୍ଷିତ ଅଭିଜ୍ଞତା ଉପରେ ପ୍ରତିଷ୍ଠିତ । ଅଭିଜ୍ଞତା ହିଁ ଜୀବନର ସାରକଥା ଓ ସାର୍ଥକତା ଯାହା ଡିଗ୍ରୀ ଡିପ୍ଲୋମାରୁ ମିଳେ ନାହିଁ, ମିଳେ ଜୀବନ ସଂଗ୍ରାମରୁ, ଜୀବନର ବାସ୍ତବତାରୁ । ଯାହା ଜୀବନରେ ବାସ୍ତବତା ଯେତେ ଅଧିକ ତା' ଜୀବନରେ ଅଭିଜ୍ଞତା ସେତେ ଅଧିକ । ସେହି ବାସ୍ତବତା ହିଁ ଲୋକଉକ୍ତିର ମୂଳକଥା ଓ ମୌଳିକତା ।

ସଂସାରରେ ଜୀବନ ପଥ ଚାଲିବା ବଡ଼ କଷ୍ଟର କଥା । ହାତେ ମାପି ଚାଖଣ୍ଡେ ଚାଲିଲେ ମଧ୍ୟ ପାଦରେ କଣ୍ଟାବାଜେ । ବେଳେବେଳେ ଏପରି ହୁଏ ଯେ ଚାଖଣ୍ଡେ ଚାଲିବା ତ ଦୂରର କଥା, ଆଙ୍ଗୁଳେ ମଧ୍ୟ ଚାଲି ହୁଏ ନାହିଁ । ସେତେବେଳେ ମନେପଡ଼େ ମାର୍କସିମ୍ ଗର୍କୀଙ୍କ କଥା ଯେ ମଣିଷ ପକ୍ଷୀପରି ଆକାଶର ଉଡ଼ି ଶିଖିଛି, ପାଣିରେ ମାଛ ପରି ବୁଡ଼ି ଶିଖିଛି ମାତ୍ର ଜୀବନରେ ଚଲାପଥରେ ଠିକ୍ ଭାବରେ ଚାଲିପାରି ନାହିଁ । ବାସ୍ତବରେ ସେତେବେଳେ ଦରକାର ପଡ଼େ ଆଉ କାହାର ଉପଦେଶ ଓ ଦିଗ୍‌ଦର୍ଶନ । ଏହି ଉପଦେଶ ଓ ଦିଗ୍‌ଦର୍ଶନ କେତେବେଳେ ଔଷଧପରି ତ କେତେବେଳେ ପ୍ରତିଷେଧକ ପରି କାମ କରେ । ବହୁ ଅସୁବିଧାରୁ ମୁକୁଳି ଯିବାକୁ ବାଟ ବତାଏ । ଏଇ ଯେମିତି – ''ପତ୍ର ପାଇଲା ମାତ୍ରେ ପଢ଼ିବ / ବନ୍ଧୁକୁ ଦେଖିଲା ମାତ୍ରେ ହସିବ / ଖଳକୁ ଦେଖିଲା ମାତ୍ରେ ଖସିବ ।'' ପତ୍ର କହିଲେ କେବଳ ଚିଠି ନୁହେଁ, ଯେ କୌଣସି ଅଫିସିଆଲ କାଗଜପତ୍ର,

ଦଲିଲ ଦସ୍ତାବିଜ୍ ନିଜ ନାମରେ ଆସିଥିଲେ ତାକୁ ଯଥାଶୀଘ୍ର ପଢ଼ିବ, ବିଳମ୍ବ କରିବ ନାହିଁ ଅଥବା ହେଳା କରିବ ନାହିଁ । ହେଳା କଲେ ବହୁ ଅନୁତାପ କରିବାକୁ ପଡ଼ିବ । ଖଳକୁ ଦେଖିଲେ ସେଠାରୁ ତତ୍କ୍ଷଣାତ୍ ବୁଦ୍ଧି ଖର୍ଚ୍ଚ ପୂର୍ବକ ଦୂରେଇ ଯିବ । ଦୁଷ୍ଟ ଦୁର୍ଜନର ସଙ୍ଗ ତ୍ୟାଗ ନକଲେ ସର୍ବନାଶ ସୁନିଶ୍ଚିତ, ଏଥିରେ ସନ୍ଦେହ ନାହିଁ ।

ଘରେ ବାହାରେ ଚଳିବା ପାଇଁ ଛୋଟ ପରି ଲାଗିଲେ ମଧ୍ୟ ଅନେକ କଥା ଜାଣିବା ଦରକାର । ବ୍ୟକ୍ତିଗତ ଅଭିଜ୍ଞତାରୁ ବହୁକଥା ଶିଖି ହେବ ମାତ୍ର ଏଥିପାଇଁ ଜୀବନକାଳ ଅଣ୍ଟିବ ନାହିଁ । ଅନ୍ୟମାନଙ୍କର ଅଭିଜ୍ଞତା ଉପରେ କିଛି କିଛି ପରିମାଣରେ ନିର୍ଭର କରିବାକୁ ପଡ଼ିବ । ତହିଁରୁ କିଛି କିଛି ଶିଖିବାକୁ ପଡ଼ିବ । ଏଇଯେମିତି–‘‘ଭୋକ ମଟାଳିଲେ ପିତ୍ତ ବଢ଼େ/ ଝାଡ଼ା ମଟାଳିଲେ ବାୟୁ ବଢ଼େ/ ସ୍ନାନ ମଟାଳିଲେ କଫ ବଢ଼େ/ ପ୍ରସା ମଟାଳିଲେ ଦଗ୍ଧ ବଢ଼େ/ – ଏସବୁ ସ୍ୱାସ୍ଥ୍ୟରକ୍ଷାର କଥା । ଏହା କେବଳ ଡାକ୍ତରୀ ବହିର ପାଠ ନୁହେଁ, ସାର୍ବଜନୀନ ଅଭିଜ୍ଞତାର କଥା । କି ପାଠୁଆ, କି ଅପାଠୁଆ, କି ଧନୀ, କି ଗରିବ ସମସ୍ତଙ୍କ ପାଇଁ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଏହା ଜାଣିବାର ବିଷୟ, ଏହାକୁ ଲୋକପାଠ କହିଲେ ଭୁଲ୍ ହେବ ନାହିଁ । ଏହିପରି ଆଉ ଏକ କଥା ହେଉଛି – ‘‘ଖଟା ଖାଇଲେ ବଢ଼ଇ ନାଡ଼ା/ ମିଠାଖିଆ ବେମାରି ବଢ଼ା/ ଲୁଣଖାଇଲେ ଉଠଇ ଶୋଷା/ ଛାତି ଧରଇ ଖାଇଲେ କଷା ।

କେତେ କଥା ସାମାନ୍ୟପରି ଲାଗେ, ମାତ୍ର ସେମାନେ ସେତେ ସାମାନ୍ୟ ନୁହନ୍ତି । ଏଥିରେ ଦାର୍ଶନିକତା ବେଶୀ ନଥାଇପାରେ ମାତ୍ର ବ୍ୟାବହାରିକତା ଯଥେଷ୍ଟ ରହିଛି । ଖାଲି ପାଠ ଯଥେଷ୍ଟ ନୁହେଁ, ସେଥି ସହିତ ଶାଠ ମିଶିବା ଦରକାର । ଖାଲି ତାତ୍ତ୍ୱିକତା ନୁହେଁ ବ୍ୟାବହାରିକତା ମଧ୍ୟ ସେଥି ସହିତ ମିଶିବା ଦରକାର । ଶୁଣି, ଦେଖି ବହୁ କଥା ଛୋଟ ଲାଗିଲେ ବି ଶିଖିବାକୁ ପଡ଼େ । ଏଇ ଯେମିତି- ‘‘ବାପ ପୁଅ ମନ ହୋଇଲେ ଖଟା/ ପାଳୁଅ କ୍ଷୀରି ଧରିଗଲେ ଗୋଟା/ କୋଶଲା ଶାଗ ହେଲେ ମଞ୍ଜି ଫୁଟା/ ହଳଦୀନ ହେଲେ ଚିକ୍କଣବଟା/ ବୋଲେ ଦନେଇଁ ଭଲ ନୁହେଁ କେଉଁଟା ।’’

ଜୀବନରେ ଏମିତି କେତେ କଥା ରହିଛି ଯାହାର ସମ୍ମୁଖୀନ ନହେଲେ କଷ୍ଟ ପାଇବାକୁ ହୁଏ । ସେହି କଷ୍ଟ ନ ପାଇବାକୁ ଚେଷ୍ଟା କରିବାକୁ ହୁଏ । ଚେଷ୍ଟା କରୁକରୁ ତଥାପି ଯଦି କଷ୍ଟ ଆସେ ତେବେ ତାକୁ ସହିବାକୁ ପଡ଼େ । ଏପରି ଅନେକ କଥା ଭିତରୁ ଗୋଟିଏ ଦୁଇଟି କଥା କୁହାଯାଇପାରେ । ତାହା ଏହିପରି –‘‘ମାଆ ପେଟ ଭାଇ ହେଲେ ବାଦୁଆ/ ଧନୀ ପଡ଼ିଶା ହୋଇଲେ ଛନ୍ଦୁଆ /ସୁନା ଅଳଙ୍କାର ହେଲେ ଖାଦୁଆ/ ଛାଇ ଲେଉଟାଣି ଯେଉଁ ଗାଧୁଆ/ – କହେ ଦନେଇଁ ଏ ବଡ଼ ହଦୁଆ ।’’

ଭଲରେ ବଞ୍ଚିବା ପାଇଁ ଖାଲି ପୁଳାଏ ଧନ ଯଥେଷ୍ଟ ନୁହେଁ, ବହୁ ସତର୍କତା ଓ ସଚେତନତା ଆବଶ୍ୟକ । ବେଳହୁଁ ସାବଧାନ ନହେଲେ ବହୁ ଅସୁବିଧାରେ ପଡ଼ିବାକୁ

ହୁଏ । ଏଇ ଯେମିତି – "ବରଷା ରାତିରେ ନ ଥିଲେ ଜାଳ / ପାଣିଗଲେ ଯେବେ ଗମ୍ଭୀରି ଚାଳ / ଖାଇବା ଦ୍ରବ୍ୟରୁ ବାହାରେ ବାଳ / ଏଣ୍ଡୁରି ପିଠାରୁ ଉଠିଲେ ନାଳ / କହେ ଦନେଇଁ ଏ କଥା ନିଷ୍ଫଳ ।"

ଅବଶ୍ୟ ଆଜିକାଲି ଜାଳକାଠର ଜାଳେଣି ନାହିଁ, ତେବେ ନାହିଁ ବୋଲି କହିହେବ ନାହିଁ । ଆଜିକାଲି ଚାଳଘର ସିନା ସହର ବଜାରରେ ନାହିଁ, ତେବେ ଗାଁ ଗହଳରେ ଗମ୍ଭୀରି ଚାଳଘର ଏବେ ମଧ୍ୟ କିଛି କିଛି ଅଛି । ସମସ୍ତ ଜନଜୀବନ ପାଇଁ କଥାଗୁଡ଼ିକ କୁହାଯାଇଛି । ତୁଣ୍ଡରୁ ତୁଣ୍ଡରୁ ଚାଲିଆସିଛି ଏକଥା, ଏ ସଚେତନତାର ବାର୍ତ୍ତା । ଏହାକୁ ତେଣୁ ଲୋକସାହିତ୍ୟର ଆଖ୍ୟା ଦିଆଯାଏ ଯାହା ଲୋକମୁଖରେ ପ୍ରଚାରିତ, ଲୋକଙ୍କ ପାଇଁ ଉଦ୍ଦିଷ୍ଟ । ଊନବିଂଶ ଶତାବ୍ଦୀରେ କେତେକ ବିଜ୍ଞବ୍ୟକ୍ତି ଦୟା ପରବଶ ହୋଇ କିଛି କିଛି ଢଗଢମାଳିକୁ ପୁସ୍ତକ ଆକାରରେ ପ୍ରଣୟନ କରିଥିଲେ । ବିଂଶ ଶତାବ୍ଦୀରେ ମଧ୍ୟ ଏପରି ପୁସ୍ତକ ବହୁ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ୧୮୬୮ ଖ୍ରୀଷ୍ଟାବ୍ଦରେ ଜନ୍‌ବିମସ୍ ଲୋକଗୀତ ସଂପର୍କିତ କିଛି ତଥ୍ୟ ସଂଗ୍ରହ କରି ମୁଦ୍ରଣ କରିଥିଲେ । ପରେ ୧୮୭୬ ଖ୍ରୀ:ଅରେ କପିଳେଶ୍ୱର ବିଦ୍ୟାଭୂଷଣ ଢଗଢମାଳିର ଏକ ସଂଗ୍ରହ ମୁଦ୍ରଣ ନିମନ୍ତେ ପ୍ରସ୍ତୁତ କରିଥିଲେ । ୧୮୯୩ ଖ୍ରୀ:ଅରେ ଗୋବିନ୍ଦରଥ, ୧୯୦୩ ଖ୍ରୀ:ଅରେ ନୀଳମଣି ବିଦ୍ୟାରତ୍ନ, ୧୯୩୨ରେ ଅପର୍ଣ୍ଣା ପଣ୍ଡା, ୧୯୨୪ରେ ନିତ୍ୟାନନ୍ଦ ସାହୁ, ୧୯୬୧ରେ ସର୍ବେଶ୍ୱର ଦାଶ, ୧୯୯୧ରେ କୁଞ୍ଜବିହାରୀ ଦାଶ ଢଗଢମାଳିକୁ ଭିତ୍ତିକରି ପୁସ୍ତକମାନ ପ୍ରକାଶ କରିଥିଲେ । ଶ୍ରୀ ଚକ୍ରଧର ମହାପାତ୍ରଙ୍କର ଏ ଦିଗରେ ଅବଦାନ ଅବିସ୍ମରଣୀୟ । ଏତଦ୍‌ବ୍ୟତୀତ ଆହୁରି କେତେ ଜଣ ରହିଛନ୍ତି ଯେଉଁମାନଙ୍କର ଅବଦାନ ଏ ଦିଗରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ଯେଉଁ କେତେକ ପୂଜନୀୟା ମହିଳାଙ୍କ ସ୍ମୃତିରୁ ବହୁ ଢଗଢମାଳି, ପ୍ରବାଦ ଓ ପ୍ରବଚନ ସଂଗୃହୀତ ହୋଇଛି ସେମାନଙ୍କ ଭିତରେ ଶ୍ରୀମତୀ ଶୌରୀ ଦେବୀ, ଶ୍ରୀମତୀ କନକ ମଞ୍ଜରୀ ଦେବୀ, ଶ୍ରୀମତୀ ପୀତାମ୍ବରୀ ଦେବୀ ଅନ୍ତର୍ଭୁକ୍ତ ।

ଏହି ଢଗଢମାଳି, ପ୍ରବାଦ ଓ ପ୍ରବଚନ ତଥା ଗାଉଁଲି ଗୀତ କେବଳ ଓଡ଼ିଆ ସାହିତ୍ୟର ଅମୂଲ୍ୟ ରତ୍ନ ନୁହେଁ, ଓଡ଼ିଆ ଜନଜୀବନର ଏକ ପ୍ରକାର ଜ୍ଞାନକୋଷ କହିଲେ ଭୁଲ୍ ହେବ ନାହିଁ । ଏଥିରେ ବହୁ ଜାଣିବାର କଥା ରହିଛି ମାତ୍ର ଦୁଃଖର ବିଷୟ ଓଡ଼ିଶାରେ ଏ ଦିଗରେ ଯେତେ ଗବେଷଣା ତଥା ଆଲୋଚନା ହେବା କଥା ହେଉ ନାହିଁ । ଜନଜୀବନ ଯଦି ବୃକ୍ଷ ହୁଏ ତେବେ ଲୋକସାହିତ୍ୟ ତାହାର ଚେର ସଦୃଶ–ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଏ ଦିଗରେ ଅଧିକ ଗବେଷଣା ଓ ଆଲୋଚନା ହେଲେ ଅଧିକ ତଥ୍ୟ ଜନଜୀବନକୁ ଆସିପାରିବ, ଏଥିରେ ସନ୍ଦେହ ନାହିଁ ।

□□

# ଆମ ପାଇଁ ଆମେ ଦାୟୀ

ଆମେ ବହୁବ୍ୟକ୍ତିଙ୍କୁ, ବହୁଦୃଶ୍ୟକୁ ଦେଖୁଛୁ, ମାତ୍ର ନିଜକୁ ଦେଖିବାକୁ ସମୟ ପାଉନାହୁଁ କି ଇଚ୍ଛା କରୁନାହୁଁ । ଏକଥା ଶୁଣିଲା ମାତ୍ରେ ମନକୁ ଆସିବ ଯେ ଆମେତ ନିଜ ଶରୀରକୁ ଦେଖୁଛୁ,ଅଇନାରେ ନିଜ ମୁହଁକୁ ଦେଖିପାରୁଛୁ, ଆଉ ଦେଖୁ ନାହୁଁ କିପରି ? ଆମେ ବହୁବ୍ୟକ୍ତିଙ୍କର ସ୍ୱର, ପଶୁପକ୍ଷୀଙ୍କ ସ୍ୱର ଶୁଣିପାରୁଛୁ, ମାତ୍ର ନିଜ ସ୍ୱର ଶୁଣିପାରୁନାହୁଁ । ଶୁଣିବାକୁ ସମୟ ପାଉ ନାହୁଁ, ସମୟ ଥିଲେ ମଧ୍ୟ ଏକଥା କେବେ ଭାବି ନାହୁଁ । ଏକଥାର ଅର୍ଥ ହେଉଛି ନିଜେ ନିଜ ପ୍ରତି ଧ୍ୟାନ ଦେଇନାହୁଁ । ବାହାରରୂପ ନୁହେଁ ଭିତର ରୂପ ଆଡକୁ ଧ୍ୟାନ ଦେଇ ନାହୁଁ, ଭିତର ସ୍ୱର ଶୁଣିବାକୁ କାନ ଦେଇ ନାହୁଁ । ଚର୍ମ ଆଖିରେ ଭତରକୁ ଦେଖି ହେବ ନାହିଁ ମର୍ମ ଆଖିରେ ଦେଖି ହେବ । ବାହାର କାନରେ ନିଜକୁ ଶୁଣି ହେବ ନାହିଁ, ଭିତର କାନରେ ନିଜକୁ ଶୁଣି ହେବ ।

ମନଦ୍ୱାରା ଏହା ସମ୍ଭବ ହେବ ନାହିଁ, ମନଠାରୁ ଆଉ ଏକ ବଡ଼ କଥା ଆମ ଭିତରେ ରହିଛି, ତାହା ହେଉଛି ବିବେକ ସତ୍ତା ଓ ବିଚାର ବୋଧ । ବିବେକରୁ ବିଚାର ଆସେ, ଭୁଲ ଠିକ କଥା ଜାଣି ହୁଏ । ଭୁଲ ଠିକ୍ ଜାଣିପାରିବା ହିଁ ନିଜକୁ ଠିକ୍ ଅର୍ଥରେ ଦେଖିବା ଓ ନିଜକୁ ଠିକ୍ ଅର୍ଥରେ ଶୁଣିବା । ଏପରି ଦେଖିବା ଅର୍ଥ ନିଜ ସହ ଅନ୍ୟମାନଙ୍କୁ ମିଶାଇଦେଖିବା, ଅନ୍ୟମାନଙ୍କୁ ନିଜପରି ଦେଖିବା ଏବଂ ନିଜକୁ ଅନ୍ୟମାନଙ୍କ ଭିତରେ ଦେଖିବା । ଏପରି ଦେଖିଲେ ପରସ୍ପର ପ୍ରତି ଶ୍ରଦ୍ଧା, ସ୍ନେହ ବଢ଼େ ଓ ମାନସିକ ଶାନ୍ତି ଅତୁଟ ରହେ । କେବଳ ନିଜକୁ ଦେଖିବା ଅର୍ଥାତ ନିଜ ସୁବିଧା ପ୍ରତି ଦୃଷ୍ଟି ଦେବା ହେଉଛି ସ୍ୱାର୍ଥପରତା ଓ ସଂକୀର୍ଣ୍ଣତା । ତାହା ଶାନ୍ତି ଦିଏ ନାହିଁ । ଶ୍ରୀଅରବିନ୍ଦ ସଂକୀର୍ଣ୍ଣତା ଓ ସ୍ୱାର୍ଥପରତାକୁ

ସବୁଠାରୁ ବଡ ପାପ ବୋଲି କହିଛନ୍ତି । ସ୍ୱାମୀ ବିବେକାନନ୍ଦ ସଂକୀର୍ଣ୍ଣତା ହିଁ ମୃତ୍ୟୁ ଓ ପ୍ରସାରତା ହିଁ ଜୀବନ ବୋଲି କହିଛନ୍ତି ।

ପ୍ରକୃତରେ ନିଜକୁ ଦେଖିଲେ ଅନ୍ୟକୁ ଦେଖିହେବ, ନିଜକୁ ଶୁଣିଲେ ଅନ୍ୟକୁ ଶୁଣି ହେବ, ନିଜକୁ ଜାଣିଲେ ଅନ୍ୟକୁ ଜାଣିହେବ ଏଥିପାଇଁ ଗୁଡ଼ାଏ ଡିଗ୍ରୀ, ଡିପ୍ଲୋମାର ଆବଶ୍ୟକତା ନାହିଁ, ପଦପଦବୀର ଆବଶ୍ୟକତା ନାହିଁ, ଆବଶ୍ୟକତା ଅଛି ଆତ୍ମସମୀକ୍ଷାର, ଆତ୍ମବିଶ୍ଳେଷଣର, ନିଜର ବିଚାର ଶକ୍ତି ବଳରେ ଅନ୍ୟକୁ ବିଚାର କରିବାର । ଅନ୍ୟକୁ ଭୁଲ ବୁଝିବା ସହଜ, ଅନ୍ୟକୁ ପ୍ରକୃତରେ ବୁଝିବା କଷ୍ଟ । ନିଜକୁ ବୁଝିବାକୁ ହେଲେ ଯେପରି ନିଜ ପରିସ୍ଥିତିକୁ ବୁଝିବା ଦରକାର, ଅନ୍ୟକୁ ବୁଝିବାକୁ ହେଲେ ସେପରି ଅନ୍ୟର ପରିସ୍ଥିତିକୁ ବୁଝିବା ଦରକାର । ଭଲ କରି ନ ବୁଝି ନ ଶୁଝି ଅନ୍ୟ ପ୍ରତି ହଠାତ୍ କୌଣସି ମନ୍ତବ୍ୟ ଦେବା ଉଚିତ୍ ନୁହେଁ । ମନ୍ତବ୍ୟ ଦେବା ଅର୍ଥ ଅନ୍ୟ ପ୍ରତି ଅବିଚାର କରିବା । କାହାକୁ କିପରି କଥା କହିବା ତାହାର ଧାରା ଅଛି । ସମାନକଥା ସମସ୍ତଙ୍କୁ ସମାନ ଭାବରେ କୁହାଯିବ ନାହିଁ । ସମ୍ବନ୍ଧକୁ ଦେଖି କଥା କହିବାକୁ ହେବ । କାର୍ଯ୍ୟାଳୟରେ ପଦସ୍ଥ କର୍ମଚାରୀ ହୋଇଥିଲେ ଅନ୍ୟମାନଙ୍କୁ କିପରି କଥା କହିବାକୁ ହେବ, ତାହାକୁ ଶିଖିବାକୁ ହେବ । ଆବଶ୍ୟକତା ଅନୁସାରେ ଫଁ କରିବାକୁ ହେବ । ନ ହେଲେ ଶ୍ରୀରାମକୃଷ୍ଣ କହିଥିବା କାହାଣୀର ସର୍ପପରି ଅବସ୍ଥା ଦୟନୀୟ ହୋଇଯିବ ।

କେବଳ ସମ୍ବନ୍ଧ ନୁହେଁ ସ୍ଥାନକାଳକୁ ମଧ୍ୟ ବିଚାରକୁ ନେବାକୁ ହେବ । ପ୍ରକୃତ ଆନ୍ତରିକତା ଥିଲେ ଅନ୍ୟମାନଙ୍କର ପରିସ୍ଥିତିକୁ ବୁଝିବା ଅଧିକ ସହଜ ହେବ । ଆବଶ୍ୟକତା ଅନୁପାତରେ ଅନ୍ୟକୁ ସମ୍ମାନ ଦେବାକୁ ହେବ । ପରସ୍ପରକୁ ଅନୁମୋଦନ କରିବାକୁ ହେବ ଅର୍ଥାତ କୌଣସି ଭଲ କଥା, ଭଲ ଚିନ୍ତା ଓ ଭଲ କାର୍ଯ୍ୟ ଦେଖିଲେ ଅନ୍ୟକୁ ମୁକ୍ତକଣ୍ଠରେ ଅଭିନନ୍ଦନ ଜଣାଇବାକୁ ହେବ । ଏହାକୁ କୁହାଯାଏ ପାରସ୍ପରିକ ଅନୁମୋଦନ (ମ୍ୟୁଚୁଆଲ ଆପ୍ରିସିଏସନ) ।

ଶ୍ରଦ୍ଧା, ସହାନୁଭୂତି, ଶୁଭେଚ୍ଛାର କଥା ଶୁଣିଲା ମାତ୍ରେ ଆମ ମନରେ ପ୍ରଶ୍ନ ଆସିବ ଯେ ଆମେ ତ ସାଧାରଣ ଲୋକ, ଆମପାଖରେ କ'ଣ ଏକଥା ସମ୍ଭବ ହେବ ? ଉତ୍ତର ହେବ ଯେ ହଁ, ଏକଥା ସମ୍ଭବ ହେବ । କଥା କଥାକେ ଏତେ ରାଗିଲେ ଚଳିବ ନାହିଁ, ଚେଷ୍ଟା କଲେ କ୍ରୋଧଭାବକୁ କମାଇହେବ । ଏତେ ଲୋଭ ରଖିଲେ ଚଳିବ ନାହିଁ । ଚେଷ୍ଟା କଲେ ଲୋଭକୁ କମାଇ ହେବ । ମଣିଷ ପାଖରେ ସବୁକିଛି ସମ୍ଭବ, ଅସମ୍ଭବ ବୋଲି କିଛି ନାହିଁ । ଈର୍ଷା, ପରଶ୍ରୀକାତରତା ଆଦି ବଦ୍‌ଗୁଣକୁ ଇଚ୍ଛା କଲେ କମାଇ ହେବ । ମନକୁ ଟିକିଏ ପ୍ରଶସ୍ତ କଲେ ଏହା ସମ୍ଭବ ହେବ । ମନ ଏକ ରବର ଭଳି, ଏହାକୁ ଭିଡ଼ିଲେ ଅର୍ଥାତ ଚେଷ୍ଟା କଲେ ଏହା ବଢ଼େ । ବଡ଼ ମନ ଦିଏ ଶାନ୍ତି, ଯାହା ସଂକୀର୍ଣ୍ଣମନ

ଦେଇପାରେ ନାହିଁ । ଲାଭକ୍ଷତିର ଅଙ୍କ କଷୁକଷୁ ସଂକୀର୍ଣ୍ଣମନର ଦିନ ସରିଯାଏ । ଭାବୁଥାଏ ସେ ଲାଭରେ ଅଛି, ମାତ୍ର କ୍ଷତିରେ ହିଁ ଥାଏ, ଜାଣି ପାରେ ନାହିଁ । ବସ୍ତୁଗତ ଲାଭ ମିଳିପାରେ ମାତ୍ର ଶାନ୍ତି ଓ ସନ୍ତୋଷଗତ ଲାଭ ମିଳେ ନାହିଁ । ଜୀବନରେ ବସ୍ତୁ ଯେତିକି ଦରକାର, ଶାନ୍ତି ଓ ସନ୍ତୋଷଭାବ ସେତିକି ଦରକାର । ଦୁଇଟିଯାକକଥାକୁ ଏକାଠି ରଖିପାରିବା କେବଳ ବିବେକ ବିଚାର ଦ୍ୱାରା ସମ୍ଭବ ହୋଇପାରେ ।

ମନରେ ଶାନ୍ତି ଓ ସନ୍ତୋଷ ଆଣିବା ପାଇଁ କେତେ କଥା ଭିତରୁ ଗୋଟିଏ ବଡ଼ କଥା ହେଉଛି କଥାରେ ଓ କାର୍ଯ୍ୟରେ ଟିକିଏ ପଛକୁ ଘୁଞ୍ଚି ଆସିବା । ଏହାକୁ କୁହାଯାଉଛି 'ଷ୍ଟେପ୍ ବ୍ୟାକ୍‌ଥିଓରି ।' କଥା କହିବା ଆଗରୁ ଓ କୌଣସି ନିଷ୍ପତ୍ତି ମୂଳକ ପଦକ୍ଷେପ ନେବା ଆଗରୁ ଆଉଥରେ ଭବିବା ହିଁ ଏହି ତତ୍ତ୍ୱର ମୂଳକଥା । ଏପରି କଲେ କଥାରେ ବେଶୀ ଭୁଲ ହେବ ନାହିଁକି କାର୍ଯ୍ୟରେ ବେଶୀ ଭୁଲ ହେବ ନାହିଁ । ଘଟଣା ବା ପରିସ୍ଥିତି ନିଜ ନିୟନ୍ତ୍ରଣରେ ରହିପାରିବ । ଯଥାର୍ଥ କଥା ଓ ଯଥାର୍ଥ କାର୍ଯ୍ୟ କରାଯାଇପାରିବ । ଯଥାର୍ଥ କଥା ହେଉଛି ସ୍ଥାନ, କାଳ ଓ ପାତ୍ର ଅନୁସାରୀ କଥା ଏବଂ ଯଥାର୍ଥ କାର୍ଯ୍ୟ ହେଉଛି ସ୍ଥାନ, କାଳ ଓ ପାତ୍ର ଭିତ୍ତିକ କାର୍ଯ୍ୟ ।

ଆମର ଅନ୍ତଃଶକ୍ତି ଅସୀମ । ଜାତିଧର୍ମବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ଭିତରେ ଏହି ଶକ୍ତି ରହିଛି ଯାହା ଆମକୁ ଚେତନାରେ ପ୍ରଶସ୍ତ କରେ । କର୍ତ୍ତବ୍ୟବୋଧ ସହିତ କର୍ମ କଲେ ମାନସିକ କଷ୍ଟ କମ୍ ଆସେ । କାମନା ରଖି କର୍ମ କଲେ କାମନା ତ ପୂରଣ ହୁଏ ନାହିଁ, ବରଂ ମାନସିକ କଷ୍ଟ ବଢ଼ିଯାଏ ।

ଆମ ଆଗରେ ପ୍ରତିମୁହୂର୍ତ୍ତରେ ଦୁଇଟି ରାସ୍ତା ପଡ଼ିଛି । ଗୋଟିଏ ସଂକୀର୍ଣ୍ଣତାର ରାସ୍ତା ଓ ଅନ୍ୟଟି ପ୍ରସାରଣର ରାସ୍ତା । କେଉଁ ରାସ୍ତାରେ ଆମେ ଯିବା, ତାହା ଆମ ଉପରେ ନିର୍ଭର କରେ । ଆମକୁ ମଧ୍ୟ ବାଛିବାର ଶକ୍ତି ପ୍ରଦତ୍ତ ହୋଇଛି । ତାହା ହେଉଛି ବିଚାର ଶକ୍ତି । ସେହି ଶକ୍ତିକୁ ଲଗାଇ ବାଟ ବାଛିବାର ଦାୟିତ୍ୱ ଆମର । ଆମ ପାଇଁ ଏକଥା ଆଉ କେହି କହି ଦେବେ ନାହିଁ । ବାଟ ଅନୁସାରେ ଆମେ ଆମର ଶତ୍ରୁ ହୋଇପାରୁ ଅଥବା ବନ୍ଧୁ ହୋଇପାରୁ । ଅନ୍ୟକୁ ଏଥିପାଇଁ ଦୋଷ ଦେଲେ ଚଳିବ ନାହିଁ ।



# ଜୀବ ମରୁଡ଼ି ଓ ମଣିଷ ବନ୍ୟା

ପୃଥିବୀରେ ମଣିଷଙ୍କ ସଂଖ୍ୟା ବଢୁଛି ମାତ୍ର ଜୀବଜନ୍ତୁଙ୍କ ସଂଖ୍ୟା କ୍ରମଶଃ କମିବାରେ ଲାଗିଛି । ବିଲୁପ୍ତି ଅବସ୍ଥାରେ ପ୍ରାୟ ୭୨୬୬ ପ୍ରଜାତିର ପ୍ରାଣୀ ଏବଂ ୮୩୨୩ ପ୍ରଜାତିର ଉଦ୍ଭିଦ ଅନ୍ତର୍ଭୁକ୍ତ । ହିସାବରୁ ଦେଖାଯାଇଛି ଯେ ୧୯୦୦ ମସିହାବେଳେ ଆମ ଦେଶରେ ବାଘର ସଂଖ୍ୟା ଲକ୍ଷାଧିକ ଥିବାବେଳେ ବର୍ତ୍ତମାନ ସେଇ ବାଘ ସଂଖ୍ୟା କେତେ ଶହରେ ମାତ୍ର ସୀମିତ ରହିଛି । ମେକ୍‌ସିକୋ ବିଶ୍ୱବିଦ୍ୟାଳୟର ପ୍ରଫେସର ଡଃ ଜେରାଡ଼େ କହିଛନ୍ତି ଯେ ପୃଥିବୀର ଜୀବ ସଂପଦ ଏବେ ବିଲୁପ୍ତି ଆଡ଼କୁ ଧାବମାନ ହେଉଛି । ପ୍ରକୃତରେ ମଣିଷର ନିର୍ଦ୍ଦୟଭାବ, ନିଷ୍ଠୁରତା, ଅହଂକାର, ଅଜ୍ଞାନତା ହିଁ ଜୀବ ବିନାଶ ତଥା ସର୍ବନାଶର ମୂଳ ହେତୁ । ଜୀବ, ଉଦ୍ଭିଦ ଓ ମନୁଷ୍ୟ ପ୍ରତ୍ୟେକ ପରସ୍ପର ସହ ବନ୍ଧା । ଗୋଟିଏକୁ ଛାଡ଼ିଲେ ଅନ୍ୟଟିର ସ୍ଥିତି ଅସମ୍ଭବ । ମନୁଷ୍ୟ ଯାହା ଭାବୁଛି ଯେ ଜୀବ ଓ ଉଦ୍ଭିଦ ବ୍ୟତୀତ ସୁରମ୍ୟ ସୃଷ୍ଟି ଓ ସୁଷମ ଜୀବନଧାରା ସମ୍ଭବ ହେବ, ତାହା ଏକ ଭ୍ରମ । ସମସ୍ତେ ସମସ୍ତଙ୍କ ସହ ସୂକ୍ଷ୍ମ ସୂତ୍ରରେ ବନ୍ଧା । ଗଛଟିଏ ବାସ୍ତବରେ ନୀରବ ସେବକଟିଏ, ଦରଦୀ ବନ୍ଧୁଟିଏ, ସ୍ନେହଶୀଳା ଜନନୀଟିଏ । ମମତାମୟୀ ଭଗିନୀ ସିଏ । ନିଜେ କଷ୍ଟ ସହି ଅନ୍ୟମାନଙ୍କ ପାଇଁ ତାହାର ସ୍ଥିତି ଓ ଅଭିବ୍ୟକ୍ତି । ଜୀବମାନେ ପ୍ରକୃତିର ଏକ ଏକ ବିଭବ । ପ୍ରକୃତିରେ ଭାରସାମ୍ୟ ଆଣିବା ଦିଗରେ ସେମାନଙ୍କ ଅବଦାନ ରହିଛି ।

ମଣିଷ ବୁଦ୍ଧିମାନ ଜୀବ । ତା'ର ଭାବିବାର ଶକ୍ତି ରହିଛି । କର୍ମ କରିବାର ସାମର୍ଥ୍ୟ ରହିଛି । ସେ ଯଦି ନିଜ କୁରାଢ଼ିକୁ ନିଜ ଗୋଡ଼ରେ ମାରେ, ନିଜେ ବସିଥିବା ଡାଳକୁ ନିଜେ ହାଣେ ତେବେ କାହାକୁ ଆଉ କହିବାକୁ ହେବ, ଆପଣା ହସ୍ତେ ଜିହ୍ୱା ଛେଦି

ନ୍ୟାୟରେ କଥାଟି ଘଟିବ ନାହିଁ କି? ଜୀବଜଗତ ଓ ବୃକ୍ଷଜଗତ ପ୍ରତି ସହାନୁଭୂତିଶୀଳ ନହେଲେ ସେ ନିଜେ କ୍ଷତିଗ୍ରସ୍ତ ହେବ ହିଁ ହେବ, କେହି ସେତେବେଳେ ସାହାଭରସା ହେବାକୁ ନଥିବେ । ସେ ଏକୁଟିଆ ହେବାପାଇଁ ବାଧ୍ୟ ହେବ । ୨୦୧୨ ମସିହାରେ ମିଳିତ ଜାତିସଂଘ ଆନୁକୂଲ୍ୟରେ ଆୟୋଜିତ ଜୈବ ବିଭିନ୍ନତା ସମ୍ମିଳନୀରେ ୧୭୦ଟି ଦେଶର ପ୍ରତିନିଧି ଯୋଗ ଦେଇଥିଲେ । ସମ୍ମିଳନୀରେ ମତବ୍ୟକ୍ତ କରାଗଲା ଯେ- "ସାଂପ୍ରତିକ ପରିସ୍ଥିତିରେ ମଣିଷ ସହ ଅନ୍ୟାନ୍ୟ ଜୀବଜନ୍ତୁଙ୍କ ସୁରକ୍ଷା ବିଷୟ ଚିନ୍ତା ନକଲେ ଖୁବ୍ ଶୀଘ୍ର ମଣିଷ ଏକୁଟିଆ ହୋଇଯିବ । ସେହି ସମୟରେ ମଣିଷ ବଡ଼ ଦୁଃସହ ସ୍ଥିତିରେ ପହଞ୍ଚିବ ।"

ପୃଥିବୀର ବାୟୁମଣ୍ଡଳର ତାପମାତ୍ରା ବଢୁଛି । ଗ୍ରୀଷ୍ମକାଳରେ ବିଭିନ୍ନ ଅଂଚଳରେ ଆମ ଦେଶରେ ୫୦ଡିଗ୍ରୀ ସେଇଲସିୟସ ଅଥବା ତାଠାରୁ କିଛି ଅଧିକ ମଧ ହୋଇଯାଇଛି । ୨୦୦୩ ମସିହାରେ ଅଷ୍ଟ୍ରେଲିଆର କୁଇନସ୍‌ଲାଣ୍ଡର ଏକ ଅଂଚଳରେ ତାପମାତ୍ରା ୬୯ଡିଗ୍ରୀ ସେଲ୍‌ସିୟସ ହୋଇଥିବାର ରେକର୍ଡ଼ କରାଯାଇଥିଲା । ୨୦୦୪ ମସିହାରେ ଇରାନର ଲୁଟ୍ ମରୁଭୂମିରେ ତାପମାତ୍ରା ପ୍ରାୟ ୭୧ ଡିଗ୍ରୀ ସେଲ୍‌ସିୟସ ହୋଇଥିଲା ବୋଲି ଜଣାଯାଇଛି । ୨୦୦୮ ମସିହାରେ ଚୀନର ଏକ ଅଂଚଳରେ ତାପମାତ୍ରା ବଢି ବଢି ୬୬ଡିଗ୍ରୀ ସେଲ୍‌ସିୟସ ହେବାର ରେକର୍ଡ଼ କରାଯାଇଥିଲା ।

ବୃକ୍ଷର ହ୍ରାସ ବିଶେଷତଃ ତାପମାତ୍ରା ବୃଦ୍ଧିର ଏକ ପ୍ରମୁଖ କାରଣ । ଜନସଂଖ୍ୟା ବୃଦ୍ଧି ବୃକ୍ଷହ୍ରାସର ଅନ୍ୟତମ କାରଣ । ତେବେ ଜନସଂଖ୍ୟା ବୃଦ୍ଧି କେବଳ ନୁହେଁ, ଏଥି ସହିତ ମଣିଷର ସ୍ୱାର୍ଥ ସିଦ୍ଧି, ଲୋଭ ଅଯଥା ଆଧିପତ୍ୟ ବିସ୍ତାର ଯୋଗୁଁ ମଧ୍ୟ ଜଙ୍ଗଲକ୍ଷୟ ତଥା ବୃକ୍ଷଲତା ହ୍ରାସ ପ୍ରାପ୍ତ ହେଉଛି ।

ବର୍ତ୍ତମାନ ମଣିଷର ସୁରକ୍ଷା ମଣିଷର ହାତରେ । ସେ ନିଜେ ବଞ୍ଚି ରହିବାକୁ ହେଲେ ଜୀବଜନ୍ତୁ ଓ ଉଦ୍ଭିଦଜଗତକୁ ବଞ୍ଚାଇ ରଖିବା ତା'ର ପ୍ରଥମ କର୍ତ୍ତବ୍ୟ । ନଚେତ ମହାବିଲୁପ୍ତି ପଥରେ ସେ ନିଜେ ନାଶ ନ ଯିବ ବୋଲି କିଏ ବା କହିପାରିବ । ବୈଜ୍ଞାନିକମାନଙ୍କ ମତରେ ୫୦,୦୦୦ ବର୍ଷ ତଳେ ଏକ ମହାବିଲୁପ୍ତ ଘଟିଥିଲା । ସେଥିରେ ଶତକଡ଼ା ୭୦ ଭାଗ ଜୀବଜନ୍ତୁ ଲୋପ ପାଇଯାଇଥିଲେ । ପୃଥିବୀର ଆରମ୍ଭରୁ ପାଞ୍ଚଗୋଟି ମହାବିଲୁପ୍ତି ଘଟିବା କଥା ବୈଜ୍ଞାନିକମାନେ କହିଥାନ୍ତି । ଏହି ପାଞ୍ଚଗୋଟି ମହାବିଲୁପ୍ତିରେ କେତେ ପ୍ରଜାତିର ଜୀବଙ୍କର ସମୂଳେ ବିନାଶ ଘଟିଛି । ସେମାନଙ୍କ ଭିତରେ ମେଗାଥେରିୟମ, ଡ୍ରାଇପୋଟ, ଡନ୍, କ୍ଲାଭିକ୍‌ଡାଟସ୍, ଡାଇନୋସର, ସାଇବେରିଆକ୍ୟାଟ, ଗ୍ଲାଇଷ୍ଟୋଡିନ୍, ଫେରାସ୍ଥିଥ, ମୋଗାଫାଉନା, ମାମଥ, ଅନ୍ତର୍ଭୁକ୍ତ । ପଶୁପକ୍ଷୀ ଓ ବୃକ୍ଷଲତା ସହ ମଣିଷ ଜୀବନକୁ ବହୁଭାବରେ ସଂପର୍କିତ କରାଯାଇଛି । ବୃକ୍ଷଲତାରେ ଥିବା ଔଷଧୀୟ ଗୁଣ

ମନୁଷ୍ୟର ସୁସ୍ଥତା ନିମନ୍ତେ ପ୍ରତିଷେଧକ ଭାବରେ ଅଥବା ଔଷଧ ଭାବରେ କାର୍ଯ୍ୟକାରୀ ହୋଇଛି । ଦୂବ ରସଠାରୁ ଆରମ୍ଭ କରି ବଉଳଗଛର ଛେଲି ପର୍ଯ୍ୟନ୍ତ ସବୁଥିରୁ ଔଷଧୀୟ ଗୁଣର ଆହରଣ କରିଛି ମଣିଷ । ଉଦ୍ଭିଦ ଦେଉଛି ଖାଦ୍ୟ,ଅମ୍ଳଜାନ ଓ ଛାୟା । ତା' ପ୍ରତି କୃତଜ୍ଞତାର ଅନ୍ୟନାମ ମାନବିକତା । ଅଜ୍ଞାନ ଭାବରେ ତାର ଅଯଥା ଧ୍ୱଂସକୁ ମଣିଷର ଆତ୍ମହତ୍ୟା ସହିତ ତୁଳନା କରାଯାଇପାରେ ।

ଆମ ସଂସ୍କୃତିରେ ଅନେକ ବୃକ୍ଷକୁ ପୂଜା କରିବାର ପରଂପରା ରହିଛି । ତୁଳସୀ ଗଛଠାରୁ ଆରମ୍ଭ କରି ଅଶ୍ୱତ୍ଥ ଗଛ ପର୍ଯ୍ୟନ୍ତ ପୂଜାର ଧାରା ଲମ୍ବି ଯାଇଛି । କଦମ୍ବଗଛକୁ ଶ୍ରୀକୃଷ୍ଣଙ୍କର ପ୍ରିୟ ଗଛ ଭାବରେ ଗ୍ରହଣ କରାଯାଉଥିବାବେଳେ ନିମ୍ବଗଛର ଗଣ୍ଡିରୁ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ନିର୍ମାଣର ବ୍ୟବସ୍ଥା ରହିଛି ।

କେତେକ ପଶୁପକ୍ଷୀଙ୍କୁ ଦେବଦେବୀଙ୍କର ବାହନ ଭାବରେ ଗ୍ରହଣ କରାଯାଇଛି । ମୂଷାଠାରୁ ଆରମ୍ଭ କରି ସିଂହ ପର୍ଯ୍ୟନ୍ତ, ହଂସଠାରୁ ଆରମ୍ଭ କରି ଗରୁଡ଼ ପର୍ଯ୍ୟନ୍ତ ଲମ୍ବି ଯାଇଛି ବାହନର ପରଂପରା । ପଶୁପକ୍ଷୀମାନଙ୍କୁ ଏହାଦ୍ୱାରା ମଣିଷର ସାଂସ୍କୃତିକ ଜୀବନ ସହିତ ସଂପର୍କିତ କରାଯାଇଛି ।

ମଣିଷ ଯେପରି ପ୍ରକୃତିର ଏକ ଅଂଶ, ପଶୁପକ୍ଷୀ ଓ ବୃକ୍ଷଲତା ମଧ୍ୟ ପ୍ରକୃତିର ସେପରି ଏକ ଅଂଶ । ଅଂଶ କେବଳ ନୁହେଁ ଅଙ୍ଗ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରତ୍ୟେକ ଅଙ୍ଗର ସ୍ୱାଭାବିକ ବିକାଶ ହିଁ ଯଥାର୍ଥ ବିକାଶ । ଅନ୍ୟଥା ପୂର୍ଣ୍ଣବିକାଶ ସମ୍ଭବ ନୁହେଁ । ସମସ୍ତଙ୍କ ଭିତରେ ମନୁଷ୍ୟ ହିଁ ଚେତନଶୀଳ ବୁଦ୍ଧିମାନଜୀବ । ସେ ଯଦି ନ ବୁଝିବ ବିଶ୍ୱଜୀବନର ବାସ୍ତବତା ତେବେ ଆଉ କିଏ ବୁଝିବ ? ସେ ଯଦି ନ କରିବ ବିଶ୍ୱପ୍ରକୃତିର ସୁରକ୍ଷା ତେବେ କାହାକୁ କହିବା ? ସଭାସମିତି ସମ୍ମିଳନୀ ଗୋଟିଏ କଥା, ଭିତରୁ ନିଜେ ବୁଝିବା ଆଉ ଗୋଟିଏ କଥା । ନିଜ ଭିତରୁ ବୁଝିବା ହିଁ ଅସଲ ବୁଝିବା, ତାହା ହିଁ ଯଥାର୍ଥ ଜ୍ଞାନ । ତଥାପି ଏ ବୁଝିବା ବାକି ଅଛି, ତଥାପି ଏ ଜ୍ଞାନ ଅପୂର୍ଣ୍ଣ ରହିଛି । ଜଟିଳ ପରିସ୍ଥିତି ସୃଷ୍ଟି ହେବା ଆଗରୁ ଭିତରୁ ବୁଝିବାର ସମୟ ଆସିଛି ।



# ପାଠକ ମରୁଡ଼ି ଓ ଲେଖକ ବନ୍ୟା

ତାହା ସାହିତ୍ୟ ପଦବାଚ୍ୟ ଯାହା ପାଠକ ମନକୁ ସୁନାସୂତାରେ ବାନ୍ଧି ରଖେ । ତାହା ସଫଳ ଗଳ୍ପ ଯାହା ପାଠକ ମନକୁ ଚହଲାଇ ଦିଏ, ତା'ର ଅବୁଝାପଣକୁ ବୁଝାଇଦିଏ, ତାକୁ ବାଟ ବତାଏ, ଦରକାର ପଡିଲେ ଋଲି ଶିଖାଏ । ତାହା ସଫଳ କବିତା ଯାହା ଭାବାନ୍ତର ସୃଷ୍ଟି କରେ, ବାସ୍ତବତା ସହିତ କଳ୍ପନାକୁ ମିଶାଇପାରେ, ପାଠକ ପ୍ରାଣରେ ଝରଣାପରି କୁଳୁକୁଳୁ ଛନ୍ଦରେ ବହିଯାଏ । କବିତା କହେ କମ୍, ଅକୁହା ରଖେ ବେଶୀ । ଅଳ୍ପ ଶବ୍ଦରେ ବହୁ ଚିତ୍ର ଆଙ୍କେ, ଅଳଙ୍କାର ପିନ୍ଧି ସଜେଇ ହୁଏ, ସୁନ୍ଦର ଦିଶେ ।

ତାହା ସଫଳ ଉପନ୍ୟାସ ଯାହା ଆଉ ଏକ ଦୁନିଆଁକୁ ପାଠକକୁ ନେଇଯାଏ ଯେଉଁଠାରେ ପାଠକ ଦେଖିଥିବା ବହୁ ଲୋକଙ୍କୁ ପୁଣି ଦେଖିନଥିବା ବହୁ ଲୋକଙ୍କୁ ଦେଖେ । ସେ ଦୁନିଆଁରେ ବାସ୍ତବ ଦୁନିଆଁଠାରୁ ଅଧିକ ରସ ଥାଏ । ଷଡ଼ରସ ନୁହେଁ ନବ ରସଥାଏ, ଅଧିକ ସଂଖ୍ୟାର ମଧ୍ୟ ରସଥାଏ । ଚରିତ୍ରର ଚିତ୍ରଶାଳାରେ ମୁଖ୍ୟ ଓ ଗୌଣ ସମସ୍ତ ଚରିତ୍ର ଲାଗନ୍ତି ସ୍ୱସ୍ଥାନରେ ପୂର୍ଣ୍ଣ ପୂର୍ଣ୍ଣ ପରି । କେତେ କଥା ସେମାନେ କହନ୍ତି ଆଉ ଯାହା ନ କହିପାରନ୍ତି, ପାଠକ ସେ କଥାକୁ ତାଙ୍କ ଭାବରେ ଯୋଡ଼ି ଉପନ୍ୟାସ ପଢ଼ନ୍ତି ଆଉ ବୁଝନ୍ତି । ପଢ଼ିଲାପରେ ତେଲଲୁଣର ଦୁନିଆଁରେ ସେମାନଙ୍କୁ ଖୋଜନ୍ତି । ସେଥିରୁ କିଛି ଚରିତ୍ର ମିଳନ୍ତି ଆଉ କିଛି ମିଳିବାର ଅପେକ୍ଷାରେ ତଥାପି ରହିଯାନ୍ତି । ତାହା ସଫଳ ନାଟକ ଯାହା ପଢ଼ିବାଠାରୁ ଦେଖିବାରେ ଅଧିକ ପରିସ୍ଫୁଟ ହୁଏ, ତହିଁରେ ଅଙ୍ଗଭଙ୍ଗୀ ଥାଏ, ଅଭିନୟ, ନାଟକ ଥାଏ । ଦର୍ଶକ ଦେଖେ । ଯାହା ଶିଖିବାର ଥାଏ ଶିଖେ । ସଂଳାପର ସ୍ୱାଭାବିକତା, ଅଭିନୟର

ବାସ୍ତବତା, ମଞ୍ଚସଜ୍ଜାର ଚମତ୍କାରିତା ସହିତ ଆବଶ୍ୟକ ସ୍ଥଳେ ସଂଗୀତର ମାଦକତା ନାଟ୍ୟ ସାହିତ୍ୟକୁ ଋଦ୍ଧିମନ୍ତ କରିଥାଏ । ତାହା ସଫଳ ଆତ୍ମଜୀବନୀ ଯହିଁରେ ବ୍ୟକ୍ତି ଜୀବନର ଚିତ୍ର ଅପେକ୍ଷା ସମାଜଜୀବନର ଚିତ୍ର ଅଧିକ ଥାଏ । ବିଶ୍ୱଜୀବନର ଚିତ୍ରର ସାର୍ଥକ ପ୍ରତିଫଳନ ଥିଲେ ଆତ୍ମ ଜୀବନୀ ହୁଏ କାଳଜୟୀ । ବିଶ୍ୱ ଜୀବନର ଚିତ୍ର କହିଲେ ବିଶ୍ୱଭ୍ରମଣ ଜନିତ ଚିତ୍ର ନୁହେଁ, ବିଶ୍ୱ ଜୀବନର ଚିତ୍ର ଅର୍ଥ ବିଶ୍ୱଜୀବନକୁ ଯଦି କିଛି ଦାନ ସ୍ୱରୂପ ଦିଆଯାଇଥାଏ, ତାହାର ଚିତ୍ର । ଆଜିକାଲି ସମସ୍ତେ ଲେଖକ ହେବାକୁ ଆଗ୍ରହୀ । କାହାକୁ ତ ବାରଣ ନାହିଁ ଲେଖକ ହେବା ପାଇଁ । ଡି.ଟି.ପି. କେନ୍ଦ୍ରରେ ଡି.ଟି.ପି ସାରି ନେଟରୁ ଚିତ୍ର କାଢି କାଗଜ କିଣି ପ୍ରେସରେ ବହି ଛାପିବା କଥା । କମ୍ ସମୟରେ ଅତି ସହଜରେ ବହି ପ୍ରସ୍ତୁତି ସମ୍ଭବ ହେଉଛି । ବହି ଛପା ଆରମ୍ଭ ହେଉ ନ ହେଉଣୁ ଉଦ୍‌ଘାଟନ ପାଇଁ ଆୟୋଜନ । ଚା’ଜଳଖିଆ ଅଥବା ଭୋଜନ ବ୍ୟବସ୍ଥା ସହିତ ପୁସ୍ତକର ଉନ୍ମୋଚନ, ଆଗରୁ ଗଣମାଧ୍ୟମକୁ ଆମନ୍ତ୍ରଣ, ଦର୍ଶକଙ୍କୁ ଫୋନରେ ଫୋନରେ ନିମନ୍ତ୍ରଣ ଇତ୍ୟାଦି ଇତ୍ୟାଦି । ଉନ୍ମୋଚନ ସୁରୁଖୁରୁରେ ସଂପାଦିତ ହୋଇଗଲେ ଗଡ଼ କିଣା ଆନନ୍ଦ । ପାଠକ ପଢନ୍ତୁ କି ନ ପଢନ୍ତୁ, କିଛି ଯାଏ ଆସେ ନାହିଁ ।

ପାଠକ ଜାଣିଲେ ଲେଖକଙ୍କର ବହିଟିଏ ଉଦ୍‌ଘାଟିତ ହେଲା ବୋଲି । ଜଳଖିଆ ବା ଭୋଜନ ଗ୍ରହଣ କରି ଖୁସିରେ ଫେରିଲେ । ସମସ୍ତେ ଖୁସି ହି ଖୁସି । ଲେଖକ ଖୁସି ଏବଂ ପାଠକ ମଧ୍ୟ ଖୁସି । ଉଦ୍‌ଘାଟନ ସରିଲେ ବହିଛପା ନିଶା ସରିଲା । ରାମମୋହନ ଲାଇବ୍ରେରୀର ପୁସ୍ତକ ନିର୍ବାଚନ ପାଇଁ ଅପେକ୍ଷା ରହିଲା । ବହିଟି ନିର୍ବାଚିତ ହେଲେ ବାକି ତକ ଛପା ହେବ, ନହେଲେ ନାହିଁ ।

ପାଠକ ପାଖରେ ବହି ପହଞ୍ଚିବା ସହଜ ନୁହେଁ, ପହଞ୍ଚିଲେ ପାଠକ ବାରି ଦିଅନ୍ତି ସେଥିରେ ମସଲା ଠିକ୍ ଭାବରେ ଅଛି କି ନାହିଁ ।

ପଢ଼ିବାପାଇଁ ମସଲା ନଥିଲେ, ଖାଲି ଶବ୍ଦକୁ ଶବ୍ଦ ଯୋଡ଼ା ହୋଇ ଥିଲେ, ଫେଣେଇ ଫେଣେଇ ଲେଖା ହୋଇଥିଲେ, କଥାବସ୍ତୁରେ ବାସ୍ତବତା ନଥିଲେ, ଶୈଳୀରେ ସୁକୁମାରତା ନଥିଲେ ପାଠକ ପଢ଼ନ୍ତି ନାହିଁ । ଲେଖକ ପଚାରିଲେ ସେ କ୍ଷେତ୍ରରେ ଅଧା ପଢ଼ିଛି କହି ପରିସ୍ଥିତିକୁ ଚଳାଇ ନିଅନ୍ତି ।

ଏଇମିତି ଖଣ୍ଡେ ବା ଦୁଇଖଣ୍ଡ ବହି ଛପା ହୋଇଗଲା ପରେ ଲେଖକଙ୍କୁ ପୁରସ୍କାର ପାଇବାର ନିଶା ଲାଗେ । ବିଭିନ୍ନ ଅନୁଷ୍ଠାନର କର୍ମକର୍ତ୍ତା ଏବଂ ସଂପାଦକମାନଙ୍କୁ ଖୋସାମତି ଆରମ୍ଭ ହୁଏ । ପୁରସ୍କାର ପାଇଁ ଏହାକୁ ଲବି ବୋଲି କୁହାଯାଏ । ଏହା ଫଳପ୍ରଦ ନ ହେଲେ ନିଜେ ପଇସା ଦେଇ ସେଇ ପଇସାରେ ପୁରସ୍କାର ପାଇବାକୁ ହୁଏ । ଏକଥା ଶୁଣିଲେ ଶୁଣିଲା ଲୋକଙ୍କୁ ହସ ମାଡ଼େ ।

ପ୍ରକୃତରେ ଲେଖକର ସଂଜ୍ଞା ଭିନ୍ନ, କଳାକାରର ସଂଜ୍ଞା ଭିନ୍ନ । ଏଇ କଥାଟି ଅଭିନୟ, ନୃତ୍ୟ, ଚିତ୍ର ସମସ୍ତ ସର୍ଜନାତ୍ମକ କଳାତ୍ମକ କଥା ପାଇଁ ପ୍ରଯୁଜ୍ୟ । କଥାଟି ହେଉଛି ଯେତେ ଲୋକ ଲେଖନ୍ତି, ସମସ୍ତେ ଲେଖକ ନୁହନ୍ତି ମାତ୍ର ଲେଖକମାନେ ଲେଖନ୍ତି । ଯେତେହେଲେ ଗାଆନ୍ତି ସମସ୍ତେ ଗାୟକ ନୁହନ୍ତି, ମାତ୍ର ଗାୟକମାନେ ଗାଆନ୍ତି ଯେତେ ଲୋକ ବଜାନ୍ତି ସମସ୍ତେ ବାଦକ ନୁହନ୍ତି, ମାତ୍ର ବାଦକ ମାନେ ବଜାନ୍ତି । ଯେତେ ଲୋକ ଅଭିନୟ କରନ୍ତି ସମସ୍ତେ ଅଭିନେତା ନୁହନ୍ତି, ମାତ୍ର ଅଭିନେତାମାନେ ଅଭିନୟ କରନ୍ତି ଇତ୍ୟାଦି ଇତ୍ୟାଦି ।



# କବି ହୋଇଗଲେ ଅକବି ଲୋକେ

କବିମାନେ ଜନ୍ମ ହୋଇଥାନ୍ତି, ତିଆରି ହୁଅନ୍ତି ନାହିଁ । ପ୍ରଶିକ୍ଷଣ ଆବଶ୍ୟକ ମାତ୍ର ପ୍ରଶିକ୍ଷଣ ଓ ତିଆରି ଏକା କଥା ନୁହେଁ । ଯାହା ଭିତରେ କବି ପ୍ରତିଭା ଅଛି ସେ ପ୍ରଶିକ୍ଷଣର ସମନ୍ୱୟରେ ଉଚ୍ଚକୋଟିର କବିଟିଏ ହୋଇପାରେ । ମାତ୍ର ଯାହା ଭିତରେ ଜନ୍ମଗତ ପ୍ରତିଭା ନାହିଁ, ସେ ଅକବିଟିଏ । ଲବି ବଳରେ ଅକବିଟିର କବି ହେବାପାଇଁ ପ୍ରବଳ ଇଚ୍ଛା । ସୁବିଧା ସୁଯୋଗ ଟିକିଏ ମିଳିଗଲେ ସଦ୍‌ବ୍ୟବହାର କରୁକରୁ ତା'ର ଅସଦ୍‌ବ୍ୟବହାର କରି ପକାଏ । 'କବି ଅମୁକ',-ଆସନ୍ତୁ ସ୍ୱରଚିତ କବିତା ପାଠ କରିବାପାଇଁ । ନାମ ପୂର୍ବରୁ କବି ଶବ୍ଦଟି ଶୁଣି, କି ହସ, ମୁକ୍ତା ସତେ ଖଣ୍ଡଖଣ୍ଡ ହୋଇ ହସରୁ ଖସି ପଡୁଥାଏ । ଦେଖିଲା ବେଳକୁ ସେ କବି ନୁହନ୍ତି କିମ୍ବା ତାଙ୍କ ଲେଖା କବିତା ନୁହେଁ । କେତେକ ଅକବିତାର ଶବ୍ଦର ଖଞ୍ଜନ ମାତ୍ର । ନାହିଁ ତହିରେ ଭାବ, ଅନୁଭବ ଅବା ଅଭିବ୍ୟକ୍ତିର ଯଥାଯୋଗ୍ୟତା । ପ୍ରଶ୍ନ ଆସିବ ଅକବିତାର ଶବ୍ଦ କ'ଣ ? ଉତ୍ତର ହେଉଛି କବିତା ପାଇଁକି ଶବ୍ଦ ସମ୍ଭାର ଭିନ୍ନ । ନାଟକର ଶବ୍ଦ, ପ୍ରବନ୍ଧର ଶବ୍ଦ, ଗଳ୍ପର ଶବ୍ଦ ନୁହେଁ କବିତାର ଶବ୍ଦ । ସାଧାରଣ କଥାବାର୍ତ୍ତର ଶବ୍ଦ ମଧ୍ୟ କବିତାର ଶବ୍ଦ ନୁହେଁ । ଅକବିଙ୍କର ଧାରଣା, ଶବ୍ଦତ ଶବ୍ଦ ପୁଣି କବିତାର ଶବ୍ଦ ଗୋଟାଏ କ'ଣ ? ସେମାନେ ଜାଣନ୍ତି ନାହିଁ ସବୁପାଠ ପାଇଁ ଶବ୍ଦ ସମ୍ଭାର ଭିନ୍ନ ଭିନ୍ନ । ଏଇ ଯେମିତି କଚେରୀ ପାଇଁ ଶବ୍ଦମାନେ ଭିନ୍ନ, ସେଠାରେ ସାହିତ୍ୟର ଶବ୍ଦ ଚଳେ ନାହିଁ, ଚିକିତ୍ସା ବିଜ୍ଞାନ ପାଇଁ ଶବ୍ଦମାନେ ଭିନ୍ନ ସେଠାରେ ସାଧାରଣ ଭାଷାକୋଷର ଶବ୍ଦ ଚଳେ ନାହିଁ, ଉଦ୍ଭିଦ ବିଜ୍ଞାନ, ପ୍ରାଣୀ ବିଜ୍ଞାନ, ବାଣିଜ୍ୟ, ଦର୍ଶନ ପ୍ରଭୃତି ପାଠ ପାଇଁ ଶବ୍ଦମାନେ ଭିନ୍ନ ଭିନ୍ନ ।

ଅକବିଙ୍କର ଧାରଣା ଶବ୍ଦତ ଶବ୍ଦ, ଭାଷା ତ ଭାଷା, କବିତା ତ କବିତା ସେଥିପାଇଁ ପୁଣି ଶବ୍ଦର ନିର୍ବାଚନ, ବଚନର ଶୈଳୀ,ଅଭିବ୍ୟକ୍ତି ପାଇଁ ଛନ୍ଦ କ'ଣ ଦରକାର । ଶବ୍ଦକୁ ଶବ୍ଦ ଯୋଡ଼ି ଦେଲେ ତ ଲେଖାଟିଏ ହୋଇଗଲା, ତାହାର ନିର୍ଦ୍ଦିଷ୍ଟ ଧାରା ଥାଉ କି ନଥାଉ, ତହିଁରେ ଜୀବନ ପାଇଁ ତଥା ସମାଜ ପାଇଁ ବାର୍ତ୍ତାଟିଏ ଥାଉ କି ନଥାଉ । ବରଂ ଏମିତି ଧାରଣା ଅଛି ଯେ ଅର୍ଥ ଅବୋଧ୍ୟ ହେଲେ କବିତା ଉଚ୍ଚମାନର ହୁଏ । କବି ଅଧିକ ସମ୍ମାନର ପାତ୍ର ହୁଅନ୍ତି । ଲେଖୁ ଲେଖୁତ କବିତା, ସଭାରେ ତାଳି ବାଜିଲେ ତ ଭଲ କବିତା, ବହିରେ ମୁଦ୍ରିତ ହୋଇଗଲେ ତ ଉଚ୍ଚକୋଟୀର କବିତା, ନିଜ ଢୋଲ ନିଜେ ପିଟି ପାରିଲେ ତ ଭଲ କବି । ମାତ୍ର ଅକବି ଜାଣି ନାହାନ୍ତି ଯେ ଯେତେ ଲୋକ କବିତା ଲେଖନ୍ତି ସେମାନେ ସମସ୍ତେ କବି ନୁହନ୍ତି, ମାତ୍ର କବିମାନେ କବିତା ଲେଖନ୍ତି ।

ଅକବିମାନଙ୍କର ବଡ଼ ଆଗ୍ରହ ପୁରସ୍କାର ଯୋଗାଡ଼ରେ । ଅନୁଷ୍ଠାନକୁ ଅନୁଷ୍ଠାନ, ଦୁଆରକୁ ଦୁଆର ବୁଲି ସେମାନେ ଧଇଁସଇଁ ହୁଅନ୍ତି ପୁରସ୍କାରପାଇଁ । ଆଜିକାଲି ତ ପାଇସାଥିଲେ ମୁଦ୍ରଣ ସହଜରେ ଓ ଶୀଘ୍ର ହୋଇପାରିବ । ପୁସ୍ତକ ପ୍ରକାଶନ ଅତି ସହଜରେ ସମ୍ଭବ । ସେଇ ପୁସ୍ତକର ବିଜ୍ଞାପନରେ ଅକବି ବ୍ୟସ୍ତ । କିଏ ପଢୁକି ନ ପଢୁ ନିଜ ଢୋଲ ପିଟିବାରେ ନିଜେ ବ୍ୟସ୍ତ ।

ଶବ୍ଦମାନଙ୍କୁ ଯଜ୍ଞ ମାଧ୍ୟମରେ ବରଣ କରି ଆଣିବାକୁ ହୁଏ, ସମର୍ପିତ ମୁଦ୍ରାରେ ସେମାନଙ୍କୁ ଗ୍ରହଣ କରିବାକୁ ହୁଏ, ଏକଥା ଅକବି ଜାଣେ ନାହିଁ । ଯେଉଁଠି ଯେପରି ହେଉ ଶବ୍ଦ କେତେଗୋଟିକୁ ଏକାଠି କରି ଦେଲେ କବିତାଟିଏ ହୋଇଯାଏ ବୋଲି ସେ ଭାବେ । ଗୀତିକବିତା କଥା ନ କହିଲେ ଭଲ । 'ପୁଣ' , 'ଜାଣ', 'ତ' ପ୍ରଭୃତି ଶବ୍ଦମାନଙ୍କୁ ଖଞ୍ଜି ଦେଲେ ଗୀତିକବିତା ଲେଖା ଚଳେ । ଆଉ ଗୋଟିଏ ସହଜ ଉପାୟ ଅଛି । ତାହା ହେଉଛି କ୍ରିୟା ପଦକୁ  ଶେଷରେ ରଖିବା । ଏଇ ଯେପରି 'ଖାଇଲେ', 'ବସିଲେ', 'ହସିଲେ', 'ବୁଲିଲେ', 'ଝୁଲିଲେ' ଇତ୍ୟାଦି ଇତ୍ୟାଦି ।

କବିତା ଭିତରୁ ଆସେ, ବାହାରୁ ନୁହେଁ ।  କେତେ ଏକାଗ୍ରତା, କେତେ ନୀରବତା, କେତେ ଗଭୀରତା ଭିତରେ ଶବ୍ଦମାନେ ଥାଆନ୍ତି, ତାହା ଅକବି ଜାଣେ ନାହିଁ । କବିତା ଲେଖିବା ସବୁଠାରୁ କଷ୍ଟ, କେତେ କଷ୍ଟ ତାହା କବି ମାତ୍ରକେ ଜାଣନ୍ତି । ଅକବିଙ୍କ ଦୃଷ୍ଟିରେ କବିତା ଲେଖିବା ସବୁଠାରୁ ସହଜ ।

ଏପରି ହେବାରୁ ଯଥାର୍ଥ କବି ସଂପ୍ରତି ଅବହେଳିତ । ଅକବିଙ୍କ ରବରେ କବି ଏକ ପ୍ରକାର ନୀରବ । ଅକବିର ଧାରଣା ଯେ ମୋ କବିତା ଶ୍ରେଷ୍ଠ କବିତା, ମୁଁ ହେଉଛି ଶ୍ରେଷ୍ଠ କବି । ଅକବି ପଢ଼େ ନାହିଁ ପୂର୍ବ ସୂରୀଙ୍କୁ, ଭାବେ ସେମାନେ ପୁରୁଣା କାଳର, ପୁରୁଣା କଥା କହିଛନ୍ତି, ଆମେ ନୂଆ ଯୁଗର, ନୂଆ କଥା କହିବୁ । ଅନ୍ୟ କିଏ ଲାଭବାନ

ହେଉ କି ନ ହେଉ, ବୁଝୁ କି ନ ବୁଝୁ । ଅସଲ କଥା ଅକବି କିଛି ବୁଝି ନଥାଏ, ଜୀବନକୁ ଅବା ଜଗତକୁ ଅବା ଅନ୍ୟମାନଙ୍କୁ । ତେଣୁ ସେ ବୁଝାଇପାରେ ନାହିଁ ବରଂ ଦୋଷ ଦିଏ ପାଠକମାନଙ୍କୁ । କଥାଟି ଚାଲି ନଜାଣି ବାଟର ଦୋଷ, ବାନ୍ଧି ନଜାଣି ମଥାର ଦୋଷ ଦେବା ପରି ହୁଏ ।

କବିର ଅହଂକାରଠାରୁ ଅକବିର ଅହଂକାର ଅଧିକ । କାରଣ ଫମ୍ପା ମାଠିଆର ଶବ୍ଦ ବେଶୀ । ଶବ୍ଦରେ ପାଠକ ମଧ୍ୟ ବିବ୍ରତ ! ତେଣୁ ପତ୍ରିକାରେ କବିତା ଫର୍ଦ୍ଦ ଅଧିକ ପଠିତ ନୁହେଁ । ପ୍ରବନ୍ଧଟିଏ, ଗଳ୍ପଟିଏ, ଉପନ୍ୟାସଟିଏ, ନାଟକଟିଏ ଲେଖିବା କଷ୍ଟ, କବିତାଟିଏ ଲେଖିବା ଆଦୌ ସହଜ ନୁହେଁ । ଅକବିର ଧାରଣା ଯେ କବିତା ଲେଖିବା ଅତି ସହଜ । ଏପରିକି ପ୍ରତିଦିନ ମଧ୍ୟ ଗୋଟିଏ ଗୋଟଏ କବିତା ଲେଖି ହେବ । କଥାଟି ସେଇଆ ନୁହେଁ, କବିତାରେ ଶବ୍ଦ ବସାଣ ଅତ୍ୟନ୍ତ କଷ୍ଟ । ଅନ୍ୟ ବିଭବମାନଙ୍କରେ ଗୋଟିଏ ଦୁଇଟି ଶବ୍ଦକୁ ପରିବର୍ତ୍ତନ କରି ଦେଲେ ହୁଏତ ଚଳିଯିବ, ମାତ୍ର କବିତାରେ ନୁହେଁ ।

ସେଦିନ କବିସୂର୍ଯ୍ୟ ବଳଦେବ ରଥଙ୍କୁ ଏକ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଶେଷ ଜୀବନରେ ରଥ ମହାଶୟ ପୁରୁଷୋତ୍ତମ ଧାମରେ ଅବସ୍ଥାନ କରୁଥିଲେ । କବି ଭାବରେ ତାଙ୍କର ପ୍ରତିଷ୍ଠା ଥିଲା ମାତ୍ର କିଛି ଅକବି ଅସହିଷ୍ଣୁ ହୋଇ ରାଜାଙ୍କ ଆଗରେ ବଳଦେବ ରଥଙ୍କ ବିରୁଦ୍ଧରେ କେତେକଥା କହିଲେ । ବଳଦେବଙ୍କର କବିତ୍ୱ ଉଚ୍ଚକୋଟିର ନୁହେଁ ବୋଲି ପ୍ରଚାର ମଧ୍ୟ କଲେ । ଗଜପତିରାଜାଙ୍କୁ କବି ବଳଦେବ କ'ଣ ବା କହିବେ ? ଏଇ କବିତାରେ ରାଜାଙ୍କୁ ନମ୍ରତାର ସହିତ ଜଣାଇଥିଲେ "କବି ହୋଇଗଲେ ଅକବି ଲୋକେ/ରବି ହେଲେ ଜ୍ୟୋତିରିଙ୍ଗଣ ପୋକେ/ଇତ୍ୟାଦି ଇତ୍ୟାଦି ।" ବଳଦେବଙ୍କ କୀର୍ତ୍ତି ମଳିନ ହେଲା ନାହିଁ । ବିବେକୀ ଗ୍ରାହକ ଥିଲେ କବିକୀର୍ତ୍ତି ମଳିନ ହୁଏ ନାହିଁ । ଶୁଭକ୍ଷଣରେ ତାଙ୍କର ଜନ୍ମ ହୋଇଥାଏ ଏବଂ ସେମାନେ ମୃତ୍ୟୁବରଣ କଲେ ମଧ୍ୟ ଯଶୋଦେହରେ ଆୟୁଷ୍ମାନ ହୋଇ ରହିଥାନ୍ତି । କବିମାନେ ନିଜ କଥା ଭାବିବା ସହିତ ଅନ୍ୟମାନଙ୍କ କଥା ଭାବିଥାନ୍ତି, ତେଣୁ ସେମାନେ ମରି ମଧ୍ୟ ଅମର ହୋଇ ରହିଥାନ୍ତି ।



# ସାଂପ୍ରତିକତା ଓ ନୈତିକତା

ବଡ଼ବଡ଼ିଆଙ୍କୁ ଧରିଲେ ନୀତିନିୟମ କିଛି ଲୋଡ଼ା ନାହିଁ, ଅନୀତି, ଦୁର୍ନୀତି ଯେତେ ସବୁ ନୀତିରେ ପରିଣତ ହୋଇଯାଉଛି । କ୍ରୋଧ ଆଉ ନାକ ଅଗରେ ରହୁନାହିଁ, ହଠାତ୍ ପଞ୍ଚମରେ ଉଠିଯାଉଛି । କଥାକଥାରେ ଛୁରାମାନ, ପିସ୍ତଲ ଚଳନାପରି ଘଟଣା ଘଟୁଛି । ମଦ ଏଥିରେ ଉଦ୍ଦୀପନ ବିଭାବ ପରି କାମ ଦେଇଛି । ସମସ୍ତେ ବ୍ୟସ୍ତ, ବିବ୍ରତ, ବିଚଳିତ, ବ୍ୟଥିତ । କେବଳ ଅସ୍ଥିର ନୁହେଁ ଅତି ତରତର, ଅଶାନ୍ତ ମଧ୍ୟ ।

ଆଉ କାହା କଥା ଶୁଣିବାକୁ ମନୋବୃତ୍ତି ନାହିଁ, କାହାକୁ ଟିକିଏ ସହ୍ୟ କରିବାର ମାନସିକତା ନାହିଁ । କାହାକୁ ସତେ ଯେମିତି ସମୟ ଟିକିଏ ନାହିଁ ଆପଣାର ଲୋକକୁ ରହିଁ ହସି ପଦେ କଥା କହିବାପାଇଁ । ହସ ତ ଲିଭିଲିଭି ଯାଉଛି ମଣିଷର ଓଠରୁ । ମିଠା କଥା ତ ତୁଣ୍ଡରେ ପଶୁନାହିଁ, ଯାହା ଅଛି ଚକ୍ରାନ୍ତର କଥା, ନହେଲେ ଚଞ୍ଚକତାର କଥା ଅଥବା ରାଗତମତମ କଥା । ଥଣ୍ଡା ମିଠା କଥା ପଦେ ପ୍ରାୟ କେଉଁଠାରୁ ଶୁଣିବାକୁ ମିଳୁନାହିଁ, ଯାହା ମିଳୁଛି ତାହା ଏତେ କମ୍ ଯେ ତାକୁ ମିଳୁଛି ବୋଲି କହି ହେଉ ନାହିଁ । କେବଳ ଲାଭ କ୍ଷତିର ଅଙ୍କ କଷୁ କଷୁ ସମୟ ସରିଯାଉଛି । ଯେନତେନ ପ୍ରକାରେଣ ପୁଳାଏ ଲାଭ ପାଇଯିବାର ମାନସିକତା ବଳବତ୍ତର ହୋଇଛି । ନିଜର ସୁବିଧା ପାଇଁ ଅନ୍ୟର ଅସୁବିଧା ଯେତେ ହେଲେ ମଧ୍ୟ ବିବେକକୁ ବାଧୁ ନାହିଁ । ନ୍ୟାୟ ଅନ୍ୟାୟ କଥାଟି ବହୁସ୍ଥଳରେ ପୁରୁଣା ଶବ୍ଦ ହୋଇ ରହିଗଲାଣି, କାର୍ଯ୍ୟକାରୀ ହେଉନାହିଁ । ଭୁଲ ଠିକ୍ ପ୍ରଭୃତି ଶବ୍ଦ ମାନେ ପୁରୁଣାକାଳର ହୋଇଗଲେଣି । ପ୍ରାୟ ପ୍ରତ୍ୟେକଙ୍କର ଧାରଣା ଯେ ମୁଁ ଯାହା କରୁଛି ତାହା ହିଁ ଶହେ ଭାଗଠିକ୍ । ଦାବିକରିବା, ଜାହିର କରିବା କଥାଟି ଅଧିକରୁ ଅଧିକ ପ୍ରଚଳିତ

ହେଉଛି । ସମାଜଠାରୁ ଦାବି, ଦେଶଠାରୁ ଦାବି କରିବା ଅତି ସାଧାରଣ କଥା ହୋଇଗଲାଣି । ତଦନୁସାରେ ସମାଜ ପ୍ରତି କର୍ତ୍ତବ୍ୟ ଓ ଦେଶ ପ୍ରତି କର୍ତ୍ତବ୍ୟ କରିବାର ମନୋଭାବ ଅଛିକି ନାହିଁ, ତାହା ବିଚାର କରିବାର କଥା ।

ସଂପ୍ରତି ପଞ୍ଚ ଇନ୍ଦ୍ରିୟ ତୃପ୍ତିରେ ଜୀବନ ଧନ୍ୟ ହେଲାପରି ଅଧିକରୁଅଧିକ ଲାଗୁଛି । ଷଷ୍ଠ ଇନ୍ଦ୍ରିୟ କଥା ପଚାରେ କିଏ ? ମୋ ସୁବିଧା ମାନେ ଦୁନିଆର ସୁବିଧା, ମୁଁ ହିଁ ଦୁନିଆ ଏବଂ ଦୁନିଆମାନେ ମୁଁ- ଏହି ଭାବ ବସାବାନ୍ଧି ଯାଇଛି ଅଧିକାଂଶ ଲୋକଙ୍କ ଧାରଣାରେ । ବିଜ୍ଞାନର ଅବଦାନ ବଢ଼ିଲା, ବିଜ୍ଞାନର ପ୍ରୟୋଗ ବଢ଼ିଲା, ସ୍ୱାସ୍ଥ୍ୟ ବଢ଼ିବା ଫଳରେ ଜୀବନ ଯାତ୍ରାର ମାନ ବଢ଼ିଲା । କେତେ କେତେ କଥା ଆହୁରି ବଢ଼ିଲା ସିନା, ହେଲେ ମନ ଯେତିକି ବଢ଼ିବା କଥା ବଢ଼ିଲା ନାହିଁ । ଶହେ ବର୍ଷତଳରେ ଥିବା ମନର ଉଚ୍ଚତାଠାରୁ ସାଂପ୍ରତିକ ମନର ଉଚ୍ଚତା କମିଲା । ମନ କେବଳ ଧାଇଁଲା ଧନ ପଛରେ ଓ ଭୋଗ ପଛରେ । ଧାରଣା ବଦ୍ଧମୂଳ ହେଲା ଯେ ଧନ ହିଁ ପୂର୍ଣ୍ଣସୁଖ ଆଣିଦେବ । ଧନ ମିଳିଲେ ସବୁମିଳିବ, ଯେତେ ଅଧିକ ଧନ ଯେକୌଣସି ପ୍ରକାରେ ମିଳୁ ପଛକେ, ତାହା ହିଁ ଆବଶ୍ୟକ, କାରଣ ଧନ ଲୋଭରେ ବାଘ ମଧ୍ୟ ଦୁଆରେ ନାଚିବ । ଧନ ଅନାବଶ୍ୟକ ନୁହେଁ, ଅତ୍ୟନ୍ତ ଆବଶ୍ୟକ । ଅର୍ଥକୁ ଏକ ଶକ୍ତି ବୋଲି ଶ୍ରୀଅରବିନ୍ଦ କହିଛନ୍ତି । ପାର୍ଥିବ ଜୀବନର ବିକାଶ ନିମନ୍ତେ ଏହାର ପ୍ରବଳ ଆବଶ୍ୟକତା ରହିଛି । ଧନ ସହିତ ମନର ଆବଶ୍ୟକତା ମଧ୍ୟ ରହିଛି । ଭଲ, ମନ୍ଦ, ଭୁଲଠିକର ଭାବନା ମଧ୍ୟ ରହିବା ଆବଶ୍ୟକ । ଦୁଇଟି ଯାକ କଥା ଯଥା ସ୍ଥାନରେ ରହିବା ଅତ୍ୟନ୍ତ ଜରୁରୀ । ଧନ ଓ ମନ ପରସ୍ପର ସହ ଯୋଡ଼ି ହୋଇ ରହିଲେ ଜୀବନ ସାର୍ଥକ ହୁଏ ।

କିଏ କିଏ କହିବାର ଶୁଣାଯାଏ ଯେ ଧନ ରହିଲେ ମନ ରହେ ନାହିଁ, କିନ୍ତୁ ଏହା ଗୋଟାଏ ଭ୍ରମ । ଧନ ସହ ମନର ଅପଡ଼ନାହିଁ, ଧନ ଓ ମନ ଏକାଠି ରହିପାରନ୍ତି । ସେ ଜୀବନକୁ ସାର୍ଥକ ଜୀବନ ବୋଲି କୁହାଯାଇପାରେ । ଶ୍ରୀମଦ୍ ଭଗବଦ୍‌ଗୀତା ଗ୍ରନ୍ଥରେ ସଦାଚାରୀ ଧନୀ ଗୃହର ଜୀବନକୁ ଭଲ ଜୀବନ ବୋଲି କୁହାଯାଇଛି । ଧନ ହିତ ସଦାଚରର ସଂଯୋଗ ଏକ ମଣିକାଞ୍ଚନର ସଂଯୋଗ । ସଦାଚାର ଥାଏ ଉଚ୍ଚ ମନରେ । ସଦାଚାର ଦ୍ୱାରା ଧନର ସଦ୍‌ବ୍ୟବହାର ହୋଇପାରେ ଏବଂ ଧନ ଦ୍ୱାରା ସଦାଚାରର କ୍ରିୟାଶୀଳତା ବଢ଼ିଥାଏ ।

ଏହି ସଦାଚାର ଆସେ ନୈତିକତାଠାରୁ । ନୈତିକତା ଆସେ ମୁଖ୍ୟତଃ ପରିବାରରୁ । ପିତାମାତା ଓ ଅଭିଭାବକଙ୍କର ଆଚରଣ ବହୁତ ପ୍ରଭାବ ପକାଏ ପିଲାଟି ଉପରେ । ପିଲାଟି ପାଇଁ ପ୍ରକୃତରେ ଆଦର୍ଶ ହୋଇ ରହିଥାନ୍ତି ପିତାମାତା ଓ ଅଭିଭାବକ । ପିଲାଟି ଲକ୍ଷ୍ୟରେ ହେଉ ଅଥବା ଅଲକ୍ଷ୍ୟରେ ହେଉ ସେମାନଙ୍କୁ ଅନୁକରଣ କରୁଥାଏ । ସେମାନଙ୍କ ଗୁଣ, ଆଚରଣ ତଥା ଉଚ୍ଚାରଣ ଦ୍ୱାରା ବହୁଭାବରେ ପ୍ରଭାବିତ ହୋଇଥାଏ । ଥରେ ଅନ୍ତରରୁ

ପ୍ରଭାବିତ ହୋଇଗଲେ, ସେ ପ୍ରଭାବ ସ୍ଥାୟୀ ହୋଇ ରହେ । ମହାତ୍ମାଗାନ୍ଧୀ ଓରଫ ମୋହନ ଦାସଙ୍କର ମିଛ ନକହିବାର ପ୍ରତିଜ୍ଞା ପାଳନ ପାରିବାରିକ ଶିକ୍ଷାର ଅନ୍ୟତମ ଫଳଶ୍ରୁତି । ତାଙ୍କ ମା'ଙ୍କ ପାଖରେ ମିଛ ନ କହିବାର ପ୍ରତିଜ୍ଞା ସେ କରିଥିଲେ, ଆତ୍ମସମ୍ମାନର ସୁରକ୍ଷା ପାଇଁ ପ୍ରତିଜ୍ଞା ତାଙ୍କ ମା'ଙ୍କ ଉପଦେଶରୁ ତାଙ୍କୁ ମିଳିଥିଲା । ମା'ଙ୍କର ପଦଟିଏ କଥା ! "ଆଲୋସଖି ! ଆପଣା ମହତ ଆପେରଖି," ଏତେ ତାଙ୍କୁ ପ୍ରଭାବିତ କରିଥିଲା ଯେ ସେ ତାହାକୁ ସାରାଜୀବନ ପାଳନ କରିଥିଲେ ।

କେବଳ ପରିବାରରୁ ନୁହେଁ, ଶିକ୍ଷାୟତନର ଶିକ୍ଷା ବ୍ୟବସ୍ଥାରୁ ତଥା ପାଠ୍ୟଖସଡ଼ାରୁ ମଧ୍ୟ ନୈତିକତା ଆସେ । ଏହିପରି ବହୁକ୍ଷେତ୍ରରେ ଦେଖାଯାଇଛି ଯେ ଜଣେ ଜଣେ ଶିକ୍ଷକଙ୍କର ଆଦର୍ଶ ଓ ନୈତିକମୂଲ୍ୟବୋଧ ଜଣେ ଜଣେ ଛାତ୍ରକୁ ମାର୍ମିକ ଭାବରେ ପ୍ରଭାବିତ କରିଛି ଓ ଜୀବନରେ ସଦାଚାରୀ ହେବା ପାଇଁ ପ୍ରେରଣା ଦେଇଛି ।

ବାହାରୁ ଅର୍ଥାତ୍ ଅନ୍ୟମାନଙ୍କର ଚାଲିଚଳଣିରୁ ସଦାଚାର ଶିଖି ହୁଏ ଯଦି ଶିଖିବାର ଆଗ୍ରହ ଓ ମନୋବୃତ୍ତି ଥାଏ । ସଭାସମିତି ତଥା ଆଲୋଚନାଚକ୍ରମାନଙ୍କରୁ ମଧ୍ୟ ସଦାଚାର ଶିଖିହୁଏ । ସର୍ବୋପରିଏଥି ନିମନ୍ତେ ଗ୍ରହଣୀଶୀଳତା ଆବଶ୍ୟକ ।

ଏହି ଗ୍ରହଣଶୀଳତା ହେଉଛି ସକାରାତ୍ମକ ଗ୍ରହଣଶୀଳତା । ଆଜିକାଲି ଗ୍ରହଣଶୀଳତା ଅଛି, ମାତ୍ର ନକାରାତ୍ମକ ଦିଗରେ ତାହା ଅଧିକ କାର୍ଯ୍ୟକାରୀ ହେଉଛି । ସାଇବର ଅପରାଧଠାରୁ ବ୍ୟାଙ୍କ ଲୁଟ ପର୍ଯ୍ୟନ୍ତ ଶିଖିବା ଦିଗରେ ଗ୍ରହଣଶୀଳତା ରହୁଛି । ଆଉ ଆଉ କେତେ ଠକାମି ଶିଖିବାର ମାନସିକତା ରହୁଛି ମାତ୍ର, ଗଠନମୂଳକ କଥା ଶିଖିବାର ମନୋଭାବ କମି ଯାଉଛି । କାହିଁକି, ଏପରି ହେଉଛି ତାହା ବିଚାର୍ଯ୍ୟ ବିଷୟ ।

ସକାରାତ୍ମକ ମନୋଭାବ ପିଲାମାନଙ୍କ ଭିତରେ ଆଣିବା ନିମନ୍ତେ ପିତାମାତା ଅଧିକ ସଚେତନ ହେବା ଏକାନ୍ତ ଜରୁରୀ । ସେମାନଙ୍କର ପ୍ରୟାସ ଓ ପ୍ରଚେଷ୍ଟା । ଏଥି ନିମନ୍ତେ ଆବଶ୍ୟକ । ନିଜର ଚାଲିଚଳଣିରେ ସକାରାତ୍ମକ ଭାବଧାରା ସହିତ ନୀତିଅନୀତିର ବିଚାର ସମନ୍ୱିତ ଦେବା ଦରକାର । ପିଲାଙ୍କୁ ଉପଦେଶ ଦେଇ ଦେଲେ ପାରିବାରିକ ଶିକ୍ଷା ସରେ ନାହିଁ, ଏଥି ସହିତ ନିଜେ ଉଦାହରଣ ହେବାକୁ ପଡ଼େ । ଉଦାହରଣ ହେବାପାଇଁ କଷ୍ଟ ସ୍ୱୀକାର କରିବାକୁ ପଡ଼େ । ନିଜକୁ କଷ୍ଟ ହେଲେ ମଧ୍ୟ ଏଥି ନିମନ୍ତେ ପ୍ରସ୍ତୁତ ରହିବାକୁ ହୁଏ । ପିତାମାତା ଓ ଅଭିଭାବକଙ୍କ ପୀଢ଼ି ପ୍ରଭାବଶାଳୀ ହୋଇଗଲେ ଆପେ ଆପେ ପିଲାମାନେ ବହୁଳାଂଶରେ ସଜାଡ଼ି ହୋଇଯିବେ । ସେମାନେ ଜୀବନର ସାର୍ଥକତା ଅନୁଭବ କରିବେ ।

ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ଜୀବନର ମହତ୍ତ୍ୱ ରହିଛି ପୂର୍ଣ୍ଣାଙ୍ଗ ପୂର୍ଣ୍ଣତାରେ । ବ୍ୟକ୍ତିଗତ ଜୀବନ ସହିତ ସାମାଜିକ ଜୀବନ, ରାଷ୍ଟ୍ରୀୟ ଜୀବନ ଏବଂ ଅନ୍ତଃରାଷ୍ଟ୍ରୀୟ ଜୀବନର ସମନ୍ୱୟ ହିଁ ଜୀବନର ପୂର୍ଣ୍ଣତାର ମୂଳକଥା । ବ୍ୟକ୍ତିଗତ ଜୀବନର ବିକାଶ ପାଇଁ ଖାଦ୍ୟ,ବସ୍ତ୍ର,

ବାସଗୃହ ଶିକ୍ଷା, ସ୍ୱାସ୍ଥ୍ୟ ଓ ମନୋରଞ୍ଜନ ଆବଶ୍ୟକ । ଏତିକି ଯଥେଷ୍ଟ ନୁହେଁ, ସମାଜ ପାଇଁ କର୍ତ୍ତବ୍ୟର ଜୀବନ ହିଁ ସାମାଜିକ ଜୀବନ । ନିଜର ଦେଶ ପ୍ରତି ମଧ୍ୟ କିଛି କର୍ତ୍ତବ୍ୟ ରହିଛି । 'ଦେଶ ଆମର ଓ ଆମେ ଏ ଦେଶର ।' ଏଇ ଭାବ ହିଁ ଦେଶାତ୍ମବୋଧ । ଅନ୍ତଃରାଷ୍ଟ୍ରୀୟ ଜୀବନର ଅନ୍ୟନାମ ବିଶ୍ୱଜୀବନ । ନିଜକୁ ବିଶ୍ୱ ଜୀବନର ଜଣେ ନାଗରିକ ବା ଏକକ ବୋଲି ବିଚାରିବା ଜୀବନକୁ ମୂଲ୍ୟଦିଏ । ବିଶ୍ୱର ପ୍ରତ୍ୟେକ ଦେଶର ଚଳଣିରେ କିଛି କିଛି ଦିନ ଚଳିବା ବିଶ୍ୱନାଗରିକତ୍ୱ ନୁହେଁ । ପ୍ରତ୍ୟେକ ଦେଶରଭାଷାକୁ କିଛି କିଛିଦିନ କହିବା ବିଶ୍ୱ ନାଗରିକତ୍ୱ ନୁହେଁ । ସମଗ୍ର ବିଶ୍ୱ ଜୀବନପାଇଁ ନିଜର ଦାୟବଦ୍ଧତା ହିଁ ବିଶ୍ୱନାଗରିକତା । ଅର୍ଥାତ ଭାବନାରେ, ଚେତନାରେ ନିଜ ଭିତରେ ବିଶ୍ୱକୁ ଓ ବିଶ୍ୱ ଭିତରେ ନିଜକୁ ସଯତ୍ନରେ ରଖିବା ହିଁ ବିଶ୍ୱାତ୍ମକତା । ଏହାକୁ ଆମେ ଭାରତୀୟ ଦର୍ଶନ ଅନୁସାରେ ଥିବା ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱର ପାଖାପାଖି କଥା ବୋଲି କହିପାରିବା । ବ୍ୟକ୍ତି ସଚେତନତା ହିଁ ବିଶ୍ୱସଚେତନତାର ଏକକ ସଦୃଶ । ବ୍ୟକ୍ତିଟିଏ କ୍ରୋଧରୁ ମୁକ୍ତ ହେଲେ ବିଶ୍ୱ କ୍ରୋଧରୁ ମୁକ୍ତ ହେବାର ଆଶା ଓ ବିଶ୍ୱାସ ଆସେ । ମନେପଡ଼େ ଶ୍ରୀମାଙ୍କର ଉକ୍ତି–'ଯଦି ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବାକୁ ଚାହଁ, ତେବେ ପ୍ରଥମେ ନିଜ ଅନ୍ତରରେ ଶାନ୍ତି ପ୍ରତିଷ୍ଠା କର ।'

ପୂର୍ଣ୍ଣାଙ୍ଗ ପୂର୍ଣ୍ଣତାର ଜୀବନ ପାଇଁ ସର୍ବୋପରି ଜୀବନରେ ଚେତନାର ପରିପ୍ରକାଶ ଓ ବିକାଶ ଲୋଡ଼ା । ଯିଏ ଯେଉଁ ସ୍ଥାନରେ ଓ କର୍ମରେ ଥାଆନ୍ତୁ ପଛକେ ଚେତନାର ବିକାଶ ହିଁ ଯଥାର୍ଥ ବିକାଶ, ଏଥିରେ ସନ୍ଦେହର ଅବକାଶ ନାହିଁ ।



# ସାହିତ୍ୟ ଓ ଜୀବନ

ସାହିତ୍ୟ ଏକ ଶକ୍ତି, ଏହି ଶକ୍ତିକୁ ଅନୁଭବ କରି ହୁଏ । ଶବ୍ଦକୁଶବ୍ଦ ଖଂଜି ଦେଲେ ତାହା ସାହିତ୍ୟ ହୁଏ ନାହିଁ, ଏଥିରେ ପ୍ରାଣର ସଂଚାର କରିବାକୁ ପଡ଼େ । ଏପରି ଅନେକ ସଂରଚନା ଅଛି ଯହିଁରେ ଶବ୍ଦମାନ ଥାଆନ୍ତି ମାତ୍ର ସେମାନଙ୍କର ଜୀବନୀ ଶକ୍ତି ପ୍ରଖର ନ ଥାଏ । ତେଣୁ ସେ କୃତୀ ସମୂହ କାଳଜୟୀ ହୋଇ ପାରନ୍ତି ନାହିଁ । ପାଠକୀୟ ଆଦୃତି ଲାଭ କରିପାରନ୍ତି ନାହିଁ । ଶବ୍ଦର ନିର୍ଦ୍ଦିଷ୍ଟ ଶକ୍ତି ସହିତ ସ୍ରଷ୍ଟାର ଭାବ, ଭାବନା, ଚେତନା, ଅନୁଭବ, ପ୍ରକାଶ କୌଶଳ ମିଶିବା ଦରକାର । ଲେଖୁଲେଖୁ, ଲେଖିବା ପାଇଁ ଲେଖକ ହେଲେ ଚଳିବ ନାହିଁ । ଆମକୁ କେତେକ ଶବ୍ଦ ଜଣା ଅଛି, ସେଗୁଡ଼ିକୁ ଆମ ବିଚାର ମାଧ୍ୟମରେ ପାଖାପାଖି ରଖି ଦେଲେ ସାହିତ୍ୟ ହେବ ନାହିଁ । ସ୍ରଷ୍ଟାପଣ ଆଉ ଗୋଟିଏ କଥା, ଯାହା ଜନ୍ମଗତ, ପ୍ରତିଭାଗତ । କବିତ୍ୱ ଏକ ସ୍ୱଭାବ ସୁଲଭ ଉପାଦାନ, ଏହା ଡିଗ୍ରୀର କଥା ନୁହେଁ କି ବୃତ୍ତିର କଥା ନୁହେଁ । ଏହା ଏକ ମୌଳିକ ଚିନ୍ତନ ଓ ପ୍ରବୃତ୍ତି ଭିତ୍ତିକ କଳା କୀର୍ତ୍ତି, ଯାହାର ତୁଳନା ନାହିଁ । ସେଥିପାଇଁ ତ କୁହାଯାଏ କବିମାନେ କବିତା ଲେଖନ୍ତି, ଯେତେ ଲୋକ କବିତା ଲେଖନ୍ତି ସମସ୍ତେ କବି ନୁହନ୍ତି । ଗାୟକମାନେ ଗାଆନ୍ତି, ଯେତେ ଲୋକ ଗାଆନ୍ତି ସମସ୍ତେ ଗାୟକ ନୁହନ୍ତି । ବାଦକମାନେ ବଜାନ୍ତି, ମାତ୍ର ଯେତେ ଲୋକ ବଜାନ୍ତି ସମସ୍ତେ ବାଦକ ନୁହନ୍ତି । ନର୍ତ୍ତକମାନେ ନାଚନ୍ତି ମାତ୍ର ଯେତେ ଲୋକ ନାଚନ୍ତି ସମସ୍ତେ ନର୍ତ୍ତକ ନୁହନ୍ତି । ଅତଏବ ସୃଜନଶୀଳତା ଏକ ମୌଳିକ କଳା । ଏହା ସମସ୍ତଙ୍କ ପାଖରେ ନ ଥାଏ । ଏହା ଯଶ, ପ୍ରଶଂସା, ପଦବୀ, ସମ୍ମାନ ଲୋଡ଼େ ନାହିଁ । ଏହି କଳା ଆତ୍ମପ୍ରକାଶିତ ହୁଏ ବିଭିନ୍ନ ପ୍ରକାରେ । କେତେବେଳେ

ଅକ୍ଷର ମାଧ୍ୟମରେ ତ ଆଉ କେତେବେଳେ ରଙ୍ଗ ମାଧ୍ୟମରେ । କେତେବେଳେ ବାଦ୍ୟ ଲହରରେ ତ ଆଉ କେତେବେଳେ ସ୍ୱର ତରଙ୍ଗରେ, କେତେବେଳେ ନୃତ୍ୟର ଛନ୍ଦରେ ତ ଆଉ କେତେବେଳେ ଅଭିନୟର ଲଳିତ ବନ୍ଧରେ । ଯଶ ଖୋଜୁଥିବା କବିକୁ ମନ୍ଦ କବି ବୋଲି ଶାସ୍ତ୍ରରେ କୁହାଯାଇଛି । ଆଜିକାଲି ଯଶ ପ୍ରାର୍ଥୀ ସ୍ରଷ୍ଟାଙ୍କ ସଂଖ୍ୟା ଅଧିକ । ଅଳ୍ପ କିଛି କୃତିର ବିନିମୟରେ ଅଧିକରୁ ଅଧିକ ପାଠକୀୟ ସ୍ୱୀକୃତି, ମାନପତ୍ର, ପୁରସ୍କାର, ଉପହାର, ଉପଢୌକନର ଆଶା ଅତ୍ୟନ୍ତ ପ୍ରବଳ । ସେଥିପାଇଁ ବିଧିବଦ୍ଧ ଯୋଜନା ଆହୁରି ଉଜ୍ଜ୍ୱଳ । କ୍ଷମତାର ଅପପ୍ରୟୋଗ ଦ୍ୱାରା ହେଉ ଅଥବା ଖୋସାମତି ମାଧ୍ୟମରେ ହେଉ ପରିଚିତି ଓ ପ୍ରଶଂସା ପଛରେ ଧାଇଁବା ହୋଇଛି ଏକ ବିକୃତ ରୁଚି ମାତ୍ର । ଭିତରେ କିଛି ସେମିତି ଅନ୍ୟକୁ ତଥା ସମାଜକୁ ଦେବା ପାଇଁ ନ ଥାଉ ପଛେ ନିଜ ପ୍ରଶଂସା ନିଜେ ଗାନ କରିବାର ଲାଳସା ପୁଣି ଆଗ୍ରହ ଅତ୍ୟନ୍ତ ହାସ୍ୟାସ୍ପଦ । ଅବଶ୍ୟ କେହି ଆଉଁସି ନ ଦେଲେ ନିଜକୁ ନିଜେ ଆଉଁସି ଦେଲାପରି, କେହି ପ୍ରଶଂସା ନକଲେ ନିଜକୁ ନିଜେ ପ୍ରଶଂସା କରିବା ଛଡ଼ା ଅନ୍ୟ ବାଟ ନାହିଁ । ସମୟ ପୁଣି ଏମିତି ହୋଇଛି ଯେ ନିଜ ଢୋଲ ନିଜେ ଯେତେ ଜୋରରେ ବାଡ଼େଇ ଜଣେ ଗଗନ ଫଟାଇବ ସେତେ ବଡ଼ ବ୍ୟକ୍ତିତ୍ୱ ବୋଲି ସେ ଗଣା ହେବ, ସେତେ ପୁରସ୍କାର ତାକୁ ସହଜରେ ମିଳି ଯିବ । ଅନ୍ୟ ତ କେହି ବଡ଼ ବୋଲି କହିବାର ନାହିଁ, ତେଣୁ ଅନ୍ୟର କଥାକୁ ଅପେକ୍ଷା କରିବାର ନାହିଁ । ପୁଣି ଧୈର୍ଯ୍ୟ ନାହିଁ ଅପେକ୍ଷା କରିବା ପାଇଁ ଭଲ ଜିନିଷର ବିନିମୟରେ ଅନ୍ୟଠାରୁ ପ୍ରଶଂସା ପାଇବା ନାହିଁ । ଜିନିଷର ଗୁଣାତ୍ମକତା ଆଉ କାହାକୁ ଜଣାଥାଉ କି ନ ଥାଉ ନିଜକୁ ତ ଜଣାଅଛି । ମନେପଡ଼େ ଶ୍ରୀଅରବିନ୍ଦଙ୍କ କଥା ପଦକ- ''ତୁମେ ତୁମ ପାଇଁ କହ ନାହିଁ, ତୁମ କାମ ତୁମ ପାଇଁ କହୁ ।''

ଏକଥା ଆଜିର କଥା ନୁହେଁ, କାଳେକାଳେ ଏପରି ଆତ୍ମଘୋଷିତ ସ୍ରଷ୍ଟାମାନେ ଥିଲେ । ସମୟ ତାଙ୍କୁ କେତେ ରଖିଲା ନ ରଖିଲା ତାହା ଭିନ୍ନ କଥା । ମାତ୍ର ତତ୍କାଳରେ ନିଜକୁ ଅଧିକ ଗୁରୁତ୍ୱ ଦେଇ ଅନ୍ୟକୁ ଆଦୌ ଗୁରୁତ୍ୱ ନ ଦେବା, ଏହା ଏକ ଅଭ୍ୟାସ, ମନ୍ଦ ଅଭ୍ୟାସ । ଏହି ପରିପ୍ରେକ୍ଷୀରେ ମନେପଡ଼େ କବିସୂର୍ଯ୍ୟ ବଳଦେବ ରଥଙ୍କ ଉକ୍ତି । ସେ କହିଲେ -

'କବି ହୋଇଗଲେ ଅକବି ଲୋକେ
ରବି ହେଲେ ଜ୍ୟୋତିରିଙ୍ଗଣ ପୋକେ ।''

ଏହାଦ୍ୱାରା ସାହିତ୍ୟ, ସଂଗୀତ, ନୃତ୍ୟ, ଅଭିନୟ ପ୍ରଭୃତି ଜଗତର ବହୁ କ୍ଷତି ହୁଏ, ମୌଳିକତା ବହୁ ଭାବରେ ନଷ୍ଟ ହୋଇଯାଏ । କଥାରେ କହନ୍ତି ଧୂଆମୂଳା, ଅଧୂଆ ମୂଳା ସମାନ । ତାହା ହିଁ ହୁଏ । ବ୍ୟକ୍ତି ହୁଏତ ସମ୍ମାନ ଯୋଗାଡ଼ କରି ପାଏ ମାତ୍ର ବିଶ୍ୱର

ବିଶେଷ କିଛି ଲାଭ ହୁଏ ହୁଏ । ବିଶ୍ୱର କହିଲେ ସାହିତ୍ୟ କ୍ଷେତ୍ରରେ ବିଶ୍ୱ ସାହିତ୍ୟର, ସଂଗୀତ କ୍ଷେତ୍ରରେ ବିଶ୍ୱ ସଂଗୀତର, କଳାକ୍ଷେତ୍ରରେ ବିଶ୍ୱକଳାର ସର୍ବୋପରି ବିଶ୍ୱ ସୃଜନଶୀଳତାର ପ୍ରାୟ କିଛି ବିକାଶ ଘଟେ ନାହିଁ । ସେସବୁ ଯେଉଁଠାରେ ଥାଆନ୍ତି, ସେହିଠାରେ ହିଁ ଥାଆନ୍ତି । ସମ୍ଭାରର ସଂଖ୍ୟା ବଢ଼ୁଥାଏ । ମାତ୍ର ତହିଁରେ ଗୁଣାତ୍ମକତା ନ ଥିବାରୁ ସେ ସବୁ ଅଲଗା ଲାଗନ୍ତି । ସ୍ରଷ୍ଟାଙ୍କର ଶକ୍ତି ଓ ସମୟର ଅପବ୍ୟବହାର ଘଟିଥାଏ ମାତ୍ର । ସୃଜନଶୀଳତା ଅନ୍ୟକୁ ବାଟ ଦେଖାଏ, ଅନ୍ୟର ମନୋରଞ୍ଜନ ସହିତ ଆତ୍ମବିଶ୍ୱାସ ବଢ଼ାଏ । ଅନ୍ୟର ଜୀବନରେ ଆସୁଥିବା ସମସ୍ୟା ଗୁଡ଼ିକର ସମାଧାନ ନିମନ୍ତେ ମନୋବଳ ବଢ଼ାଏ । ପାଠକଟିଏ ନିଜର ମୁହଁ ଦେଖିପାରେ ସାର୍ଥକ ସୃଷ୍ଟି ଭିତରେ ବିଶେଷତଃ ଅକ୍ଷର ଶିଳ୍ପରେ ଅର୍ଥାତ୍ ସାହିତ୍ୟରେ । ଯଦି ଗୋଟିଏ ପାଠକ ନିଜକୁ ନଦେଖି ପାରିଲା ତେବେ ସେ ସୃଷ୍ଟି ନୁହେଁ ଯଥାର୍ଥ ସୃଷ୍ଟି, ସେ ସୃଜନଶୀଳତା ନୁହେଁ ଯଥାର୍ଥ ସୃଜନଶୀଳତା । ପ୍ରକାଶ ପାଇଁ ସୁବିଧା ସୁଯୋଗ ବଢ଼ିଛି ବୋଲି ସୃଷ୍ଟିର ସଂଖ୍ୟା ବଢ଼ିଛି ବିଶେଷତଃ ସାହିତ୍ୟ କ୍ଷେତ୍ରରେ ମାତ୍ର ଗୁଣାତ୍ମକତା ସେହି ସଂଖ୍ୟା ଅନୁପାତରେ ବଢ଼ି ନାହିଁ, ତାହାର କାରଣ କିଛି ଦେବାର ମାନସିକତା ତହିଁରେ ନାହିଁ, ଅଛି କିଛି ନେବାର ମନୋବୃତ୍ତି । ଯଶ, ଧନ, ମାନ, ମାନପତ୍ର ନେବାର ମନୋଭାବ । ଯେଉଁଠି ନେବାର କଥା ଅଛି ପୁଣି କଳେବଳେ କଉଶଳେ ଝାମ୍ପି ନେବାର ଚେଷ୍ଟା ରହିଛି, ସେଇଠି କଳା ଆଦୌ ଯଥାର୍ଥ କଳା ହୋଇପାରିବ ନାହିଁ । ମୋ ବିଚାରରେ ତାହା ପତ୍ରରେ ପାଣିଛିଞ୍ଚା ସାହିତ୍ୟ, ମୂଳରେ ପାଣିଢଳା ସାହିତ୍ୟ ନୁହେଁ ।

ସାହିତ୍ୟ ହେଉଛି ମନର ଫସଲ, ରୁଚିର ରୂପାୟନ, ଚିନ୍ତାର ବାଣୀତୀର୍ଥ, ଚେତନାର ଚିନ୍ମୟ ଗତିପଥ, ଲୋକଶିକ୍ଷା ପାଇଁ ଦିଗ୍‌ଦର୍ଶକ, ଆନନ୍ଦର ମଳୟ ବିଳାସ । ଜୀବନରେ ଯାହା ଅଛି ସାହିତ୍ୟରେ ତାହା ଅଛି । ଜୀବନ ନାହିଁ ତ ସାହିତ୍ୟ ନାହିଁ । ମାତ୍ର ସାହିତ୍ୟର ସ୍ଥିତି ଜୀବନଠାରୁ ଟିକିଏ ଅଧିକ ପ୍ରସାରିତ ଓ ପରିବ୍ୟାପ୍ତ । ଗୋଟିଏ ଉଦାହରଣରୁ କଥାଟିକୁ ବୁଝି ହେବ ଯେ ଜୀବନରେ କରୁଣ ରସ ସହିତ କାରୁଣ୍ୟ ରହିଛି ମାତ୍ର ସାହିତ୍ୟରେ କରୁଣରସ ସହିତ କାରୁଣ୍ୟ ନାହିଁ । ଅନ୍ୟ ଭାଷାରେ କୁହାଯାଇପାରିବ ଯେ ସାହିତ୍ୟରେ କାରୁଣ୍ୟ ନୁହେଁ, କରୁଣ ରସ ରହିଛି । ଗୋଟିଏ ବାକ୍ୟରେ କୁହାଯାଇପାରେ ଯେ, ଜୀବନ ହିଁ କେବଳ ସାହିତ୍ୟ ନୁହେଁ ଜୀବନର ଶ୍ୟାମଳ ସାରାଂଶ ହିଁ ସାହିତ୍ୟ, ଏଥିରେ ସନ୍ଦେହ ନାହିଁ ।

□□

# ଅନ୍ନ ଅନୁସାରେ ମନ

ଆହାର ବିନା ବଞ୍ଚିବା ଅସମ୍ଭବ । ହେଲେ ଆହାର କିଭଳି ରକମର ହେବ ତାହା ନିର୍ବାଚନ କରିବାର ଦାୟିତ୍ୱ ଆମର । ଆହାର ଶୁଦ୍ଧ ହେଲେ ରକ୍ତ ଶୁଦ୍ଧ ହୁଏ । ଶରୀର ସୁସ୍ଥ ରହେ । ଶରୀରର ସୁରକ୍ଷା ଓ ସମୃଦ୍ଧି ପାଇଁ ଅନ୍ନ ଏକାନ୍ତ ଆବଶ୍ୟକ । ସୁସ୍ଥ ଶରୀର ବିନା କୌଣସି ପ୍ରଗତି ଅସମ୍ଭବ । ଯେ କୌଣସି କର୍ମ ତାହା ଶାରୀରିକ ହେଉ ଅଥବା ମାନସିକ ସେଥିପାଇଁ ଆବଶ୍ୟକ ସୁସ୍ଥଶରୀର । ଅନ୍ନର ପ୍ରଭାବ ବା ଆହାରର ପ୍ରଭାବ କେବଳ ଶରୀର ଉପରେ ନୁହେଁ ମନ ଉପରେ ମଧ୍ୟ ରହିଛି । ତେଣୁ ତ କୁହାଯାଇଛି 'ଯେମିତି ଅନ୍ନ, ସେମିତି ମନ' ।

ଆହାର ଆମେ ଜୀବନ ଧାରଣ ପାଇଁ ଗ୍ରହଣ କରୁ । ଜିହ୍ୱା ଲାଳସା ମେଣ୍ଟାଇବା ପାଇଁ ନୁହେଁ । ପାଟିକୁ ଯାହା ସୁଆଦ, ପେଟକୁ ତାହା ବିପଦର କାରଣ ହୋଇପାରେ । ଏପରି ଖାଦ୍ୟ ସର୍ବଦା ବର୍ଜନୀୟ । ସେ ଫାଷ୍ଟଫୁଡ୍ ହେଉ ଅଥବା ଅତ୍ୟଧିକ ରାସାୟନିକ ରଙ୍ଗଯୁକ୍ତ ଖାଦ୍ୟ ହେଉ, ତାହା ଗ୍ରହଣୀୟ ନୁହେଁ । ପୁଣି ଯେଉଁ ଖାଦ୍ୟ ମାସ ମାସ ଧରି ପ୍ରସ୍ତୁତି ପରେ ପ୍ୟାକିଂ ହୋଇ ମିଳୁଛି ତାହା ଯେତେ ସୁସ୍ୱାଦୁ ହେଲେ ମଧ୍ୟ ଖାଦ୍ୟ ଉପଯୋଗୀ ନୁହେଁ । ସଜ ତଟକା ଖାଦ୍ୟ ଶରୀର ପକ୍ଷରେ ଅତ୍ୟନ୍ତ ଉପକାରୀ । ସୁଷମ ଖାଦ୍ୟ ସହ ଫଳମୂଳ, ଶାଗ, ସାଲାଡ଼ ପ୍ରଭୃତି ଶରୀର ପକ୍ଷେ ହିତକର । ପରିବାକୁ ଅତି ସିଝାଇଲେ ତାହାର ଗୁଣ ନଷ୍ଟ ହୋଇଯାଏ, ତଦ୍ଦ୍ୱାରା ବିଶେଷ କିଛି ଲାଭ ହୁଏ ନାହିଁ ଶରୀରର । ଅତଏବ ଖାଦ୍ୟ ଉପଯୋଗୀ ସଜ ତଟକା ପନିପରିବା ଯେପରି ଆବଶ୍ୟକ, ଖାଦ୍ୟର ପ୍ରସ୍ତୁତି ପ୍ରଣାଳୀ ମଧ୍ୟ ଜାଣିବା ସେପରି ଆବଶ୍ୟକ । କୁହାଯାଇପାରେ ଯେ ରାନ୍ଧି ଜାଣିଲେ

ଖାଦ୍ୟ ମଧୁର । ରନ୍ଧନ ଏକ କଳା, ସେ କଳା ସମସ୍ତଙ୍କ ପାଖରେ ସମାନ ଭାବରେ ନ ଥାଏ । ଜଣ ଜଣଙ୍କ ହାତରନ୍ଧା ଅଧିକ ସ୍ୱାଦିଷ୍ଟ ଓ ରୁଚିକର ହୋଇଥାଏ । ଏହି କଳାତ୍ମକତା ସହିତ ଆଉ କେତେଗୋଟି କଥା ମିଶି ଖାଦ୍ୟକୁ ମଧ୍ୟ ସ୍ୱାଦଯୁକ୍ତ କରିଥାନ୍ତି । ତାହା ହେଲା ଶ୍ରଦ୍ଧା, ଆଗ୍ରହ ଓ ଆନ୍ତରିକତା ସହ ରାନ୍ଧିବା । ବିରକ୍ତି ଏବଂ କ୍ରୋଧ ସହିତ ରାନ୍ଧିଲେ ସେ ଖାଦ୍ୟ ସ୍ୱାଦଯୁକ୍ତ ତ ହୁଏ ନାହିଁ ପୁଣି ହଜମ ମଧ୍ୟ ସହଜରେ ହୁଏ ନାହିଁ । ଶ୍ରୀମାଙ୍କ ମତରେ କ୍ରୋଧ ଓ ବିରକ୍ତି ସହ ରାନ୍ଧିଲେ ସେ ଖାଦ୍ୟ ପରିଣତ ହୁଏ ଅଖାଦ୍ୟରେ କାରଣ କ୍ରୋଧ ଓ ବିରକ୍ତିର ପ୍ରଭାବ ବହୁ ଭାବରେ ସେ ଖାଦ୍ୟ ସହ ମିଶିଯାଏ ।

ପୁଣି ଶରୀରର ଆବଶ୍ୟକତାଠାରୁ ଅଧିକ ପରିମାଣର ଖାଦ୍ୟ ଗ୍ରହଣ ଅନୁଚିତ । ଶରୀରର ଏକ ଜ୍ଞାନ ଅଛି, ସେ ଜାଣିପାରେ କେତେ ଖାଦ୍ୟ ତା' ପାଇଁ ଆବଶ୍ୟକ । ସେତିକି ଗ୍ରହଣ କଲାପରେ ସେ ଆଉ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରେ ନାହିଁ । ଯଦି ଲୋଭବଶତଃ ଅଧିକ ଗ୍ରହଣ କରାଯାଏ, ତେବେ ତାହା ବଦହଜମିର କାରଣ ହୁଏ । ଖାଦ୍ୟ ଗ୍ରହଣ ବେଳେ ଏକାଗ୍ରତା ଲୋଡ଼ା । ତରତର ହୋଇ ଖାଇଲେ ଅଥବା ବିଚଳିତ ହୋଇ ଖାଇଲେ, ସେ ଖାଦ୍ୟ ଭଲ ଭାବରେ ହଜମ ହୁଏ ନାହିଁ । ଏପରି କି ଟିଭି ଦେଖି ଖାଇବା ଅନୁଚିତ । ଏପରି ଖାଇଲେ ଭଲ ହଜମ ହୁଏ ନାହିଁ । ଖାଦ୍ୟ ଖାଇଲା ବେଳେ ଖାଇବା ପ୍ରତି ସଚେତନ ରହିଲେ ସେ ଖାଦ୍ୟ ଭଲ ହଜମ ହୁଏ ଏବଂ ଶରୀରର ଆବଶ୍ୟକତା ସେହି ଖାଦ୍ୟ ଦ୍ୱାରା ପୂରଣ ହୋଇଥାଏ ।

ବର୍ତ୍ତମାନ ଆମିଷ ଆହାର ଓ ନିରାମିଷ ଆହାର ସଂପର୍କରେ କିଛି କଥା ଜାଣିବା । ମଣିଷ ଉଭୟ ପ୍ରକାର ଖାଦ୍ୟରେ ଅଭ୍ୟସ୍ତ । ତେବେ ଶରୀର ଉପରେ ଅଧିକ ଭଲ ପ୍ରଭାବ ରହିଛି ନିରାମିଷ ଖାଦ୍ୟର । ଅନ୍ୟ ପ୍ରାଣୀର ମାଂସକୁ ଖାଦ୍ୟ ରୂପେ ଗ୍ରହଣ କଲେ ସେହି ପ୍ରାଣୀର କ୍ରୋଧ, ଭୟ, ହିଂସ୍ରତା ପ୍ରଭୃତି ନିମ୍ନ ଚେତନା ସେହି ମାଂସ ସହିତ ମିଶି ଆମ ଶରୀର ଭିତରକୁ ଯାଇଥାଏ ଏବଂ ଆମର ଅନେକ କ୍ଷତି ସାଧନ କରିଥାଏ । ପୁଣି ପଶୁପକ୍ଷୀର ମାଂସରେ ସେମାନଙ୍କ ଦେହରେ ଥିବା ରୋଗ ଜୀବାଣୁ ମିଶି ରହିଥାନ୍ତି । ଏହି ମାଂସାହାର ବାଟରେ ସେହି ଜୀବାଣୁସବୁ ମଣିଷର ଦେହକୁ ଆସନ୍ତି ଓ ବିଭିନ୍ନ ମାରାତ୍ମକ ରୋଗର କାରଣ ହୁଅନ୍ତି ।

ନିରାମିଷ ଆହାର କରୁଥିବା ଲୋକମାନେ ଅନ୍ତତଃ କେତେକ ରୋଗରୁ ମୁକ୍ତ ରହିପାରନ୍ତି । ପୃଥିବୀର ବହୁ ବଡ଼ବଡ଼ ବ୍ୟକ୍ତି ନିରାମିଷ ଆହାର କରିବାର ଦୃଷ୍ଟାନ୍ତ ରହିଛି । ସେମାନଙ୍କ ମଧ୍ୟରୁ ଅହିଂସାର ପୂଜାରୀ ମହାତ୍ମାଗାନ୍ଧୀ ଅନ୍ୟତମ । ତାଙ୍କ ମତରେ, ଗୋଟିଏ ରାଷ୍ଟ୍ରର ମହାନତା ସେଇ ରାଷ୍ଟ୍ରର ପଶୁମାନଙ୍କ ପ୍ରତି ହେଉଥିବା ବ୍ୟବହାରରୁ ଜଣାପଡ଼ିଥାଏ । ବିଶିଷ୍ଟ ବୈଜ୍ଞାନିକ ଆଇନଷ୍ଟାଇନ୍ ଥିଲେ ଶାକାହାରୀ । ସେ କହନ୍ତି, ଜୀବନରେ ଶାନ୍ତି ଓ

ସମୃଦ୍ଧି ପାଇଁ ମନୁଷ୍ୟ ଶାକାହାରୀ ହେବା ଉଚିତ । ଟଲଷ୍ଟୟ ଥିଲେ ନିରାମିଷ ଆହାରୀ । ଜୀବନକୁ ଶୁଦ୍ଧ ଓ ପବିତ୍ର ରଖିବା ନିମନ୍ତେ ନିରାମିଷ ଖାଦ୍ୟର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ସେ ଉପଲବ୍ଧି କରିଥିଲେ । ସେ କହିଥିଲେ, ''ପୃଥିବୀରେ ଯେ ପର୍ଯ୍ୟନ୍ତ କଂସେଇଖାନା ଥିବ, ସେ ପର୍ଯ୍ୟନ୍ତ ଯୁଦ୍ଧର ବିଭୀଷିକା ଥିବ ।'' ଆନିବେସାନ୍ତ ଥିଲେ ନିରାମିଷ ଆହାରୀ । ସେ ମଣିଷର ପ୍ରକୃତି ଉପରେ ମାଂସାହାରର ପ୍ରଭାବ ସଂପର୍କରେ ଉଲ୍ଲେଖ କରିଥିଲେ । ତାଙ୍କର ମତରେ, ''ମାଂସାହାର କରୁଥିବା ବ୍ୟକ୍ତି ନିଜର ପୀଡ଼ା ପାଇଁ ନିଜେ ହିଁ ଦାୟୀ, ଯାହା କି ମାଂସ ଭକ୍ଷଣ ଯୋଗୁଁ ଓ ସେଇ ପଶୁମାନଙ୍କ ବ୍ୟଥାରୁ ଉତ୍ପନ୍ନ ହୋଇଥାଏ ।''

ଏତଦ୍‌ବ୍ୟତୀତ ପୃଥିବୀର ବହୁ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ଶାକାହାରୀ । ସେମାନଙ୍କ ମଧ୍ୟରେ ଲିଓନାର୍ଡ଼ ଦା ଭିଞ୍ଚି, ଅବଦୁଲ କଲାମ, ଆଇଜାକ୍ ନିଉଟନ୍, ରବୀନ୍ଦ୍ରନାଥ ଠାକୁର, ପ୍ଲାଟୋ, ପିଥାଗୋରାସ, ଥମାସ୍ ଏଡ଼ିସନ ଅନ୍ତର୍ଭୁକ୍ତ ।

ଜୀବନରେ ସୁଖ ଶାନ୍ତି ଓ ଆନନ୍ଦ ପାଇବା ପାଇଁ ଖାଦ୍ୟରେ ସଂଯମ ଏକାନ୍ତ ଆବଶ୍ୟକ । ଖାଦ୍ୟକୁ ଭଗବାନଙ୍କୁ ସମର୍ପଣ କରି ଗ୍ରହଣ କଲେ ତହିଁରୁ ଦିବ୍ୟଶକ୍ତି ମିଳେ । ଶରୀରରେ ରୋଗ ପ୍ରତିରୋଧକ ଶକ୍ତିର ଅଭିବୃଦ୍ଧି ଘଟେ ଏବଂ ଆମ ଶରୀର ସୁସ୍ଥ ରହେ । ଶରୀର ସୁସ୍ଥ ରହିଲେ ପ୍ରାଣରେ ପ୍ରସନ୍ନତା ଓ ମନରେ ସାହସ ଆସେ ଅଗ୍ରଗତି କରିବା ପାଇଁ । ସୁସ୍ଥ ଶରୀର ଏବଂ ସୁସ୍ଥ ମନ ହେଉଛି ସାର୍ଥକ ଜୀବନର ଅସଲ ଚାବିକାଠି ।



# ଆଗକୁ ଚାଲିବା

ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ ଜୀବନକୁ ଅଧିକ ବହିର୍ମୁଖୀ କରାଇଛି । କେବଳ ଖାଇବାପିଇବା ବୁଲିବା ଚାଲିବା ଫୂର୍ତ୍ତି କରିବାରେ ପ୍ରମତ୍ତ କରାଇଛି । ଭିତରକୁ ନଗମି ଉପରେ ଉପରେ ଭାସିବାକୁ ଜୀବନ ବୋଲି ବୁଝାଇ ଦେଇଛି । ନିଜକୁ ବଡ଼ ଓ ଅନ୍ୟକୁ ସାନ ମନେ କରିବାକୁ ବତାଇ ଦେଇଛି, ଅହଂକାର ବଢ଼ାଇ ଦେଇଛି । ଏହି ଅହଂକାର କୁବୁଦ୍ଧି ବଢ଼ାଇ ଦେଇଛି, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଅପବ୍ୟବହାର ଶିଖାଇ ଦେଇଛି । ଏଠାରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ନିନ୍ଦା କରାଯାଉ ନାହିଁ, ତାହାର ଅପବ୍ୟବହାରର ନିନ୍ଦା କରାଯାଉଛି ।

ଅହଂକାର ବଢ଼ିବା ଫଳରେ ମନଟି ବେଳକୁ ବେଳ ଛୋଟ ହୋଇଯାଉଛି । ମନ ଛୋଟ ହୋଇଯିବାରୁ କଳହ ବଢୁଛି, ଏତେ ଟିକିଏ କଥା ବଢ଼ିବଢ଼ି କେତେ ବଡ଼ ହୋଇଯାଉଛି, କେତେ ଅକଥା ଘଟି ଯାଉଛି । ମନ ଛୋଟ ହୋଇଯିବାରୁ 'ଆଲୋ ସଖି ଆପଣା ମହତ ଆପେ ରଖି' କଥାଟି ମନରୁ ପାଶୋରି ହୋଇଯାଉଛି । ମୁଁ ବଡ଼, ମୁଁ ଯାହା କହୁଛି ତାହା ହିଁ ଠିକ୍, ଏଇ କଥାଟି ମନ ଭିତରେ ଟାଣ ହୋଇ ରହିଯାଉଛି । ବଡ଼ ସାନ ମାନ୍ୟତା ରହୁ ନାହିଁ । କାହାକୁ କେମିତି କଥା କହିବା ଜାଣିହେଉ ନାହିଁ । ଆମ ଦେଶରେ ମାତୃଜାତିକୁ 'ମାଆ' ବୋଲି ସମ୍ବୋଧନ କରାଯାଏ, ସମ୍ମାନ ଦିଆଯାଏ । ମାତୃଜାତିର ଅବମାନନା ଓ ଅସମ୍ମାନ ସର୍ବନାଶ କରିଦିଏ, ବୋଲି ଶାସ୍ତ୍ରମାନଙ୍କରେ କୁହାଯାଇଛି । ନାନା କୁପ୍ରଭାବ ଏବଂ ଅହଂକାରର ପ୍ରାବଲ୍ୟ ହେତୁ ଶାସ୍ତ୍ରବାଣୀ ବେଳକୁ ବେଳ ମୂଲ୍ୟହୀନ ହୋଇଯାଉଛି । ମନେ ହେଉଛି ଶାସ୍ତ୍ରବାଣୀ ଗୁଡ଼ିକ ବୟସ୍କ ଲୋକଙ୍କ ପାଇଁ ଏବଂ ଶାସ୍ତ୍ରଗୁଡ଼ିକ

ବୟସ୍କଲୋକଙ୍କ ପାଇଁ ଲେଖା ହୋଇଛି । ଏହା ଭୁଲ୍ କଥା, ଶାସ୍ତ୍ର ସମସ୍ତଙ୍କ ପାଇଁ ଲେଖା ହୋଇଛି, ଏହାର ଲକ୍ଷ୍ୟ ହେଉଛି 'ବହୁଜନ ହିତାୟ, ବହୁଜନ ସୁଖାୟ' ।

କିଏ ବୁଝାଇବ ଯେ ଗୁରୁଜନଙ୍କୁ ଅବମାନନା, ବିଶେଷତଃ ମାତୃଜାତିର ଅବମାନନା ବୀରତ୍ୱର କାର୍ଯ୍ୟ ନୁହେଁ । ପିତାମାତାଙ୍କୁ ଅବମାନନା ଆମ ସଂସ୍କୃତିରେ ଏକ ଦୋଷାବହ କାର୍ଯ୍ୟ । ଆମ ସଂସ୍କୃତି କହେ ଆକାଶରୁ ପିତା ବଡ଼, ମାତା ବଡ଼ ପୃଥିବୀ ଅପେକ୍ଷା । ମାତୃଭୂମି ସ୍ୱର୍ଗଠାରୁ ବଡ଼ ବୋଲି ଆମ ପରମ୍ପରା କହେ । ମାତୃଭୂମି ଆମକୁ ଭାରତୀୟ ବୋଲି ପରିଚୟ କରାଇଛି, ସେ ମଧ୍ୟ ଆମର ମାଆ । ମାତୃଭୂମିର ଶସ୍ୟ ଓ ଫସଲରେ ଆମ ଶରୀର ପରିପୁଷ୍ଟ ଏବଂ ମାତୃଭୂମିର ଜଳଧାରାରେ ଆମ ଶରୀରରେ ରକ୍ତ ପ୍ରବାହିତ । ମାତୃଭୂମିର ଅବମାନନା ଏକ ଅକ୍ଷମଣୀୟ ଅପରାଧ । ଏଇ ମାତୃଭୂମିକୁ ବିଦେଶୀ କବଳରୁ ମୁକ୍ତ କରିବା ପାଇଁ କେତେ ଗୁରୁଜନ ଆତ୍ମବଳି ଦେଲେ, ହସିହସି ଫାଶୀଖୁଣ୍ଟରେ ଚଢ଼ିଲେ, କେତେ ଅତ୍ୟାଚାର ସହିଲେ, କଳାପାଣିଗଲେ, ହାତଗୋଡ଼ ବନ୍ଧା ହୋଇ ଚାବୁକ ମାଡ଼ ଖାଇଲେ ତଥାପି କହୁଥିଲେ 'ଭାରତ ମାତାକୀ ଜୟ' । ଆମେ କ'ଣ ସେମାନଙ୍କ ଅବଦାନ ଓ ଆତ୍ମଦାନକୁ ଏତେ ଶୀଘ୍ର ଭୁଲିଯିବା ? ଆମ ମାଟି ସ୍ୱର୍ଣ୍ଣପ୍ରସୂ, ବୀରପ୍ରସୂ । କ'ଣ ନାହିଁ ଏଠାରେ ? ଜୀବନପାଠ ହିଁ ଏ ମାଟିର ପାଠ । ଜୀବନ ପାଠ କହିଲେ କେବଳ ବୈରାଗ୍ୟକୁ ବୁଝିବା ନାହିଁ, ଧର୍ମ ଅର୍ଥ କାମ ମୋକ୍ଷକୁ ବୁଝିବା, ଜୀବନର ପ୍ରତି ଦିଗ ପାଇଁ ଶାସ୍ତ୍ର ଏଠାରେ ହିଁ ରଚିତ ହୋଇଛି । ବିଶ୍ୱକଲ୍ୟାଣବାର୍ତ୍ତା କାହିଁ କେତେ ଦିନରୁ ଏଠାରେ ନିନାଦିତ ହୋଇଛି । ମାକ୍ସମୁଲ୍ଲର ଯାହାକୁ ପୃଥିବୀରେ ନନ୍ଦନକାନନର ଆଖ୍ୟା ଦେଇଛନ୍ତି – ଏପରା ସେହି ଦେଶ । ଏ ଦେଶର ଉଭା ଯେତିକି ପୋତା ତା'ଠାରୁ ବେଶୀ । ବଞ୍ଚିବାର କଳା-କଥାଟିର ଚେର ଏ ମାଟିରେ ଏତେ ଗଭୀରତାରେ ଅଛି, ତାକୁ କଳ୍ପନା କରାଯାଇ ପାରିବ ନାହିଁ । ଏ ରାମଚନ୍ଦ୍ରଙ୍କର ଦେଶ, ଏ ଶିବିରାଜାଙ୍କର ଦେଶ, ଏ ବୁଦ୍ଧଦେବଙ୍କର ଦେଶ, ଏ ଶିବାଜୀଙ୍କର ଦେଶ, ଏ ଝାନ୍ସୀରାଣୀଙ୍କର ଦେଶ, ଏ ସ୍ୱାମୀବିବେକାନନ୍ଦଙ୍କର ଦେଶ, ଏ ଶ୍ରୀଅରବିନ୍ଦଙ୍କର ଦେଶ, ଏ ରବୀନ୍ଦ୍ରନାଥଙ୍କର ଦେଶ, ଏ ଅବଦୁଲ କଲାମଙ୍କର ଦେଶ । ଆହା ଏ ଦେଶର ପଟାନ୍ତର ନାହିଁ । କେତେ କବି, କେତେ ଗାଣିତିକ, କେତେ ଦାର୍ଶନିକ ପୁଣି କେତେ ବୈଜ୍ଞାନିକଙ୍କର ଏ ଦେଶ – ଭାବିଲେ ଭାବି ହେବ ନାହିଁ, କାରଣ ଆମ ଭାବନାରୁ ଏ ଦେଶର ମହିମା ବଳେଇ ଯିବ । ବସନ୍ତର ଫୁଲବାସ ଏବଂ ଗ୍ରୀଷ୍ମର ଫଳରସ କାଳିଦାସଙ୍କ ସୃଷ୍ଟି ସମ୍ଭାରରୁ ପାଇ ଜର୍ମାନ ମନୀଷୀ ଗେଟେ ନିଜକୁ ଧନ୍ୟ ମନେ କରିଥିଲେ । ଆମ ଦେଶର ମହତ୍ତ୍ୱକୁ ଜାଣିବା ପାଇଁ ଭକ୍ତକବି ମଧୁସୂଦନ ରାଓଙ୍କ 'ତୁହି ମା' ଜନମଭୂମି' କବିତାଟିକୁ ଆଉଥରେ ପଢ଼ିବା ନାହିଁ କି ?

ମାତୃଭାଷା ମଧ୍ୟ ଆମର ମାଆପରି । ମାତୃଭାଷା ଆମକୁ ଭାବିବାର ଶକ୍ତି ଓ ପ୍ରକାଶ ସାମର୍ଥ୍ୟ ଦେଇଛି । ଏ ପୃଥିବୀରେ ଯେତେ ବ୍ୟକ୍ତି ଅଛନ୍ତି, ପ୍ରତ୍ୟେକ ବ୍ୟକ୍ତି ଭାବିଲାବେଳକୁ ନିଜ ମାତୃଭାଷାରେ ହିଁ ଭାବନ୍ତି ଏବଂ ପ୍ରକାଶ ପାଇଁ ଆବଶ୍ୟକତା ଅନୁସାରେ ଅନ୍ୟଭାଷା ବ୍ୟବହାର କରିପାରନ୍ତି । ଯାହାର ମାତୃଭାଷା ଶିକ୍ଷାରେ ଆଗ୍ରହ ଅଧିକ ତାହାର ଭାବନାଶକ୍ତି ମଧ୍ୟ ଅଧିକ, ଏଥିରେ ସନ୍ଦେହ ନାହିଁ । ଭାବନାଶକ୍ତି ଦୁର୍ବଳ ହେଲେ ଅନ୍ତରର ଭାବ ମଧ୍ୟ ଦୁର୍ବଳ ହୋଇଯିବ । ଆମେ ଜାଣିବା ଯେ ଭାବନା ଓ ଭାବ ପରସ୍ପରର ପରିପୂରକ । ଯାହାର ଭାବନା ଗଭୀର ତା'ର ଭାବ ମଧ୍ୟ ଗଭୀର-ଏଥିରେ ସନ୍ଦେହ ନାହିଁ । ଅତଏବ ମାତୃଭାଷା ଆମର କେତେ ଆପଣାର, ଆମ ପାଇଁ ମାଆର ମମତା ପରି ଅତି ମୂଲ୍ୟବାନ । ଏକଥା ବୁଝିଥିବାରୁ ଭକ୍ତକବି ମଧୁସୂଦନ ରାଓ କହିଥିଲେ ''ମାତୃଭୂମି ମାତୃଭାଷା ଉଭୟେ ଜନନୀ'' ।

ଏକଥା କହି ମୁଁ ଅନ୍ୟ ଭାଷାର ଅବମାନନା କରୁନାହିଁ । ମାତୃଭାଷା ସହିତ ଅନ୍ୟଭାଷା ମଧ୍ୟ ଶିକ୍ଷଣୀୟ କାରଣ ଜଗତୀକରଣ ଯୁଗରେ କେବଳ ମାତୃଭାଷା ଯଥେଷ୍ଟ ନୁହେଁ । ବିଶେଷତଃ ଆମ ଦେଶର ଲୋକମାନଙ୍କ ପାଇଁ ଏକାଧିକ ଭାଷା ଜାଣିବା ଏକାନ୍ତ ଜରୁରୀ । ଶ୍ରୀଅରବିନ୍ଦଙ୍କ ମତରେ ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଅତି କମ୍‌ରେ ତିନିଗୋଟି ଭାଷା ଜାଣିବା ଦରକାର । ତାହା ହେଉଛି ନିଜ ନିଜର ମାତୃଭାଷା, ଆମର ରାଷ୍ଟ୍ର ଭାଷା ଓ ବିଦେଶୀ ଭାଷା ଭାବରେ ଇଂରାଜୀ । ତେବେ ମାତୃଭାଷାରସ୍ଥିତି ସୁଦୃଢ଼ ହେବା ଉଚିତବୋଲି ସେ ମତବ୍ୟକ୍ତ କରିଥିଲେ । ତେବେ ଏସବୁ କେବଳ କଥାର କଥା ନୁହେଁ, ପ୍ରବନ୍ଧର ପରିଭାଷା ନୁହେଁ, ଏହା ସ୍ୱପ୍ନ ନୁହେଁ, ଏହାକୁ ବାସ୍ତବତାରେ ପରିଣତ କରିବାର କଥା । ଆଉ ପରିଣତ କରିବାର ଦାୟିତ୍ୱ ଗୁରୁ ଗୁରୁଜନଙ୍କର ବିଶେଷତଃ ପିତାମାତାଙ୍କର । ନଦୀ ଓ ସମୟ କେତେବେଳେ ପଛକୁ ଫେରନ୍ତି ନାହିଁ କି ଫେରିବେ ନାହିଁ । ଯାହା ଗଲାଣି, ତାହା ଗଲାଣି । ଏଣିକି ସଚେତନ ହେବାର ବେଳ ଆସିଛି । ବର୍ତ୍ତମାନ ହିଁ ଜୀବନରେ ସବୁଠାରୁ ମୂଲ୍ୟବାନ, ତାହାଠାରୁ ମୂଲ୍ୟବାନ କଥା ବୋଧହୁଏ ପୃଥିବୀରେ ଆଉ କିଛି ନାହିଁ । ପିଲାମାନଙ୍କୁ ପିଲାଦିନରୁ ଦେଶପ୍ରେମ, ସଂସ୍କୃତିପ୍ରେମ ଶିଖାଇବାର ସମୟ ଆସିଛି । ମାର୍ଜିତ ରୁଚି, ଯଥାଯୋଗ୍ୟ ବ୍ୟବହାର, ସଂଯତଭାଷା, ଉତ୍ତମଭାବନା, ସମୟାନୁବର୍ତ୍ତିତା, ସମୟର ସଦ୍‌ବ୍ୟବହାର ସର୍ବୋପରି ଆତ୍ମସଚେତନତା ପ୍ରଭୃତି ବହୁ କଥା ଶିଖାଇବାର ଦାୟିତ୍ୱ ପିତାମାତାଙ୍କର । ସମୟ ନାହିଁ ବୋଲି କହି କଥାଟିକୁ ଏଡ଼ାଇଗଲେ ଚଳିବ ନାହିଁ । ସମୟ କାଢ଼ିବାକୁ ପଡ଼ିବ, ସମୟ ଦେବାକୁ ପଡ଼ିବ । ଧୈର୍ଯ୍ୟରସହ ବହୁକଥା ବୁଝାଇବାକୁ ପଡ଼ିବ, ବତାଇବାକୁ ପଡ଼ିବ । ଚିଡ଼ିଚିଡ଼ି ହେଲେ ଚଳିବ ନାହିଁ କି ଗାଳି ଦେଲେ ଚଳିବ ନାହିଁ, ସେମାନଙ୍କ ସ୍ତରକୁ ଆସି ସେମାନେ

ବୁଝିଲା ଭଳି ଭାଷାରେ ସେମାନଙ୍କ ପ୍ରଶ୍ନର ଉତ୍ତର ଦେବାକୁ ହେବ । ଏଥିପାଇଁ ନିଜକୁ ପ୍ରସ୍ତୁତ କରିବାକୁ ହେବ, ଆବଶ୍ୟକ ହେଲେ ପଢ଼ିବାକୁ ହେବ । ଏ ତ ପଢ଼ାଇବା ପରି ଏକ କଥା, ନ ପଢ଼ିଲେ ହେବ କିପରି ? ନିଜକୁ ବୁଝିବାକୁ ପଡ଼ିବ ଏ ଜୀବନକୁ ଓ ଜଗତକୁ, ନ ବୁଝିଲେ ବୁଝାଇ ହେବ କିପରି ? ଆମେ ସମୟ ଦେବା ନାହିଁ, କଷ୍ଟ କରିବା ନାହିଁ, ଆଉ ପିଲାଠାରୁ ବହୁ ଭଲକଥା ଆଶା କରିବା ବୋଧହୁଏ ଠିକ୍ ହେବ ନାହିଁ । ସ୍ମରଣକୁ ଆସେ ଶ୍ରୀମାଙ୍କର କଥାରୁ ପଦେ ଅଧେ । ସେ କହନ୍ତି –‘‘ପିଲାମାନଙ୍କୁ ବଢ଼ାଇକୁଢ଼ାଇ ବଡ଼ କରିବା ସବୁଠାରୁ ଅଧିକ କଷ୍ଟକର କାମ । ଏହି କର୍ତ୍ତବ୍ୟଟିକୁ ଯଥାର୍ଥ ଭାବରେ ସଂପାଦନ କରିପାରୁଥିବା ବାପାମାଆ ମୁଁ ଖୁବ୍ କମ୍ ଦେଖିଛି ।’’

କୁହାଯାଏ ଫରାସୀଜାତିର ଓ ଜାପାନୀଜାତିର ମହତ୍ତ୍ୱ ପଶ୍ଚାତରେ ମାତୃଜାତିର ଅବଦାନ ଅଧିକ । ଏକଥା ସମଗ୍ର ବିଶ୍ୱପାଇଁ ସତ୍ୟ ହୋଇପାରେ, ହୋଇପାରିବ କାରଣ ଏହା ଏକ ଚିରନ୍ତନ ସତ୍ୟ । ମହାତ୍ମାଗାନ୍ଧି ଏଇକଥା ବହୁବାର କହିଛନ୍ତି ଯେ ମାଆଟିଏ ଯଥାର୍ଥରେ ଶିକ୍ଷିତ ହେଲେ ପରିବାରଟିଏ ଶିକ୍ଷିତ ହୋଇଯିବ । ଆଜିକାଲି ଜଗତୀକରଣର ଯୁଗ, ଏତେବେଳେ ବିଶ୍ୱଠାରୁ ଅଲଗା ହୋଇ ରହିଲେ ଚଳିବ ନାହିଁ, ରହି ହେବ ନାହିଁ । ବିଶ୍ୱପ୍ରେମ ଓ ବିଶ୍ୱଚିନ୍ତନ ମଧ୍ୟ ଏକାନ୍ତ ଆବଶ୍ୟକ । ଦେଶ ପ୍ରେମ ହିଁ ବିଶ୍ୱପ୍ରେମର ମୂଳଦୁଆ ଏବଂ ଦେଶପାଇଁ ଚିନ୍ତନ ହିଁ ବିଶ୍ୱଚିନ୍ତନର ଚାବିକାଠି । ଉତ୍କଳମଣି ଗୋପବନ୍ଧୁଙ୍କ ମତରେ ନିକଟରୁ ଦୂରକୁ ପ୍ରସାରିତ ହୋଇଯିବା ଯଥାର୍ଥରେ ବିଶ୍ୱପ୍ରେମ, ନିକଟକୁ ଛାଡ଼ି ନୁହେଁ । ଅନ୍ୟପ୍ରକାର କୁହାଯାଇପାରେ ଯେ, ଯାହାର ପ୍ରକୃତ ଅର୍ଥରେ ଦେଶପ୍ରେମ ଅଛି ତା’ର ଯଥାର୍ଥରେ ବିଶ୍ୱପ୍ରେମ ରହିଛି କାରଣ ଦେଶପ୍ରେମ ଓ ବିଶ୍ୱପ୍ରେମ ପରସ୍ପରର ପରିପୂରକ ।

ପାଶ୍ଚାତ୍ୟକୁ ଅବମାନନା କରିବା ନାହିଁ, ସେଠାରୁ ଭଲଭଲ କଥା ଗ୍ରହଣ କରିବା । ଅନ୍ୟ ଦେଶରୁ ମଧ୍ୟ ଭଲଭଲ କଥା ଗ୍ରହଣ କରିବା । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାକୁ ଆଦରରେ ଗ୍ରହଣ କରିବା ଏବଂ ତତ୍‌ଭିତ୍ତିକ ନୂତନବସ୍ତୁକୁ ବ୍ୟବହାର କରିବା, ମାତ୍ର ତାହାର ଦାସ ହୋଇଯିବା ନାହିଁ । ଆମ ସଂସ୍କୃତି ଓ ପରମ୍ପରାର ସାର ଅଂଶ (ଖଦଡ଼ା ନୁହେଁ) ସହ ତାକୁ ମିଶାଇ ଆଗକୁ ଚାଲିବା । ଆମେ ଦେଶରେ ଥାଉ ଅବା ବିଦେଶରେ ଥାଉ, ମନରେ ଏହିପରି ମିଶାଇ ଆଗକୁ ଚାଲିବା । ଏହା ଆମପାଇଁ ବର୍ତ୍ତମାନ ସମୟର ଆହ୍ୱାନ କହିଲେ ଭୁଲ୍ ହେବ ନାହିଁ ।



# ପାଠ, ପରୀକ୍ଷା ଓ ସାମାଜିକ ଜୀବନ

ପରୀକ୍ଷା ଋତୁ ଆସିଲେ ହୁଏ । ଗୋଟିଏ ପରେ ଗୋଟିଏ ପରୀକ୍ଷା ଅନୁଷ୍ଠିତ ହେବ । ପଢ଼ାଯାଇଥିବା ପାଠ ସମ୍ପର୍କିତ ଜ୍ଞାନର ପରିମାପ ହୁଏ ପରୀକ୍ଷାରେ । ପାଠ ଓ ପରୀକ୍ଷା, ଗୋଟିଏ ମୁଦ୍ରାର ଦୁଇ ପାଖ ପରି । ପାଠ ଅଛି ତ ପରୀକ୍ଷା ଅଛି । ପରୀକ୍ଷା ପାଇଁ ଡରିବା କାହିଁକି ? ପରୀକ୍ଷା ନାମ ଶୁଣିଲେ କେତେ ପିଲାଙ୍କ ମନରେ ଡର ପଶେ । ସେମାନେ ବିଚଳିତ ହୋଇ ପଡ଼ନ୍ତି, କିନ୍ତୁ କାହିଁକି ? ପରୀକ୍ଷା ତ ଏକ ମାଧ୍ୟମ । ଅତିକ୍ରମ କରିଗଲେ ଅଗ୍ରଗତି କରିବାକୁ ହୁଏ । ପରୀକ୍ଷାକୁ ସ୍ୱାଗତ କରିଗଲେ ଅଗ୍ରଗତି କରିବାକୁ ହୁଏ । ପରୀକ୍ଷା ଏକ ସ୍ୱାଗତ ତୋରଣ ଯାହାକୁ ପାରିହେଲେ ଆଉ ଆଗକୁ ଯାଇ ହୁଏ, ଆଉ ଭିତରକୁ ଯାଇ ହୁଏ । ପରୀକ୍ଷା ନଥିଲେ ହୁଏତ ଗତି ରହନ୍ତା, ମାତ୍ର ଅଗ୍ରଗତି ହୁଅନ୍ତା କି ନାହିଁ ସନ୍ଦେହ । ପରୀକ୍ଷା ଏକ ମାନଦଣ୍ଡ, ଆମର ବୁଝିଲାପଣର ମଞ୍ଜକୁ ନିରୂପଣ କରିବା ପାଇଁ । ପରୀକ୍ଷା ଏକ ମାଧ୍ୟମ ଗୋଟିଏ ପାଠର ରାଜ୍ୟରୁ ଆଉ ଗୋଟିଏ ରାଜ୍ୟକୁ ଯିବା ପାଇଁ । ତେଣୁ ତ ଏ ଦିଗରୁ ବିଚାର କଲେ ପରୀକ୍ଷା ଆମର ଆବଶ୍ୟକ, ପରୀକ୍ଷା ଆମର ବନ୍ଧୁ । ସେ ବନ୍ଧୁହୋଇ ଆମକୁ ଆଗକୁ ହାତଧରି ନେଇଯିବାକୁ ପ୍ରସ୍ତୁତ । ଆମେ ବନ୍ଧୁତାର ହାତ ବଢ଼ାଇବା, ଆଦୌ ପରୀକ୍ଷାକୁ ଶତ୍ରୁ ବୋଲି ଭାବିବା ନାହିଁ ।

ଆଜିକାଲି ପରୀକ୍ଷା ବ୍ୟବସ୍ଥା ବଦଳିଗଲାଣି, ପାଠ୍ୟଖସଡ଼ା ମଧ୍ୟ ବଦଳିଲାଣି । ଯୁଗ ସହିତ ତାଳମେଳ ରଖି ଆଜିର ଛାତ୍ରଛାତ୍ରୀ ପାଠପଢୁଛନ୍ତି ଓ ପଢ଼ିବା ଉଚିତ । ପରୀକ୍ଷା ହଲରେ ବସିବାବେଳେ ହତୋତ୍ସାହିତ ନହୋଇ ଆତ୍ମବିଶ୍ୱାସର ସହିତ ଦୃଢ଼ଭାବରେ ବସିବା ଆବଶ୍ୟକ । ଯିଏ ଯେତେ ଆତ୍ମବିଶ୍ୱାସ ରଖିପାରିଲା ସେ ସେତେ ଭଲ ଭାବରେ ପ୍ରଶ୍ନଗୁଡ଼ିକର

ଉତ୍ତର ଦେଇପାରିବ । ପ୍ରଶ୍ନର ଯଥାର୍ଥ ଉତ୍ତର ପ୍ରଦାନ ନିମନ୍ତେ ପାଠକୁ ପଢ଼ିବା ସହିତ ବୁଝିବା ଆବଶ୍ୟକ । ପାଠ ଘୋଷିଲେ ହୁଏନାହିଁ, ପ୍ରକୃତରେ ବୁଝିଲେ ହୁଏ । ମନେପଡ଼େ ସ୍ୱାମୀ ବିବେକାନନ୍ଦଙ୍କ କଥା । ସେ କହିଥିଲେ, 'ଶୁଆପରି ଘୋଷାପାଠ ପ୍ରକୃତ ପାଠ ନୁହେଁ, ଭଲ ଭାବରେ ବୁଝିଥିବା ପାଠହିଁ ପ୍ରକୃତ ପାଠ ।'

ପାଠପଢ଼ାରୁ ଆନନ୍ଦ ମିଳେ । ସେ ଆନନ୍ଦର ଅନୁଭବ ସ୍ୱତନ୍ତ୍ର । ସମସ୍ତେ ସେଇ ଆନନ୍ଦ ପାଇପାରନ୍ତି ନାହିଁ । କାରଣ ସମସ୍ତଙ୍କର ପାଠପ୍ରତି ଆଗ୍ରହ ନଥାଏ । ଆଗ୍ରହ ନଥିଲେ ପାଠ ଭଲଲାଗେ ନାହିଁ । ବିରକ୍ତିର ସହିତ ପଢ଼ିଲେ ବୁଝିହୁଏ ନାହିଁ, ମନେ ରହେ ନାହିଁ । ଘୋଷିବାକୁ ପଡ଼େ । ଏହାଛଡ଼ା ଯେଉଁ ବୟସର ପିଲାଙ୍କ ପାଇଁ ଯେଉଁପାଠ ପଢ଼ିବାକୁ ରହିଛି, ତାହା ଏତେ କିଛି କଷ୍ଟକର ଆଦୌ ହେବନାହିଁ ଯଦି ତହିଁରେ ଆଗ୍ରହ ଥାଏ ।

କେବଳ ଡିଗ୍ରୀ ପାଇଁ ପାଠପଢ଼ା ନୁହେଁ, ଚରିତ୍ର ନିର୍ମାଣ ଏଥିସହିତ ଲୋଡ଼ା । କଥାରେ ସଂଯମ, ଚିନ୍ତାରେ ସଂଯମ, ବ୍ୟବହାରରେ ସଂଯମ ଆଣିଥାଏ ପାଠ । ନହେଲେ ସେ ପାଠ, ଶୁଆର ପାଠ, ଘୋଷାପାଠ, ସେଥିରେ ଜୀବନ ନଥାଏ, ଓଜନିଆ ପଣ ନଥାଏ, ଚରିତ୍ର ନିର୍ମାଣ ହେଉଛି ପାଠର ଅନ୍ୟତମ ଲକ୍ଷ୍ୟ । ସ୍ଥାନ, କାଳ, ପାତ୍ର ଦେଖି କଥା କହିବା, ବ୍ୟବହାର କରିବା ପାଠୁଆ ପିଲାର ଲକ୍ଷଣ । ଡିଗ୍ରୀ ଅଛି, ମାତ୍ର ତୁଣ୍ଡରେ ଅଶ୍ଳୀଳ ଶବ୍ଦ, ମନରେ ଅମାର୍ଜିତ ଚିନ୍ତା ଓ ଚଳଣିରେ ଅଭଦ୍ର ବ୍ୟବହାର ଥିଲେ ତାହାକୁ ପାଠୁଆ ବ୍ୟକ୍ତିର ଲକ୍ଷଣ ବୋଲି କୁହାଯିବ ନାହିଁ । କାହାକୁ କେମିତି କଥା କହିବା, କେଉଁ ପରିସ୍ଥିତିରେ କିପରି ଚଳିବାର ଯେଉଁ କଳାକୌଶଳ ରହିଛି ତାହା ଯଦି ପାଠଦ୍ୱାରା ଶିଖି ନହେଲା, ତେବେ ସେ ପାଠ ବୃଥା, ସେ ପଢା ବୃଥା, ସେ ଡିଗ୍ରୀ ମଧ୍ୟ ବୃଥା । ମନରେ ଯଦି ନାହିଁ ଉଦାରତା, ପ୍ରଶସ୍ତ ଭାବନା, ତେବେ ସେ ପାଠପଢ଼ା ବୃଥା ।

କେବଳ ଚାକିରି କରିବା ପାଠପଢ଼ାର ଲକ୍ଷ୍ୟ ନୁହେଁ । ଚାକିରିର ସୁବିଧା ନଥିଲେ ମଧ୍ୟ ଜଣେ ଅନ୍ୟ ଯେ କୌଣସି କ୍ରିୟାକର୍ମରେ ଆତ୍ମନିଯୁକ୍ତ ହୋଇପାରେ । କେତେବେଳେ ଭାବିବା ଉଚିତ ନୁହେଁ ଯେ ଚାକିରି ବଡ଼କଥା, ଆଉ ଯେତେ କଥା, ଅର୍ଥାତ ବେପାର ବାଣିଜ୍ୟ, ଆତ୍ମନିର୍ଭରଶୀଳ କାର୍ଯ୍ୟରେ ଯୋଗଦାନ, ସବୁକିଛି ଛୋଟକଥା-ଏପରି ଆଦୌ ନୁହେଁ । ଚାକିରିର ମହତ୍ତ୍ୱ ଯେପରି ରହିଛି ଅନ୍ୟ ଅନେକ ବୃତ୍ତିର ମଧ୍ୟ ସେପରି ଗୁରୁତ୍ୱ ରହିଛି । ଏପରି ଅନେକ ଆତ୍ମନିଯୁକ୍ତି ରହିଛି ଯହିଁରେ ସମାଜର ଅଶେଷ କଲ୍ୟାଣ ସାଧିତ ହୋଇପାରେ । କହିବାର ଅର୍ଥ ପାଠପଢ଼ା ସମୟରେ ଯଥାଯଥ ଭାବରେ ପାଠପଢ଼ି ଯଥାଯୋଗ୍ୟ ଡିଗ୍ରୀ ହାସଲ କରି ଚାକିରି ନମିଳିଲେ ଦୁଃଖ ନକରି ନିଜକୁ ଯେକୌଣସି କଲ୍ୟାଣକର କାର୍ଯ୍ୟରେ ନିୟୋଜିତ କରିବା ବିଧେୟ ।

ଆଜିକାଲି ସାଧାରଣତଃ ଜୀବନର ଲକ୍ଷ୍ୟ ହେଉଛି ଭଲଖାଇବା, ଭଲ ପିନ୍ଧିବା, ଭଲରେ ରହିବା । ଏହା ଆଦୌ ଭୁଲ କଥା ନୁହେଁ । ମାତ୍ର ଏତିକିରେ ଜୀବନର ଲକ୍ଷ୍ୟପୂର୍ଣ୍ଣ ହୁଏ ନାହିଁ, ଆହୁରି କିଛି କଥା ଅଛି ଯାହା ମିଶିଲେ ଜୀବନପୂର୍ଣ୍ଣ ହୁଏ, ଜୀବନ ଧନ୍ୟ ହୁଏ । ସେଇକଥା ଏଇ ପାଠପଢ଼ା ସମୟରୁ ବୁଝିବାକୁ ପଡେ । କଥାଟି ହେଉଛି ଯେ ଆମର ପାଠପଢ଼ା, ଡ଼ିଗ୍ରୀହାସଲ, ଚାକିରି ବା ଆତ୍ମନିଯୁକ୍ତି, ଆମର ସ୍ୱାସ୍ଥ୍ୟ, ଆମର ମନୋରଞ୍ଜନ ନିମନ୍ତେ ପରିବାରର ତ ଅବଦାନ ନିଶ୍ଚିତ ରୂପେ ରହିଛି, ଏଥିସହିତ ସମାଜର ମଧ୍ୟ ଅବଦାନ ରହିଛି । ଆମ ଖାଇବା, ପିନ୍ଧିବା, ଆମ ରହିବା ଦିଗରେ ଅନ୍ୟମାନଙ୍କର, ଅର୍ଥାତ ସମାଜର ଋଣ ସ୍ୱୀକାର ଅବଶ୍ୟ କରଣୀୟ । କେବଳ ସ୍ୱୀକାର କଲେ ତାହା ଯଥେଷ୍ଟ ନୁହେଁ, ଋଣ ପରିଶୋଧ କରିବାକୁ ଇଚ୍ଛା କରିବା ଆବଶ୍ୟକ । କିଏ ଡାକ୍ତର ହେଉ ଅଥବା ଇଞ୍ଜିନିୟର ହେଉ, କିଏ ପ୍ରଶାସନିକ ଅଧିକାରୀ ହେଉ ଅଥବା ବୈଜ୍ଞାନିକ ହେଉ, ତା'ର ସମାଜର ବିକାଶ ନିମନ୍ତେ ଅନୁକୂଳ ମନୋବୃତ୍ତି ରହିବା ଉଚିତ । ମନୋବୃତ୍ତି ରହିଲେ ଛାତ୍ରଜୀବନ ପରେ କର୍ମମୟ ଜୀବନ ଆରମ୍ଭ ହେଲାବେଳେ ତାହା କାର୍ଯ୍ୟରେ ପରିଣତ ହେବ । ଫଳରେ ସମାଜହେବ ଆହୁରି ଅଧିକ ସମୁନ୍ନତ ଏବଂ ସାମାଜିକ ଜୀବନ ହେବ ଅଧିକ ସମୃଦ୍ଧ ଓ ଋଦ୍ଧିମନ୍ତ ।

❑❑

# ବନବିଦ୍ୟାଳୟରୁ ବିଶ୍ୱବିଦ୍ୟାଳୟ

ସତ୍ୟବାଦୀର ବକୁଳ ଛୁରୀଅନା କୁଞ୍ଜରେ ୧୯୦୯ ମସିହାରେ ବନ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠା ହୋଇଥିଲା । ଏହାର ଅନ୍ୟନାମ ଥିଲା ମଣିଷ ଗଢ଼ା କାରଖାନା । ଏହାକୁ ଓଡ଼ିଶାର ନାଳନ୍ଦା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍କଳମଣି ଗୋପବନ୍ଧୁ ଅନୁଭବ କରିଥିଲେ ଯେ କେବଳ ସଭାସମିତି ଦ୍ୱାରା ଦେଶର ପ୍ରଗତି ତଥା ଜାତିର ଉନ୍ନତି ସମ୍ଭବ ହୋଇନପାରେ । ଉପଯୁକ୍ତ ମନୁଷ୍ୟ ଗଠନ ହିଁ ଦେଶର ଉନ୍ନତି ତଥା ସମାଜର ଉନ୍ନତିର ମୂଳଦୁଆ । ଏଥି ନିମନ୍ତେ ଶିକ୍ଷାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ଅନୁଚିନ୍ତା ନେଇ ପଣ୍ଡିତ ଗୋପବନ୍ଧୁ ଦାସ ଆରମ୍ଭ କରିଥିଲେ ବନ ବିଦ୍ୟାଳୟ । ସ୍ଥାନଟି ଭକ୍ତକବି ମଧୁସୂଦନ ରାଓଙ୍କ ଦ୍ୱାରା ନିର୍ବାଚିତ ହୋଇଥିଲା ।

ଆରମ୍ଭରେ ଶ୍ରୀରାମଚନ୍ଦ୍ରପୁର ମିଡ଼ଲ ଭର୍ଣ୍ଣାକୁଲର ସ୍କୁଲଟି ଏଠାକୁ ସ୍ଥାନାନ୍ତରିତ ହୋଇ ପ୍ରଥମେ ୧୯ ଜଣ ଛାତ୍ରଙ୍କୁ ନେଇ ବିଦ୍ୟାଳୟଟି କ୍ରିୟାଶୀଳ ହେଲା । ପରେ ପରେ ଛାତ୍ର ସଂଖ୍ୟା କ୍ରମଶଃ ବଢିବାକୁ ଲାଗିଲା ଏବଂ ବଢ଼ିବଢ଼ି ପାଞ୍ଚଶହରୁ ଅଧିକ ହୋଇଥିଲା କେବଳ ଓଡ଼ିଶା ଭିତରୁ ନୁହେଁ, ଓଡ଼ିଶା ବାହାରୁ ମଧ୍ୟ ଛାତ୍ରମାନେ ଆକୃଷ୍ଟ ହୋଇ ଏଠାରେ ଅଧ୍ୟୟନ କରିବାକୁ ଆସୁଥିଲେ ।

ପଣ୍ଡିତ ଗୋପବନ୍ଧୁଙ୍କ ନିଃସ୍ୱାର୍ଥପର ମନୋଭାବ ଏବଂ ଅମୃତମୟ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ୧୯୧୧ମସିହାରେ ପଣ୍ଡିତ ନୀଳକଣ୍ଠ, ୧୯୧୨ ମସିହାରେ ଆଚାର୍ଯ୍ୟ ହରିହର, ୧୯୧୩ ମସିହାରେ ପଣ୍ଡିତ ଗୋଦାବରୀଶ ଏବଂ ୧୯୧୪ ମସିହାରେ ପଣ୍ଡିତ କୃପାସିନ୍ଧୁ ବନବିଦ୍ୟାଳୟରେ ଯୋଗଦାନ କରିଥିଲେ ।

ସାଧାରଣ ବିଦ୍ୟାଳୟଠାରୁ ଏହି ବିଦ୍ୟାଳୟ ଥିଲା ସ୍ୱତନ୍ତ୍ର । ପ୍ରକୃତିର ସୁରମ୍ୟ ପରିବେଶରେ ଶିକ୍ଷାଦାନ ଥିଲା ଏହାର ଏକ ସ୍ୱତନ୍ତ୍ରତା । ବର୍ଷର ଅଧିକାଂଶ ସମୟରେ ବକୁଳ ଛୁରିଅନା କୁଞ୍ଜରେ ପାଠପଢ଼ା ଅନୁଷ୍ଠିତ ହେଉଥିଲା । ସେତେବେଳେ ବୃକ୍ଷମାନଙ୍କର ଚହଲାପତ୍ର ସମ୍ଭାର ଉଚ୍ଚତାରେ ଥାଇ ମଧ୍ୟ ସତେ ଅବା ଆଲଟଚାମର ପକାଉଥିଲା । ବଉଳଫୁଲ ଓ ଛୁରିଅନା ଫୁଲର ସୁରଭି ଧୂପବାସର ସଞ୍ଚାର କରୁଥିଲା । କୋଇଲିର କୁହୁତାନ ଥିଲା ପବିତ୍ର ଶିକ୍ଷାଳୟରେ ଶଙ୍ଖଧ୍ୱନି ସଦୃଶ ।

ଅନ୍ୟତମ ସ୍ୱତନ୍ତତା ଥିଲା ଏହାର ଶିକ୍ଷାପଦ୍ଧତିରେ । ଗୁରୁକୁଳ ଆଶ୍ରମର ଲୁପ୍ତଶ୍ରୀ ସତେ ଅବା ଫେରି ଆସିଥିଲା । ଏଥିସହିତ ପାଶ୍ଚାତ୍ୟର ଭାବଧାରା ସମନ୍ୱିତ ହୋଇଥିଲା । ସେତେବେଳେ ଅନ୍ୟ ବିଦ୍ୟାଳୟମାନଙ୍କର ଇତିହାସ ଓ ଭୂଗୋଳ ପ୍ରଭୃତି ବିଷୟ ପ୍ରାୟ ପଠିତ ହେଉନଥିଲା । ସତ୍ୟବାଦୀ ବନ ବିଦ୍ୟାଳୟରେ ଏସବୁ ବିଷୟ ବିଶେଷ ଯତ୍ନର ସହିତ ପଢାଯାଉଥିଲା । 'ଇତିହାସ ଯେ ଜାତିର ଜୀବନ ଚରିତ୍ର ଏହାଦ୍ୱାରା ଜାତି ଜ୍ଞାନ ଲାଭ କରେ ।'- ଏହି ଅନୁଚିନ୍ତାରେ ଅନୁପ୍ରାଣିତ ହୋଇଥିଲା ବନବିଦ୍ୟାଳୟର ଶିକ୍ଷାନୀତି ଓ ପଦ୍ଧତି । ଭୂଗୋଳର ଉପାଦେୟତା ସେତେବେଳେ ଉପଲବ୍ଧ ହୋଇ ଶିକ୍ଷାର ଅନ୍ତର୍ଭୁକ୍ତ ହୋଇଥିଲା । ଭୂଗୋଳ ଯେ ଦେଶ ବିଦେଶ ସହିତ ମଣିଷକୁ ପରିଚିତ କରାଇବା ସହିତ ତାର ଚିତ୍ତବୃତ୍ତିକୁ ପ୍ରସାରିତ କରେ । ଏହି ଭାବନା ବନ ବିଦ୍ୟାଳୟର ଶିକ୍ଷା ବ୍ୟବସ୍ଥା ସହିତ ସମ୍ବନ୍ଧିତ ହୋଇଥିଲା ।

ଶିକ୍ଷିତ ହେବା ସହିତ ଛାତ୍ରଟିଏ ସ୍ୱାବଲମ୍ବନଶୀଳ ହେଉ- ଏହାଥିଲା ପଣ୍ଡିତ ଗୋପବନ୍ଧୁଙ୍କର ଏକାନ୍ତ ଇଚ୍ଛା । ତଦନୁସାରେ ପାଠ ସହିତ ଛାତ୍ରମାନଙ୍କୁ କୃଷି, ଉଦ୍ୟାନକର୍ମ, ବଢ଼େଇ କାମ ଓ କେତେକ କୁଟୀରଶିଳ୍ପ ଆଦି ବୈଷୟିକ ଶିକ୍ଷା ପ୍ରଦାନ କରାଯାଇଥିଲା । ଏହାଥିଲା ବନବିଦ୍ୟାଳୟର ଅନ୍ୟତମ ସ୍ୱତନ୍ତତା । ସେତେବେଳେ କୃଷି ଶିକ୍ଷକ ଭାବରେ ନିଯୁକ୍ତ ହୋଇଥିଲେ ନାରାୟଣ ସୁମନ୍ତ ପଟ୍ଟନାୟକ । ବଢ଼େଇ କାମ ଓ କିଛିକିଛି କୁଟୀରର ଶିଳ୍ପର ଶିକ୍ଷା ଦେବା ନିମନ୍ତେ ନିଯୁକ୍ତ ହୋଇଥିଲେ ଅର୍ଜୁନ ମହାରଣା । ତାଙ୍କ ବ୍ୟତୀତ ଅନ୍ୟ ଜଣେ ଶିଳ୍ପ ଶିକ୍ଷକ ଥିଲେ ଧନେଶ୍ୱର ମହାରଣା । ପିଲାମାନଙ୍କୁ ବିଭିନ୍ନ ପ୍ରକାର ଚିତ୍ରକଳାର ଶିକ୍ଷା ସେ ଦେଉଥିଲେ । ସଂଗୀତ ଓ ନାଟକ ଦିଗ ପ୍ରତି ଯଥେଷ୍ଟ ଦୃଷ୍ଟି ପ୍ରଦତ୍ତ ହେଉଥିଲା । ଛାତ୍ରମାନଙ୍କୁ ସଂଗୀତ ଓ ନାଟକ ଦିଗ ପ୍ରତି ଯଥେଷ୍ଟ ଦୃଷ୍ଟି ପ୍ରଦତ୍ତ ହେଉଥିଲା । ଛାତ୍ରମାନଙ୍କୁ ସଂଗୀତ ଶିକ୍ଷା ଦେବା ଲାଗି ପଣ୍ଡିତ ଗୋପବନ୍ଧୁ ପାରଳାଖେମୁଣ୍ଡିରୁ ସ୍ୱନାମଧନ୍ୟ ଗାୟକ ଅପର୍ଣ୍ଣା ପରିଚ୍ଛାଙ୍କୁ ଆଣିଥିଲେ । ନାଟକର ଅଭିନୟ ଲାଗି ଏକ ରଙ୍ଗମଞ୍ଚ ନିର୍ମିତ ହୋଇଥିଲା । ସେହି ରଙ୍ଗମଞ୍ଚରେ ଭିନ୍ନ ଭିନ୍ନ ସମୟରେ କେତେକ ନାଟକ ଅଭିନୀତ ହୋଇଥିଲା । ସେଥିମଧ୍ୟରୁ 'କାଞ୍ଚିକାବେରୀ', 'ସୀତାବିବାହ' ଏବଂ 'ହରିଶ୍ଚନ୍ଦ୍ର' ନାଟକର ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ।

ଛାତ୍ରମାନଙ୍କୁ ଇତିହାସ ପ୍ରତି ଆକୃଷ୍ଟ କରିବା ନିମନ୍ତେ ବିଦ୍ୟାଳୟରେ ଏକ ଐତିହାସିକ ସଂସଦ ଗଠିତ ହୋଇଥିଲା । ଏଥିରେ ପଣ୍ଡିତ କୃପାସିନ୍ଧୁ ଗବେଷଣାତ୍ମକ ପ୍ରବନ୍ଧମାନ ପାଠକରୁଥିଲେ । ଛାତ୍ରମାନଙ୍କୁ ଐତିହାସିକ ଗବେଷଣାମୂଳକ ପ୍ରବନ୍ଧ ରଚନା ନିମନ୍ତେ ସେ ପ୍ରବଳ ଉତ୍ସାହ ପ୍ରଦାନ କରୁଥିଲେ । ଛାତ୍ରମାନଙ୍କ ମନରେ ଜାତୀୟତାର ବୀଜବପନ ଥିଲା ସତ୍ୟବାଦୀ ବନବିଦ୍ୟାଳୟର ଅନ୍ୟତମ ଲକ୍ଷ୍ୟ ଓ ବୈଶିଷ୍ଟ୍ୟ । ଏଥିପାଇଁ ପ୍ରତି ସପ୍ତାହରେ ଇଟାଲି, ଆମେରିକା ପ୍ରଭୃତି ଦେଶମାନଙ୍କରେ ସଂଗଠିତ ସ୍ୱାଧୀନତା ସଂପର୍କରେ ବକ୍ତୃତାମାନ ପ୍ରଦାନ କରାଯାଉଥିଲା ।

ସତ୍ୟବାଦୀ ଗୋଷ୍ଠୀ ବିଶେଷ ଭାବରେ ଦେଶ ପ୍ରେମର ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ଏବଂ ଦେଶାତ୍ମବୋଧରେ ଗଭୀର ଭାବରେ ଉଦ୍‌ବୁଦ୍ଧ ହୋଇଥିଲେ । ଦେଶ ପ୍ରେମର ବିଶିଷ୍ଟ ମାଧ୍ୟମ ଥିଲା ସମାଜ ସଂସ୍କାର ଓ ଜନସେବା । ସତ୍ୟବାଦୀବନବିଦ୍ୟାଳୟରେ ଛୁଆଁଅଛୁଆଁ ଭେଦଭାବ ନଥିଲା । ଜାତିଧର୍ମବର୍ଣ୍ଣ ନିର୍ବିଶେଷରେ ପଂକ୍ତି ଭୋଜନର ବ୍ୟବସ୍ଥା ସେଠାରେ ଥିଲା । ସେତେବେଳେ ଏହା କେତେ ସଂସ୍କାରଧର୍ମିତା ତଥା ସାହସିକତାର କଥା ଥିଲା, ତାହା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ରକ୍ଷଣଶୀଳତାର ନିଗଡ଼ ବନ୍ଧନରୁ ନିଜକୁ ମୁକ୍ତ କରିବା ଏବଂ ପରିବେଶକୁ ମୁକ୍ତ କରିବାର ଏପରି ସୁଦୃଢ଼ ପ୍ରୟାସ ଓ ପ୍ରଚେଷ୍ଟା ସତ୍ୟବାଦୀ ବନବିଦ୍ୟାଳୟର ଅନ୍ୟତମ ସ୍ୱତନ୍ତ୍ରତା । ଶିକ୍ଷକ ଓ ଛାତ୍ର ଏକ ପରିବାର ରୂପେ ଚଳୁଥିଲେ । ଛାତ୍ରାବାସରେ ରହୁଥିବା ଛାତ୍ରମାନଙ୍କର ସମୁଚିତ ଯତ୍ନ ଶିକ୍ଷକମାନେ ନେଉଥିଲେ । ବିଶେଷତଃ ଆଚାର୍ଯ୍ୟ ହରିହର ଏବଂ ପଣ୍ଡିତ ଗୋଦାବରୀଶଙ୍କର ଏ ଦିଗରେ ଅବଦାନ ଅବିସ୍ମରଣୀୟ । ଛାତ୍ରମାନଙ୍କ ଭିତରୁ କିଏ ଅସୁସ୍ଥ ହୋଇପଡ଼ିଲେ ରାତିଦିନ ଲାଗି ତାଙ୍କର ସେବାଯତ୍ନ କରୁଥିଲେ ଆଚାର୍ଯ୍ୟ ହରିହର ଓ ପଣ୍ଡିତ ଗୋଦାବରୀଶ । ଶିକ୍ଷକ ଓ ଛାତ୍ରମାନଙ୍କ ଭିତରେ ବିଭିନ୍ନ କାର୍ଯ୍ୟରେ ସହଯୋଗ ରହିଥିଲା । ବିଦ୍ୟାଳୟର ଘର ତିଆରି କାର୍ଯ୍ୟରେ ମଧ୍ୟ ଛାତ୍ରମାନେ ଶିକ୍ଷକମାନଙ୍କୁ ସହଯୋଗ କରୁଥିଲେ ।

ଏସବୁ ସହିତ ସତ୍ୟବାଦୀ ଗୋଷ୍ଠୀର ଚାଲିଥିଲା ସାହିତ୍ୟ ସାଧନା । ଏ ସାହିତ୍ୟ କଳା ପାଇଁ କଳାର ସାହିତ୍ୟ ନଥିଲା, ଥିଲା ଜୀବନ ପାଇଁ କଳାର ସାହିତ୍ୟ । ଦେଶ ପ୍ରତି ଆନ୍ତରିକତା ଏବଂ ଜାତିପ୍ରତି ମମତ୍ୱବୋଧ ସୃଷ୍ଟି କରିବା ଥିଲା ଏଇ ସାହିତ୍ୟର ମୁଖ୍ୟଲକ୍ଷ୍ୟ । ଉତ୍କଳୀୟ ଜାତୀୟତା, ଭାରତୀୟ ଜାତୀୟତା ଏବଂ ବିଶ୍ୱପ୍ରାଣତାର ସମନ୍ୱୟ ଥିଲା ଏଇ ସାହିତ୍ୟର ବିଶେଷତଃ ଗୋପ ସାହିତ୍ୟର ମୌଳିକତା ।

୧୯୨୦/୨୧ ବେଳକୁ ଭାରତର ସ୍ୱାଧୀନତା ସଂଗ୍ରାମରେ ଉତ୍କଳ ମଣି ଗୋପବନ୍ଧୁ ଏବଂ ଅନ୍ୟମାନେ ଯୋଗ ଦେଲେ ଏବଂ ପରେପରେ ବନବିଦ୍ୟାଳୟ ପରିଣତ ହେଲା ଜାତୀୟ ବିଦ୍ୟାଳୟରେ । ତଥାପି ବହୁଦିନ ପର୍ଯ୍ୟନ୍ତ ବନବିଦ୍ୟାଳୟର ଆଦର୍ଶ ଅମ୍ଲାନ

ରହିଥିଲା । ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଗୋପବନ୍ଧୁ ସେହି ଅନୁଷ୍ଠାନକୁ ଆଶ୍ରମ ବୋଲି ବିଚାର କରୁଥିଲେ ।

ଆଜି ସତ୍ୟବାଦୀ ବନ ବିଦ୍ୟାଳୟ ରୂପକ ଫୁଲଟି ନାହିଁ ମାତ୍ର ଦିଗଦିଗନ୍ତରେ ରହିଛି ତା'ର ସୁବାସ । ସେହି ସୁବାସ ହେଉଛି ଅମ୍ଳାନ ସୁବାସ ଯାହା ନୀରବରେ ଘୋଷଣା କରୁଛି ସେହିଫୁଲର ମହତ୍ତ୍ୱ ଓ ଗୁରୁତ୍ୱକୁ । ଉତ୍କଳମଣି ତଥା ସତ୍ୟବାଦୀ ଗୋଷ୍ଠୀର ଆଶା ଆକାଂକ୍ଷା ପୂରଣ ହେବାକୁ ଯାଉଛି ଓଡ଼ିଆ ବିଶ୍ୱବିଦ୍ୟାଳୟର ସ୍ଥାପନାରେ । ପିଲାଦିନରୁ ଓଡ଼ିଆ ଭାଗବତର ଆଦର୍ଶରେ ଅନୁପ୍ରାଣିତ ଏବଂ ପରେ ଭାଷା ଭିତ୍ତିରେ ସ୍ୱତନ୍ତ୍ର ଉତ୍କଳ ଗଠନ ନିମନ୍ତେ କଠୋର ସଂଗ୍ରାମ କରିଥିବା ଦିବ୍ୟପୁରୁଷ ଗୋପବନ୍ଧୁଙ୍କର ମହତୀ ଇଚ୍ଛା ଫଳବତୀ ହେବାକୁ ଯାଉଛି । ବନବିଦ୍ୟାଳୟରୁ ବିଶ୍ୱବିଦ୍ୟାଳୟ ଶିକ୍ଷାକ୍ଷେତ୍ରରେ ଏଇ ଜୟଯାତ୍ରା ଉତ୍କଳମଣିଙ୍କ ସମେତ ସତ୍ୟବାଦୀ ଗୋଷ୍ଠୀର ସାଧକମାନଙ୍କ ବଳବତୀ ଇଚ୍ଛାର ଫଳବତୀ ରୂପାୟନ । ଆଗାମୀ ଦିନରେ ବିଶ୍ୱବିଦ୍ୟାଳୟ ମାଧ୍ୟମରେ ଶିକ୍ଷାର ସୁବାସ ଦିଗଦିଗନ୍ତରେ ଭରିଦେବ ଯାଦୁକରୀ ଆକର୍ଷଣ, ଏଇ ଆଶା ଓ ବିଶ୍ୱାସ ଆମ ସମସ୍ତଙ୍କର ରହିଛି ।



# ପରୀକ୍ଷା ଓ ଜୀବନ

ପରୀକ୍ଷା ହିଁ ଜୀବନ । କେତେ ପରୀକ୍ଷାର ସମାହାର ଏ ଜୀବନ । କେତେବେଳେ ପାଠର ପରୀକ୍ଷା ତ କେତେବେଳ ଶାଠର ପରୀକ୍ଷା; କେତେବେଳେ ଜ୍ଞାନର ପରୀକ୍ଷା, କେତେବେଳେ ବୁଦ୍ଧିର ପରୀକ୍ଷା । ପରୀକ୍ଷାରେ ଅଗ୍ରଗତିର ମାପହୁଏ । ପରୀକ୍ଷା କହିଦିଏ କେତେ ବାଟ ଜଣେ ଆସିଛି, ଆଉ କେତେ ବାଟ ଯିବାକୁ ଅଛି । ପରୀକ୍ଷା ହେଉଛି ଜୀବନର ଚିହ୍ନ । ଯିଏ ପରୀକ୍ଷାର ସାମନା କରିଛି, ସେ ହିଁ ପ୍ରକୃତ ମଣିଷ । ଯିଏ ପରୀକ୍ଷାକୁ ଡରିଛି, ସେ ଜୀବନରେ ହାରିଯାଇଛି । ଯିଏ ପରୀକ୍ଷା ରୂପକ ଲହଡ଼ିକୁ ଭାଙ୍ଗି ଦେଇ ଆଗକୁ ଯାଇଛି, ସେ ଜୀବନକୁ ଅନୁଭବ କରିଛି । ଅତଏବ ପରୀକ୍ଷା ଆମର ଶତ୍ରୁ ନୁହେଁ ବନ୍ଧୁ ।

ଛାତ୍ର ଜୀବନରେ ପରୀକ୍ଷା ଅଛି, ପାଠ ଅଛି ତ ପରୀକ୍ଷା ଅଛି । ପରୀକ୍ଷାକୁ କେହି ଡରିବାର ନୁହେଁ । ପରୀକ୍ଷା କ'ଣ ବାଘ ଭାଲୁ କି ତାକୁ ଡରିବାକୁ ହେବ । ବରଂ ଏହା ଠିକ୍ ଯେ ଡରିଲେ ପରୀକ୍ଷା ଡରେଇବ । ପରୀକ୍ଷାକୁ ନ ଡରିଲେ ସେ ଡରେଇବ ନାହିଁ । କାହିଁକି ଡରିବା ? ପାଠ ପଢିବା, ପରୀକ୍ଷାକୁ ବନ୍ଧୁ ଭାବରେ ଗ୍ରହଣ କରିବା । ପାଠ ଠିକ୍ ଭାବରେ ପଢ଼ିଥିଲେ ପରୀକ୍ଷାକୁ ଡର ମାଡ଼ିବ ନାହିଁ । ପରୀକ୍ଷା ଏକ ମାପକାଠି, ତାକୁ ପାଠର ଏକ ଅଂଶ ଭାବରେ ଗ୍ରହଣ କରିବା ।

ଜୀବନ ଏକ ପାଠ, ପରୀକ୍ଷା ହେଉଛି ପାଠର ଏକ ଅଂଶ । ଅତଏବ ପରୀକ୍ଷା ହେଉଛି ଜୀବନର ଏକ ଅଂଶ । ତାକୁ ଜୀବନରୁ ଅଲଗା କରିହେବ ନାହିଁ । ବରଂ ତାର ସମ୍ମୁଖୀନ ହୋଇ ତାକୁ ଅତିକ୍ରମ କରିଗଲେ ଯେଉଁ ଆନନ୍ଦ ମିଳିବ ତା'ର ତୁଳନା ନାହିଁ । ଅତିକ୍ରମ କରିଲେ ଆତ୍ମବିଶ୍ୱାସ ବଢ଼ିବ, ଆତ୍ମସନ୍ତୋଷ ମିଳିବ । ଆତ୍ମବିଶ୍ୱାସରୁ ବିଶ୍ୱାସ

ନାହିଁ, ଆତ୍ମ ସନ୍ତୋଷରୁ ସନ୍ତୋଷ ନାହିଁ । ଜୀବନ ପୂର୍ଣ୍ଣ ହୁଏ ଆତ୍ମ ବିଶ୍ୱାସରେ ଓ ଆତ୍ମ ସନ୍ତୋଷରେ । ଏଥି ନିମନ୍ତେ ପରୀକ୍ଷା ବରଣୀୟ ଆଦୌ ବର୍ଜନୀୟ ନୁହେଁ ।

ଛାତ୍ର ଜୀବନ ହେଉ ଅଥବା ଗୃହସ୍ଥର ଜୀବନ ହେଉ ଜୀବନ ପାଠ ପଢ଼ିବା ପାଇଁ ଦୁଇ ଗୋଟି କଥା ନିହାତି ଦରକାର । ଗୋଟିଏ ହେଲା ଶ୍ରଦ୍ଧା ଓ ଅନ୍ୟଟି ହେଲା ସାହସ । ଯାହା ପାଖରେ ଏ ଦୁଇଟି କଥା ଅଛି, ତା' ଜୀବନରେ ସବୁକିଛି ଅଛି । ଶ୍ରଦ୍ଧା ଅର୍ଥ ଆସକ୍ତି ନୁହେଁ, ବରଂ ସର୍ତ୍ତହୀନ ସ୍ନେହଶୀଳତା । ଜୀବନ ପ୍ରତିଶ୍ରଦ୍ଧା ରହିଲେ, ଜୀବନ ହୁଏ ରଙ୍ଗମୟ, ରସମୟ ଓ ବାସମୟ ।

ଯାହାର ଜୀବନ ପ୍ରତି ଶ୍ରଦ୍ଧା ଅଧିକ, ତା'ର ଜଗତ ପ୍ରତି ଶ୍ରଦ୍ଧା ଅଧିକ ତଥା ଅନ୍ୟମାନଙ୍କ ପାଇଁ ପୁଣି ପଶୁପକ୍ଷୀ ଗଛଲତା ସମସ୍ତଙ୍କ ପାଇଁ ଶ୍ରଦ୍ଧା ଅଧିକ । ଶ୍ରଦ୍ଧା ଏକ ଭଗବତ୍ ସଦ୍‌ଗୁଣ । ଏହାର ଅଧିକାରୀ ହେବା ଅର୍ଥ ଜୀବନରେ ସାର୍ଥକତା ଅର୍ଜନ କରିବା । ଜୀବନ ଓ ଜଗତ ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଏପରି କୁହାଯିବ ଯେ ବ୍ୟକ୍ତି ଜୀବନ ହେଉଛି ଜଗତର ଏକ ଏକକ ଏବଂ ଜଗତ ହେଉଛି ବ୍ୟକ୍ତି ଜୀବନର ଏକ ପ୍ରସାରିତ ରୂପ ।

ସାହସ କହିଲେ ଏଠାରେ ଦୁଃସାହସର କଥା କୁହାଯାଉ ନାହିଁ । ପହଁରା ନଜାଣି ନଈ ବା ପୋଖରୀକୁ ଡେଇଁ ପଡ଼ିବା ସାହସ ନୁହେଁ, ଦୁଃସାହସ । ସ୍ଥାନ, କାଳ, ପାତ୍ରକୁ ବିଚାରକୁ ନ ନେଇ ଏ ଆଡୁ ସେ ଆଡୁ କଥା କହିଯିବା ସାହସ ନୁହେଁ ଦୁଃସାହସ । ଅନ୍ୟକୁ ଅସଦ୍‌ବ୍ୟବହାର କରିବା ସାହସ ନୁହେଁ ଦୁଃସାହସ । ସାହସ ଜୀବନକୁ ସୁଖୀକରେ, ଦୁଃସାହସ କରେ ଦୁଃଖୀ । ପରୀକ୍ଷାର ସମ୍ମୁଖୀନ ହେବା ହିଁ ସାହସିକତାର କାର୍ଯ୍ୟ । ସାହସ ପାଇଁ ଧୈର୍ଯ୍ୟ, ସହନଶୀଳତା ଓ ଅଧ୍ୟବସାୟ ଲୋଡ଼ା । ସାଧୁ ଉଦ୍ୟମ, ପରିଶ୍ରମ, ସତ୍‌ଚିନ୍ତନ, ସତ୍‌କର୍ମ ଆଣେ ଆଗକୁ ଯିବା ପାଇଁ ସାହସ, ପରୀକ୍ଷାକୁ ସାମନା କରିବା ପାଇଁ ସାହସ ।

ଯୁଧିଷ୍ଠିର ପରୀକ୍ଷା ଦେଇଥିଲେ ଯକ୍ଷ ନିକଟରେ, ଅର୍ଜୁନ ପରୀକ୍ଷା ଦେଇଥିଲେ ଶ୍ରୀକୃଷ୍ଣଙ୍କ ନିକଟରେ, ବଳୀ ପରୀକ୍ଷା ଦେଇଥିଲେ ବାମନଙ୍କ ନିକଟରେ, ପ୍ରହ୍ଲାଦ ପରୀକ୍ଷା ଦେଇଥିଲେ ପିତା ହିରଣ୍ୟ କଶିପୁଙ୍କ ନିକଟରେ । ପ୍ରତ୍ୟେକ କିନ୍ତୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲେ, ଜୀବନରେ ପ୍ରଗତିର ସ୍ୱାଦକୁ ଅନୁଭବ କଲେ ।

ପରୀକ୍ଷାର ସମ୍ମୁଖୀନ ହେବାପାଇଁ ମନବଳ ଆବଶ୍ୟକ । ମନବଳ ଅତ୍ୟନ୍ତ ପ୍ରଭାବଶାଳୀ ଯାହା ଦୁର୍ବଳକୁ ସବଳ କରିପାରେ, ଅକ୍ଷମକୁ କ୍ଷମ କରିପାରେ, ଅସମର୍ଥକୁ ସମର୍ଥ କରିପାରେ । ସଂସାରୀ ଜୀବନରେ ଯିଏ ଯେତେ ପରୀକ୍ଷାର ସାମନା କରିପାରିଛି, ସେ ସେତେ ଅଭିଜ୍ଞତା ହାସଲ କରିପାରିଛି । ବହି ପାଠ ଅପେକ୍ଷା ଅଭିଜ୍ଞତାର ପାଠ ଯେ ଅଧିକ ଶକ୍ତିଶାଳୀ, ଏଥିରେ ସନ୍ଦେହର ଅବକାଶ ନାହିଁ । ଛାତ୍ର ଜୀବନରେ ପରୀକ୍ଷାର ସାମନା କରିବାପାଇଁ ମନବଳ ଦରକାର । ବିଦ୍ୟାବଳ ସହ ମନବଳ ମିଶିବା ଜରୁରୀ ।

ବିଦ୍ୟାବଳ ଥିବ ଆଉ ମନବଳ ନଥିବ ତେବେ ତାହା ଅପୂର୍ଣ୍ଣ ।ମନବଳଥିବ ଆଉ ବିଦ୍ୟାବଳ ନଥିବ ଅର୍ଥାତ ପାଠର ଯଥାର୍ଥ ସ୍ମରଣ ନଥିବ, ତେବେ ମଧ ତାହା ଅପୂର୍ଣ୍ଣ ।

ମନବଳର ଐଶ୍ୱର୍ଯ୍ୟ ଆଶ୍ଚର୍ଯ୍ୟମୟ । ତାହା ଅସୁସ୍ଥତାରୁ ସୁସ୍ଥତା ଆଡ଼କୁ ନେବା ଦିଗରେ ଆବଶ୍ୟକୀୟ ଔଷଧର ଗୁଣ ଓ ପ୍ରଭାବକୁ ବହୁଗୁଣିତ କରେ । ଦାରିଦ୍ର୍ୟର ଆଘାତକୁ ଅତିକ୍ରମ କରିବାକୁ ଶକ୍ତିଦିଏ । ଅପମାନକୁ ଡେଇଁଯିବା ପାଇଁ କେତେ ସାମର୍ଥ୍ୟ ମନରେ ଭରିଦିଏ । ସଂସାରୀ ଜୀବନରେ କେତେ କଥା ଘଟେ, କେତେ ବାଗରେ କେତେ କ୍ଷତି ହୁଏ, ଯେଉଁ ସାମର୍ଥ୍ୟ ସହିବାର ଶକ୍ତି ଦିଏ, ସେ ହେଉଛି ମନର ବଳ । ଆତ୍ମୀୟ ବ୍ୟକ୍ତିର ବିୟୋଗ ଦୁଃଖରେ ଅଣ୍ଟାଭାଙ୍ଗି ଦିଏ, ମାତ୍ର ଏଇ ମନବଳ ପୁଣି ଅଣ୍ଟାକୁ ସଳଖିବାରେ ସହାୟତା କରେ । ଏକଥା କୁହାଯାଏ ଯେ ଧନବଳ, ଜନବଳ, ଯଶବଳ ଓ କ୍ଷମତା ବଳଠାରୁ ମନବଳର ପ୍ରଭାବ ଅଧିକ । ଏପରି ଲୋକ ଅନେକ ଅଛନ୍ତି ବହୁ ଅଭାବ, ବହୁ ଅସୁବିଧା, ବହୁ ଅଶାନ୍ତି ଭିତରେ ରହି ମଧ ନିଜକୁ ଦମ୍ଭ କରିପାରିଛନ୍ତି ଏଇ ମନବଳ ମାଧମରେ । କେତେ ସମସ୍ୟା ରୂପକ ପରୀକ୍ଷା ଆସିଛି ସେମାନଙ୍କ ଜୀବନରେ, ମାତ୍ର ସେମାନେ ସାହସର ସହିତ ତାକୁ ଅତିକ୍ରମ କରି ଯାଇଛନ୍ତି । ସେମାନେ ଅହଂକାରୀ ନୁହଁନ୍ତି ଅମ୍ଳାନ ବ୍ୟକ୍ତିତ୍ୱର ଅଧିକାରୀ । ସେମାନେ ହୋଇଛନ୍ତି ଦୂରଦୃଷ୍ଟି ସଂପନ୍ନ ଓ ସୂକ୍ଷ୍ମଦୃଷ୍ଟି ସଂପନ୍ନ । ଯଦି ପରୀକ୍ଷାକୁ ସେମାନେ ଡରି ଯାଇଥାନ୍ତେ, ତେବେ ହାରି ଯାଇଥାନ୍ତେ । ସେମାନଙ୍କୁ ଧନ୍ୟବାଦ ଯେତେ ଦେଲେ ମଧ୍ୟ ତାହା ଊଣା ହେବ ।

ଜୀବନରେ ପାଠ ସରେ ନାହିଁ କି ପରୀକ୍ଷା ସରେ ନାହିଁ । ପ୍ରତିଟି ପରୀକ୍ଷାରୁ କିଛି ନା କିଛି ଶିଖିବାର ଥାଏ । ଗୋଟିଏ ଦୁଇଟି ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଗଲେ ଏତେ ମର୍ମାହତ ହେବାର ନୁହେଁ । ଅସଫଳତାକୁ ସେତେବେଳେ ଅସାମର୍ଥ୍ୟର ଚିହ୍ନ ବୋଲି ଭାବିବା ଉଚିତ ନୁହେଁ । ଅସଫଳତାକୁ ସକାରାତ୍ମକ ଭାବରେ ଗ୍ରହଣ କଲେ ସେହି ଅସଫଳତା ଆଣିଦିଏ ସହଯୋଗ ସଫଳତା ନିମନ୍ତେ । କେତେ ବୈଜ୍ଞାନିକ ସେମାନଙ୍କ ପରୀକ୍ଷା ନିରୀକ୍ଷାରେ କେତେବାର ଅସଫଳ ହୋଇ ପୁଣିପୁଣି ପରୀକ୍ଷା ନିରୀକ୍ଷା ଚଳାଇ ରଖି ଶେଷରେ କୃତକାର୍ଯ୍ୟ ହୋଇଛନ୍ତି ।

ଆମ ଜୀବନ ଆସିଛି ଚେତନାରେ ପ୍ରଶସ୍ତତର ହେବା ପାଇଁ, ସଙ୍କୁଚିତ ହୋଇ ରହିବାପାଇଁ ନୁହେଁ । ପ୍ରଶସ୍ତ ହେବାପାଇଁ ଲୋଡ଼ା ଜୀବନରେ ଅଭିଜ୍ଞତା ଏବଂ ମନର ଉଦାରତା । ପ୍ରସାରଣ ଆଣିଦେବ ପରିପୂର୍ଣ୍ଣତା । ଏଥିନିମନ୍ତେ ପାଠ ଏକାନ୍ତ ଆବଶ୍ୟକ । ପାଠକୁ ପ୍ରଭାବଶାଳୀ କରିବାକୁ ପରୀକ୍ଷା ଦରକାର । ପାଠ ଓ ପରୀକ୍ଷା ଗୋଟିଏ ମୁଦ୍ରାର ଦୁଇପାଖ ପରି ପରସ୍ପର ସହ ସମ୍ବନ୍ଧିତ । ତେଣୁ ପରୀକ୍ଷାକୁ ନ ଡରି ତାକୁ ବନ୍ଧୁ ଭାବରେ ଗ୍ରହଣ କରିବା ଉଚିତ ।

❑❑

# ଆମକୁ ଆମେ ଏତେ ଅଡୁଆ କାହିଁକି ?

କଥାଟି ଶୁଣିଲାବେଳକୁ କାନକୁ ଅଡୁଆ ଲାଗିବ । ଏ ଅହଂକାରୀ ଯୁଗରେ ପୁଣି ଏପରି କଥା କିପରି ସମ୍ଭବ ? ଟିକିଏ ତଳେଇ କରି ବୁଝିଲେ କଥାଟିର ମର୍ମ ବୁଝିହେବ । ମର୍ମଟି ହେଉଛି ମତେ 'ମୁଁ'ବଡ଼ ସୁଆଦ ମାତ୍ର ମୋ ଭାଷା ମତେ ବଡ଼ ଅଡୁଆ, ମୋ ଖାଦ୍ୟ ମତେ ଅଡୁଆ, ମୋ ଚଳଣି ମତେ ଅଡୁଆ, ମୋ ସଂସ୍କୃତିମତେ ଅଡୁଆ, ମୋ ଶାସ୍ତ୍ର ମତେ ଅଡୁଆ ଇତ୍ୟାଦି ଇତ୍ୟାଦି । ଆମ ଶାସ୍ତ୍ରମାନ ଆମକୁ ଲାଗେ ମିଛ ଗଳ୍ପରେ ପରିପୂର୍ଣ୍ଣ ବୋଲି । ମନେ ପଡ଼େ ସ୍ୱାମୀ ବିବେକାନନ୍ଦଙ୍କର କଥା ଯେ ପିଲାଟିଏ ବିଦ୍ୟାଳୟକୁ ଯାଇ ଶିଖୁଛି- 'ତା'ର ଶାସ୍ତ୍ର ସବୁ ମିଛ ଗଳ୍ପରେ ପୂର୍ଣ୍ଣ,' ଏକଥା ସ୍ୱାମୀଜୀଙ୍କର ଏକ ଶହରୁ ଊର୍ଦ୍ଧ୍ୱ ବର୍ଷ ତଳର କଥା ମାତ୍ର ଆଜି ମଧ୍ୟ ଶିକ୍ଷିତ ଯୁବକ ପାଖରେ ଅକ୍ଷରେ ଅକ୍ଷରେ ସତ୍ୟ । ଅବଶ୍ୟ ଏକଥା ସମଗ୍ର ଯୁବ ସମାଜ ପାଇଁ ପ୍ରଯୁଜ୍ୟ ନୁହେଁ, ତେବେ ଅଧିକାଂଶ ଯୁବକଙ୍କର ମାନସିକତା ଏହିପରି ।

ମନରେ ପ୍ରଶ୍ନ ଆସେ ଏକଥା ଘଟିଲା କିପରି । ଉତ୍ତରରେ କୁହାଯାଇପାରେ ଯେ ଆଧୁନିକ ଶିକ୍ଷାରେ ଭାରତରୁ ଭାରତୀୟତା ରୂପକ ମେରୁଦଣ୍ଡଟିକୁ କାଢ଼ି ନିଆଗଲା । ତା' ସ୍ଥାନରେ ପାଶ୍ଚାତ୍ୟର ମେରୁଦଣ୍ଡ ଆଣି ଲଗାଇ ଦିଆଗଲା । ଫଳତଃ ସାମାଜିକ ଜୀବନ, ସାଂସ୍କୃତିକ ଜୀବନ ପୁଣି ରାଷ୍ଟ୍ରୀୟ ଜୀବନ କମ୍ ଜୋର ହୋଇଗଲା । ନିଜକୁ ନିଜେ ଭିନ୍ନ ଚକ୍ଷୁରେ ଦେଖିବା ସମ୍ଭବ ହେଲା । ପୃଥିବୀକୁ ସୁବାସିତ କଲାଭଳି ଶାସ୍ତ୍ରମାନ ଆମ ନାକର ତ୍ରୁଟି ଯୋଗୁଁ ନିଜ ନିଜର ସୁବାସ ଆମପାଇଁ ହରାଇଲେ । ଆମ ନାକ କହିଲା ତାହା ସବୁ ଯେମିତି ଚିକିଟିଆ ଚେମେଣିଆ ଗନ୍ଧରେ ଭରା । ଆମ ଜାଣିପାରିଲୁନାହିଁ ଯେ ଏସବୁ ଆମ

ନାକର ଅପୂର୍ଣ୍ଣତା, ଘ୍ରାଣ ଶକ୍ତିର ଅସ୍ୱାଭାବିକତା । ଖେଳାଳିର ତିନିପୁରୁଷ ଏବଂ ସିନେ ତାରକାଙ୍କର ଚାରି ପୁରୁଷ ଆମ ଜିଭ ଆଗରେ ମାତ୍ର ଆମର ଚାରିପୁରୁଷ ବେଳକୁ ଜଗନ୍ନାଥ ନହେଲେ ବଳଭଦ୍ର । ପଞ୍ଚୁପାଣ୍ଡବଙ୍କ ନାମ ଯୁବକକୁ ପଚାରିଲେ ଉତ୍ତରରେ ତିନିଗୋଟି ନାମ ମିଳୁଛି ଆଉ ଦୁଇଟି ବେଳକୁ ମାନେ ମାନେ ଶବ୍ଦ ଶୁଭୁଛି । ଭୀଷ୍ମଓ ଭୀମ - ଏକ ଚରିତ୍ର ବୋଲି ଧାରଣା ରହିଛି । ନବଗ୍ରହଙ୍କର ନାମ ବଡ଼ ଅଡୁଆ ଧନ୍ଦାରେ ପକାଇ ଦେଉଛି । ପଠାଣି ସାମନ୍ତଙ୍କର ପୂରାନାମ ମନେ ନାହିଁ ବା ମନେ ପଡୁନାହିଁ । ଲବଣ ସତ୍ୟାଗ୍ରହ କେବେ ଆରମ୍ଭ ହୋଇଥିଲା ସେ ମସିହା ସେ ପାଶୋରି ଯାଇଛି । ଜୟୀ ରାଜଗୁରୁ କିଏ ବୋଲି ପଚାରିଲେ ନାଁଟି ତାକୁ ନୂଆ କରି ଶୁଣିଲା ପରି ଲାଗୁଛି । ଆମ ଦେଶର ପ୍ରଥମ ରାଷ୍ଟ୍ରପତିଙ୍କର ନାମରେ ସନ୍ଦେହ ରହୁଛି । ଗୋପବନ୍ଧୁଙ୍କୁ ଉତ୍କଳମଣି ଉପାଧି କିଏ ଦେଇଥିଲେ, ପ୍ରଶ୍ନଟି ଅଡୁଆ ଲାଗୁଛି । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ କେବେ ହୋଇଥିଲା ପଚାରିଲେ ଉତ୍ତର ବାଉଳା ଧରୁଛି । ରଜପର୍ବ ଓଡ଼ିଆରେ କେଉଁ ମାସରେ ପଡ଼େ ମନେ ପଡୁନାହିଁ । ଚେରାପୁଞ୍ଜି କେଉଁ ପ୍ରଦେଶରେ ରହିଛି ସ୍ମରଣ ନାହିଁ । ରଥଯାତ୍ରାରେ ଶ୍ରୀଜଗନ୍ନାଥଙ୍କର ରଥର ଚକସଂଖ୍ୟା କେତେର ଉତ୍ତର ଏକ ଆନୁମାନିକ ସଂଖ୍ୟା । ହେରାପଞ୍ଚମୀ କେଉଁ ତିଥିରେ ପଡ଼େ ପ୍ରଶ୍ନର ଉତ୍ତର ମିଳୁଛି ପଞ୍ଚମୀତିଥିରେ ଇତ୍ୟାଦିଇତ୍ୟାଦି ।

ଏକଥା କହି ଯୁବ ସମାଜକୁ ଦୋଷ ଦିଆଯାଉନାହିଁ, ବରଂ ଏହାର କାରଣର ତର୍ଜମା ପାଇଁ ପ୍ରୟାସ କରାଯାଇଛି । ଗୋଟିଏ କାରଣ ହୁଏତ ମିଳିବ ଯେ ଏସବୁ ତ ପାଠ୍ୟକ୍ରମରେ ନାହିଁ, ପରୀକ୍ଷାର ପ୍ରଶ୍ନପତ୍ରରେ ପଡ଼େ ନାହିଁ ଇତ୍ୟାଦିଇତ୍ୟାଦି । ଏହା ସତ୍ୟ ହୋଇପାରେ ତେବେ କଥାଟି ଶତପ୍ରତିଶତ ଯୁକ୍ତିଯୁକ୍ତ ନୁହେଁ । ସବୁକଥା କ'ଣ ପଢ଼ା ବହିରେ ରହିପାରିବ-ତାହା ନୁହେଁ । ପଢ଼ା ସହିତ ଆମଦେଶ, ଆମଭାଷା, ଆମ ସଂସ୍କୃତି, ଆମ ପରଂପରା ସଂପର୍କରେ କିଛି କଥା ଜାଣିଲେ ଆମ ସ୍ଥିତି ଅଧିକ ଦୃଢ଼ହେବ, ଆମ ବ୍ୟକ୍ତିତ୍ୱ ଅଧିକ ପରିପୁଷ୍ଟ ହେବ । ଏଥିପାଇଁ ଆବଶ୍ୟକ ଟିକିଏ ଆଗ୍ରହ, ଟିକିଏ ଆନ୍ତରିକତା ଟିକିଏ ମମତ୍ୱବୋଧ । ଆଜିକାଲି ତ ଏସବୁ ଜାଣିବା ଅପେକ୍ଷାକୃତ ସହଜ ହୋଇଛି, ଖାଲି ଆମ ପାଇଁ ଆମର ଟିକିଏ ଶ୍ରଦ୍ଧାଥିବା ଦରକାର ।

ଅନ୍ୟମାନଙ୍କର ଦାୟିତ୍ୱ ମଧ୍ୟ ଏ ଦିଗରେ ରହିଛି । ଅଧିକ ରହିଛି ପିତାମାତାଙ୍କର । ସେମାନେ ଇଚ୍ଛା କଲେ ବହୁ ଜାଣିବା କଥା କମ୍ ସମୟରେ ପିଲାମାନଙ୍କୁ ଜଣାଇ ଦେଇପାରିବେ । ବୟସ ଅନୁସାରେ କେତେବେଳ ଗଳ୍ପ ଛଳରେ, କେତେବେଳେ ଉପଦେଶ ମାଧ୍ୟମରେ ପୁଣି କେତେବେଳେ ଉଦାହରଣ ହୋଇ ବହୁତ ଭଲ କଥା ଜଣାଇପାରିବେ, ଶୁଣାଇ ପାରିବେ ପୁଣି ଶିଖାଇପାରିବେ । ଟିକିଏ କଷ୍ଟ କରିବାକୁ ପଡ଼ିବ, କଷ୍ଟକୁ ଡରିଲେ ଚଳିବ ନାହିଁ । ସମୟ ସୁବିଧା ଦେଖି ପରୀକ୍ଷାପତ୍ର ନଥିଲାବେଳେ ପିଲାଟିର ମନୋବୃତ୍ତିକୁ ଲକ୍ଷ୍ୟ କରି ଭଲ ଭଲ କଥା ଶିଖାଇବାକୁ ହେବ । ପଲ୍ଲୀଟିକୁ ପିତାମାତା ବା ଅଭିଭାବକଙ୍କୁ

ଆବିଷ୍କାର କରିବାକୁ ପଡ଼ିବ । ଧୈର୍ଯ୍ୟର ସହିତ ବୁଝାଇବାକୁ ହେବ, ବାରମ୍ବାର ଦରକାର ପଡିଲେ କହିବାକୁ ପଡ଼ିବ । ବ୍ୟସ୍ତ ହେଲେ ଚଳିବ ନାହିଁ, ବିରକ୍ତିର ପ୍ରଶ୍ନ ହିଁ ଉଠୁ ନାହିଁ । ଗାଳି ମାଧ୍ୟମରେ ନୁହେଁ ବୟସ ଅନୁପାତରେ ଯଥାଯୋଗ୍ୟ ସ୍ନେହ ମାଧ୍ୟମରେ ଉପଯୁକ୍ତ ଦିଗ୍‌ଦର୍ଶନ ଦେବାକୁ ହେବ । ପିଲାଟି କେଉଁ ଭାଷାରେ ପଢୁଛି ପଢୁ ମାତ୍ର ପିଲାଦିନରୁ ତାକୁ ନିଜ ମାତୃଭାଷା ଶିଖାଇବାକୁ ହେବ । ପିଲାଟି ମାତୃଭାଷା କହିପାରୁ ନାହିଁ ପଢ଼ିବା ତ ଦୂରର କଥା ବୋଲି ଖୁସି ନ ହୋଇ ଦୁଃଖିତ ହେବାକୁ ପଡ଼ିବ । ନିଜେ ବୁଝିବାକୁ ପଡ଼ିବ ଯେ ପିଲାଟିଏ ନିଜ ମାତୃଭାଷାରେ ଦକ୍ଷ ନ ହେଲେ ଅନ୍ୟ ଭାଷାରେ ଦକ୍ଷ ହୋଇପାରିବ ନାହିଁ । ମାତୃଭାଷାର ଦକ୍ଷ ଜୀବନରେ ବଡ଼ ଦକ୍ଷ ଆଣେ । ନିଜ ଜୀବନକୁ ଏବଂ ସାରାଜଗତକୁ ବୁଝିବାକୁ ସାମର୍ଥ୍ୟ ଦିଏ । କାରଣ ପିଲାଟିଏ ମାତୃଭାଷାରେ ହିଁ ଭାବେ । ତୁଣ୍ଡରେ ଓ ମୁଣ୍ଡରେ ମାତୃଭାଷା ପ୍ରତି ଶ୍ରଦ୍ଧା ନଥିବା ଅର୍ଥ ବେଦରେ ଓଁକାର ଧ୍ୱନି ନଥିବା । ମାତୃଭାଷା ଏକ ଅଧିକ କଥା ନୁହେଁ ଏକ ଆବଶ୍ୟକତା । ମାତୃଭାଷାକୁ ରଖି ଆଉ ଆଉ ଭାଷା ପଢ଼ିବା ଓ ଜାଣିବା ଅଭିନନ୍ଦନୀୟ । ଭାଷାବିତମାନଙ୍କ ମତରେ ଆମ ଭାରତୀୟମାନଙ୍କ ପାଇଁ ଅତିକମ୍‌ରେ ତିନିଗୋଟି ଭାଷା ଶିଖିବା ଏକାନ୍ତ ଜରୁରୀ । ତାହା ହେଲା ନିଜ ମାତୃଭାଷା, ନିଜର ରାଷ୍ଟ୍ରଭାଷା ଏବଂ ଆନ୍ତର୍ଜାତୀୟଭାଷା । ଅର୍ଥାତ ଜଣେ ଓଡ଼ିଆ ଲୋକ ପାଇଁ ମାତୃଭାଷାଭ ଭାବରେ ଓଡ଼ିଆ, ରାଷ୍ଟ୍ରଭାଷା ଭାବରେ ହିନ୍ଦୀ ଏବଂ ଆନ୍ତର୍ଜାତୀୟ ଭାଷା ଭାବରେ ଇଂରାଜୀ ଶିଖିବା ଦରକାର ।

ଏଥିସହିତ ପିଲାଟିର ମାନସିକ ବୟସ (ମେଣ୍ଟାଲ ଏଜ) କୁ ଦେଖି ଜୀବନର ମୂଲ୍ୟ ଓ ମହତ୍ତ୍ୱ ସଂପର୍କରେ ବୁଝାଇବାକୁ ପଡ଼ିବ । ଚେତନାରେ ଭାବନାରେ ତଥା କାର୍ଯ୍ୟଧାରାରେ ଅଗ୍ରଗତି ପାଇଁ ଗାଳି ନୁହେଁ ଉତ୍ସାହ ଦେବା ଦରକାର । ପରୀକ୍ଷାରେ ଅଧିକ ନମ୍ବର ରଖିବା ନିମନ୍ତେ ତା' ମୁଣ୍ଡରେ ଚାପ ନ ଦେଇ ତାକୁ ପ୍ରେରଣା ଦେବା ଆବଶ୍ୟକ । ପରୀକ୍ଷାରେ ଟିକିଏ କମ୍ ନମ୍ବର ରଖିଲା ବୋଲି ସେ ଯେ ଅପଦାର୍ଥ–ଏପରି ଭାବନା ଅମୂଳକ । ପ୍ରେରଣା ମିଳିଲେ, ଉତ୍ସାହ ପାଇଲେ ଓ ପିଲାଟି ଯଥାର୍ଥ ଭାବରେ ପରିଶ୍ରମ କଲେ ସଫଳତା ନିଶ୍ଚିତ ମିଳିବ, ଏଥିରେ ସନ୍ଦେହ ନାହିଁ । କାରଣ ଉଦ୍‌ଯୋଗ ହିଁ ଉନ୍ନତିର ମୂଳକଥା ଓ ମୌଳିକତା ।

ଇଚ୍ଛା କରି କେହି ଅସଫଳ ହୁଏ ନାହିଁ । କେବଳ ପାଠ ପଢ଼ା ନୁହେଁ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଉଦ୍‌ଯୋଗ କରୁକରୁ ଯଦି ଆଶାନୁରୂପ ସଫଳତା ନ ମିଳେ ତେବେ ହତାଶ ନହୋଇ ଆଶାରଖି ଆଗକୁ ବଢ଼ିବାକୁ ହେବ । ପ୍ରୟାସ, ପ୍ରଯତ୍ନ ଓ ଆଶା–ଏହି ତିନିଗୋଟି କଥା ଜୀବନରେ ସଫଳତାର ମୂଳମନ୍ତ୍ର । ଏତିକି ଯିଏ ରଖିପାରିଛି ତା'ପାଇଁ ଅସମ୍ଭବ ବୋଲି କିଛି ନାହିଁ । ଶ୍ରୀମାଙ୍କ ମତରେ–'ହତାଶ ହୁଅନା, ହତାଶା ଏକ ବିରୋଧୀଶକ୍ତି । ଆଶାବାଦୀ ହୁଅ, ଆଶା ଗୋଟିଏ ଭଗବତ୍ ସଦ୍‌ଗୁଣ ।' ଜୀବନକ୍ଷେତ୍ରରେ କେଉଁ କେଉଁ କ୍ଷେତ୍ରରେ ଅସଫଳ ହୋଇଗଲେ ଭାଙ୍ଗି ନପଡ଼ି ଅଧିକ ଉତ୍ସାହରେ ଆଗେଇଯିବା ହିଁ କାମ୍ୟ । ଝୁଣ୍ଟି ପଡ଼ିଲେ ବୋଲି କ'ଣ ବାଟଚଲା ଛାଡ଼ିଦେବା ? ବାଟଚଲା ଛାଡ଼ି ଦେଲେ ତ ଆମେ

ଅଟକିଯିବା, ଆମେ ଅଗ୍ରଗତି କରିବାକୁ ଆସିଛୁ, ଅଟକି ଯିବାକୁ ନୁହେଁ । ଯିଏ ଯିଏ ବଡ଼ ମଣିଷ ହୋଇଛନ୍ତି ସିଏ ବାଟରେ ଅଟକି ନାହାନ୍ତି କେତେଥର ଅସଫଳ ହୋଇ ମଧ୍ୟ ଜନ୍ ବୟେଡ଼ ଅଟକି ନାହାନ୍ତି ଦୂରଦର୍ଶନର ଉଦ୍ଭାବନ ଦିଗରେ । ଅଟକି ଯାଇ ନାହାନ୍ତି ଥମାସ୍ ଏଡିସନ୍ କେତେଥର ଅସଫଳ ହୋଇ ମଧ୍ୟ ଗ୍ରାମ ଫୋନ ଉଦ୍‌ଭାବନରେ । କେତେ ବୈଜ୍ଞାନିକ କେତେ ସାହିତ୍ୟିକ କେହି ବାଟରେ ଅଟକି ଯାଇନାହାନ୍ତି, ଆଗକୁ ଆଗକୁ ଯାଇ ଲକ୍ଷ୍ୟସ୍ଥଳରେ ପହଞ୍ଚିଛନ୍ତି । ବିଶ୍ୱକବି ରବୀନ୍ଦ୍ରନାଥ ସ୍ୱରଚିତ ଗୀତିଗୁଚ୍ଛ 'ଗୀତାଞ୍ଜଳି'କୁ ବାରମ୍ବାର ସଂଶୋଧନ କରିଛନ୍ତି । ସେଇ ସଂଶୋଧିତ 'ଗୀତାଞ୍ଜଳି' ଆଣି ଦେଇଛି କବିଙ୍କୁ ବିଶ୍ୱବିଖ୍ୟାତ ନୋବେଲ ପୁରସ୍କାର ପ୍ରାପ୍ତିର ଦୁର୍ଲଭ ଗୌରବ । ଶ୍ରୀଅରବିନ୍ଦ ସ୍ୱରଚିତ ସାବିତ୍ରୀ ମହାକାବ୍ୟକୁ ବାରମ୍ବାର ସଂଶୋଧନ କରିଛନ୍ତି ।

ବର୍ତ୍ତମାନର ସମୟ ଜଗତୀକରଣର ସମୟ, ବିଶ୍ୱୀକରଣର ଯୁଗ । ଏତେବେଳେ ଆମେ ନିଜ ଭିତରେ ନିଜେ ବାନ୍ଧି ହୋଇ ରହିପାରିବା ନାହିଁ ଅଥବା ନିଜକୁ ଛାଡ଼ି ଦେଇ ଛିନ୍ନ ମୂଳ ହୋଇ ଭାସି ବୁଲିବା ନାହିଁ । ନିଜକୁ ନିଜ ସ୍ଥିତିରେ ରଖି ଚେତନାରେ ବିଶ୍ୱବ୍ୟାପ୍ତ ହୋଇଯିବା ହିଁ ଯଥାର୍ଥରେ ବିଶ୍ୱଗ୍ରାମ (ଗ୍ଲୋବାଲଭିଲେଜ) ଗଠନର ମୂଳକଥା । ନିଜ ଭିତରେ ବିଶ୍ୱକୁ ଏବଂ ବିଶ୍ୱଭିତରେ ନିଜକୁ ଦେଖିବାର ମାନସିକତା ହିଁ ଯଥାର୍ଥ ମାନସିକତା । ନିକଟକୁ ଛାଡ଼ି ନୁହଁ ନିକଟକୁ ନେଇ ଦୂରକୁ ପ୍ରସରି ଯିବାହିଁ ଯଥାର୍ଥ ବିଶ୍ୱନାଗରିକତ୍ୱ, ଯଥାର୍ଥ ବିଶ୍ୱଚେତନା । ଯାହାକୁ ଉତ୍କଳମଣି ଗୋପବନ୍ଧୁ କହିଥିଲେ-'ଜାତୀୟ ମମତା ବିଶ୍ୱଜନପ୍ରୀତି/ଉତ୍କଳବାସୀର ହେଉ ଏହା ନୀତି ।'

ଅତଏବ ଆମେ ଆମ ମାଟିରେ ଥାଉ ଅଥବା ବିଦେଶ ମାଟିରେ ଥାଉ କିଛିଯାଏ ଆସେ ନାହିଁ । ଆମେ ଆମ ଚେତନାରେ ରହି ସମଗ୍ର ବିଶ୍ୱପ୍ରତି ଶ୍ରଦ୍ଧା ରଖିବା । ବିଜ୍ଞାନର ତତ୍ତ୍ୱ ଓ ପ୍ରଯୁକ୍ତି ବିଦ୍ୟା ଆମପାଇଁ ଅଭିନନ୍ଦନୀୟ । ଆମ ଦେଶର ଆଧ୍ୟାତ୍ମିକତା ସହ ତାକୁ ମିଳାଇ ମିଶାଇ ଆମେ ରଖିପାରିବା । ଫଳସ୍ୱରୂପ ଆମେ ଏକ ସମୟରେ ଆମର ଓ ସମଗ୍ର ବିଶ୍ୱର ହୋଇପାରିବା । ତାହାହିଁ ଯଥାର୍ଥ ଜଗତୀକରଣ, ବିଶ୍ୱ ଗ୍ରାମଗଠନର ମାର୍ମିକ ପ୍ରକ୍ରିୟା । ଆମେ ନିଜକୁ ଭୁଲିବା ନାହିଁ ଅଥବା ବିଶ୍ୱକୁ ଭୁଲିବା ନାହିଁ ବରଂ ଆମେ ହୋଇଯିବା ଉଭୟ ଭିତରେ ଏକ ସୁବର୍ଣ୍ଣସୂତ୍ର । କୁସଂସ୍କାର ନୁହେଁ, ଯଦି ଆମ ସଂସ୍କୃତିରେ ଥିବା ଭଲଭଲ କଥାକୁ ଆମେ ଗ୍ରହଣ କରିବା ଏବଂ ବିଶ୍ୱର ଭଲଭଲ କଥାକୁ ବରଣ କରିବା ତେବେ ଆମେ ପୂର୍ଣ୍ଣ ହେବା ସଂଗେ ସଂଗେ ଏ ବିଶ୍ୱର ବିକାଶ ମଧ୍ୟ ତ୍ୱରାନ୍ୱିତ ହେବ । ସେତେବେଳେ ମହାଯୋଗୀ ଶ୍ରୀଅରବିନ୍ଦଙ୍କ ସ୍ୱପ୍ନ ସାକାର ହେବ ଯେ 'ଭାରତ ହେବ ଆଗାମୀ ଦିନରେ ସମଗ୍ର ବିଶ୍ୱର ଗୁରୁ, କାରଣ ଭାରତ ହେଉଛି ପୃଥିବୀର ଆତ୍ମା ।' ଏ ଦିଗରେ ଆମ ପ୍ରତି ଅର୍ଥାତ ଆମ ସଂସ୍କୃତି ପ୍ରତି ଆମର ଶ୍ରଦ୍ଧା ସର୍ବପ୍ରଥମ ଆବଶ୍ୟକତା ।

□□

# ଆଜିର କଥା ଆମରି କଥା

ଯେଉଁଠାରେ ସମ୍ବାଦପତ୍ର ଖୋଲିଦେଲେ ପଢ଼ିବାକୁ ମିଳେ ଓ ବୈଦ୍ୟୁତିକ ଗଣମାଧ୍ୟମରୁ ଜାଣିବାକୁ ମିଳେ ଯେ ହଟ୍ଟଗୋଳରେ ସଂସଦ ଅଚଳ, ସଂସଦର ଘଣ୍ଟାଘଣ୍ଟା ମୂଲ୍ୟବାନ ସମୟର ଅପଚୟ, ବ୍ୟାଙ୍କରୁ ଲୁଟି ନେଲେ ଲୁଟେରା କୋଟିକୋଟି ଟଙ୍କା, ଆତଙ୍କବାଦୀଙ୍କ ଲ୍ୟାଣ୍ଡମାଇନ ବିସ୍ଫୋରଣରେ ବହୁ ସୈନିକମୃତ, ନାବାଳିକାକୁ ଧର୍ଷଣ ଅପରାଧରେ ଏକାଧିକ ବ୍ୟକ୍ତି ଗିରଫ, ଚବିଶ ଘଣ୍ଟାରେ ତିନିଥର ଏନକାଉଣ୍ଟର, ପଦାଧିକାରୀଙ୍କ ଲାଞ୍ଚକାରବାର, ସରପଞ୍ଚଙ୍କର ପେଞ୍ଚପାଞ୍ଚ ନୀତି, ପଚିଶି ବର୍ଷ ହେଲା ତଦନ୍ତ ସରୁନି ଇତ୍ୟାଦି ସେଠାରେ କିଏ କାହାକୁ କ'ଣ କହିବ ?

ଅନ୍ୟ କେତେକ ଦେଶର କଥା ଶୁଣିଲାବେଳେ ଅର୍ଥାତ ସେ ଦେଶର ଦଣ୍ଡନୀତି, ଶୃଙ୍ଖଳାଜ୍ଞାନ, ରାସ୍ତାଘାଟର ଶୃଙ୍ଖଳାବ୍ୟବସ୍ଥା, ଜିନିଷଟିଏ ହଜିଗଲେ ମିଳିଯିବାର ସୁବ୍ୟବସ୍ଥା, ଚୋରି ଡକାୟତି ନଥିବା କଥା, ନିଜ ଦେଶକୁ ଗୁରୁତ୍ୱ ଦେବା ସହିତ ଦେଶର ସଂପତ୍ତିର ସୁରକ୍ଷା ଉପରେ ଗୁରୁତ୍ୱ ଦେବା କଥା ଶୁଣିଲାବେଳେ ମନରେ ଭାବାନ୍ତର ଆସେ । ବୁଝିହୁଏ ଯେ ଜୀବନ ସେଠାରେ ଏତେ ବେଶୀ ଦୁଶ୍ଚିନ୍ତାଗ୍ରସ୍ତ ନୁହେଁ ଯେତେ ଦୁଶ୍ଚିନ୍ତା ଜର୍ଜରିତ ଆମ ଦେଶରେ । ହିସାବରୁ ଜଣାଯାଇଛି ଯେ ଭାରତରେ ଦୁଶ୍ଚିନ୍ତା, ଦୁର୍ନୀତି ଓ ହତାଶା ଅଧିକ ।

ଏସବୁ କଥାର କାରଣ ଖୋଜିବାକୁ କାହାର ବେଳ ନାହିଁ । ପ୍ରତ୍ୟେକ ନିଜ ନିଜର ଲାଭକ୍ଷତିର ଅଙ୍କକଷାରେ ବ୍ୟସ୍ତ । ଟିକିଏ ସୁବିଧା ପାଇଲେ ଅନ୍ୟକୁ ଠକି ଦେବା, ଅନ୍ୟକୁ ହଇରାଣରେ ପକାଇବା । ଦୁର୍ନୀତିକୁ ଚତୁରପଣିଆ ବୋଲି ବିଚାର କରିବାର ମନୋବୃତ୍ତି କଥା ଭାବିଲେ ମନରେ ଦୁଃଖ ଆସେ । ବିଶୃଙ୍ଖଳାର ବାସସ୍ଥାନ ଆମ ପରିବେଶ । ଟିକିଏ

ଦୂରତାରେ ଡଷ୍ଟବିନ ଥିଲେ ମଧ୍ୟ ଘରର ଅଳିଆ ଅସନା ନିୟମିତ ନିଜ ଦାଣ୍ଡରେ ପକାଇଲେ କେହି କିଛି କହିବାର ନାହିଁ, କାରଣ ଦେଶ ଆମର ସ୍ୱାଧୀନ ହୋଇଛି, ଆମେ ସ୍ୱାଧୀନତା ପାଇଛୁ । ସ୍ୱାଧୀନତାର ଅସଦ୍‌ବ୍ୟବହାରର ଅନ୍ୟନାମ ହେଉଛି ସ୍ୱେଚ୍ଛାଧୀନତା, ଏକଥାକିଏ କାହାକୁ କହିବ ?

ଘରେ ଓ ବାହାରେ ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ କଥା କହିପାରନ୍ତି ନାହିଁ । ଆପଣମାନେ ଭାବୁଥିବେ ଯେ ବୋଧ ହୁଏ ସେମାନେ ମୂକ ଅଥବା ଖନା ବୋଲି । ନା-କଥାଟି ସେପରି ନୁହେଁ । ସେମାନେ କଥା କିପରି କହିବାକୁ ହୁଏ ଜାଣନ୍ତି ନାହିଁ । ସେମାନେ କହୁ କହୁ କଥାଠାରୁ ଅକଥା ଅର୍ଥାତ ଅବାଗ କଥା ଅଧିକ କହନ୍ତି । ସେମାନଙ୍କର ଭାବ ତ ଦୂରର କଥା ଭାବନା ମଧ୍ୟ ଉଚିତ ଅର୍ଥରେ ନଥାଏ । ଭାବନା ସ୍ଥାନରେ ଥାଏ ଦୁର୍ଭାବନା । ଲୋକ ଅଛନ୍ତି ସେମାନେ କଥା ଶୁଣିପାରନ୍ତି ନାହିଁ । ଏହାର ଅର୍ଥ ନୁହେଁ ଯେ ସେମାନେ କାଲା, ପ୍ରକୃତରେ ସେମାନଙ୍କର ଶୁଣିବାପାଇଁ ଧୈର୍ଯ୍ୟ ନଥାଏ, ସର୍ବଦା ଅସ୍ଥିର ଏବଂ ନିଜକୁ ନେଇ ସର୍ବଦା ବ୍ୟସ୍ତ ସେମାନେ । ଆଉ କାହାର ସୁଖଦୁଃଖର କଥା ଶୁଣିବାକୁ ତାଙ୍କର ଆଗ୍ରହ ନଥାଏ, ତେଣୁ ସମୟ ନଥାଏ । ସେମାନଙ୍କୁ ଆଦର ଟିକିଏ କଲେ ସେମାନେ ତାକୁ ଖୋସାମତି ବୋଲି ଭାବନ୍ତି, ଫୁଲିଫୁଲି ଫାଟିପଡନ୍ତି ବୃଥା ଅହଂକାରରେ । ସେମାନଙ୍କର ଉପକାର କଲେ ସେମାନେ କ୍ଷତିକରନ୍ତି, ଟିକିଏ ସୁଯୋଗ ପାଇଲେ ଫଣାଟେକି ଚୋଟ ମାରନ୍ତି ।

ଏପରି ଅନେକ ଲୋକ ଅଛନ୍ତି ସେମାନେ କହନ୍ତି ଯାହା ତାହା କରନ୍ତି ନାହିଁ, କରନ୍ତି ଯାହା ତାହା କହନ୍ତି ନାହିଁ । ଅର୍ଥାତ୍ ଉଚ୍ଚାରଣ ଏବଂ ଆଚରଣରେ ସେମାନଙ୍କର ଆକାଶ ପାତାଳ ତଫାତ । ନିଜର ସ୍ୱାର୍ଥସିଦ୍ଧି ହିଁ ତାଙ୍କ ଜୀବନର ବ୍ରତ । ନିଜେ ଦେଉଥିବା କଥାକୁ ନିଜେ ରଖିପାରନ୍ତି ନାହିଁ । ଏତେ ସ୍ୱାର୍ଥପର ଓ ସୁବିଧାବାଦୀ ସେମାନେ, ତାହା କଳ୍ପନା କରି ହେବ ନାହିଁ । ସେମାନେ ଧରାପଡ଼ିଯାଆନ୍ତି ମାତ୍ର ଜାଣନ୍ତି ନାହିଁ ଯେ ଧରାପଡ଼ି ଗଲେଣି ବୋଲି ।

ଅନ୍ୟର କ୍ଷତି ଚିନ୍ତାରେ ଅନେକ ଲୋକ ବ୍ୟସ୍ତ ଥାଆନ୍ତି । ଏହାକୁ ଜୀବନର ଚରମ ପୁରୁଷାର୍ଥ ବୋଲି ମନେ କରନ୍ତି । ସିଧାସିଧା ଘଟଣା, ସାଧାସିଧା ଚିନ୍ତାର ଶୈଳୀ ସେମାନଙ୍କୁ ସୁଖ ଲାଗେ ନାହିଁ । ସେମାନେ ଚାହାନ୍ତି ଜୀବନରେ ଜଟିଳତା ତଥା ସମସ୍ୟା ବହୁଳତା । ଅନ୍ୟ ଅର୍ଥରେ ସଫାପାଣି ତାଙ୍କୁ ସୁଖ ଲାଗେ ନାହିଁ, ପଙ୍କୁଆ ପାଣି ତାଙ୍କୁ ସୁଖ ଲାଗେ ।

ବହୁତ ଲୋକ ଅଛନ୍ତି ସେମାନେ ଯେନତେଣ ପ୍ରକାରେଣ ସୁଖ ଚାହାନ୍ତି । ପଞ୍ଚଇନ୍ଦ୍ରିୟ ତୃପ୍ତି ମାଧ୍ୟମରେ ଜୀବନ ସାର୍ଥକ ହୁଏ ବୋଲି ଧାରଣା ରଖିଥାନ୍ତି । ଶାନ୍ତି ସେମାନେ ଖୋଜନ୍ତି ନାହିଁ, କାରଣ ଶାନ୍ତିର ମହତ୍ତ୍ୱ ସେମାନେ ବୁଝନ୍ତି ନାହିଁ । ଅଧିକନ୍ତୁ ସୁଖ ଓ ଶାନ୍ତି ଏକାକଥା ବୋଲି ସେମାନେ ଭାବିଥାନ୍ତି । ପ୍ରକୃତରେ ସୁଖ ଓ ଶାନ୍ତି ଅଲଗା ଅଲଗା କଥା । ସୁଖଠାରୁ ଶାନ୍ତି

ଅଧିକ ସୂକ୍ଷ୍ମ । ସୁଖ ଇନ୍ଦ୍ରିୟ ଗ୍ରାହ୍ୟ ମାତ୍ର ଶାନ୍ତି ମନଦ୍ୱାରା ଅନୁଭୂତ ହୁଏ । ଶାନ୍ତିର ଉପଲବ୍ଧି ଚେତନାନ୍ତରରେ ଘଟିଥାଏ । ସେଥିପାଇଁ ନିଃସ୍ୱାର୍ଥପର ତଥା ଅନ୍ୟମାନଙ୍କ ପ୍ରତି ସଦିଚ୍ଛା ସଂପନ୍ନ ହେବା ଆବଶ୍ୟକ । ଅନ୍ୟର କ୍ଷତିଚିନ୍ତା କରି କେହି କେବେହେଲେ ଶାନ୍ତି ପାଇପାରେ ନାହିଁ । ନ ଜାଣିବା ଲୋକମାନେ ସୁଖକୁ ଶାନ୍ତି ବୋଲି ଭାବିଥାନ୍ତି । ଓଟ ନାଗଫେଣି କଣ୍ଟା ଖେବାଇବା ନ୍ୟାୟଟି ତାଙ୍କ ପାଖରେ ସତ୍ୟ ହୁଏ । ଓଟ ମରୁଭୂମିରେ ନାଗଫେଣିର କଣ୍ଟା ଖେବାଏ । ଖେବାଇଲା ବେଳେ ନାଗଫେଣିର କଣ୍ଟା ବାଜି ମାଢ଼ିରୁ ରକ୍ତଝରେ ଏବଂ ଓଟ ସେହି ରକ୍ତକୁ ଖାଇଲା ବେଳେ ଭାବୁଥାଏ କଣ୍ଟାରୁ ରସ ଝରୁଅଛି ବୋଲି । ମଣିଷ ସେପରି ଭ୍ରମରେ ପଡ଼ି ଶାନ୍ତିକୁ ସୁଖ ବୋଲି ଭାବୁଥାଏ ଏବଂ ଗ୍ରହଣ କରୁଥାଏ ।

ଏତେ ଅକଥା ସହିତ ଆହୁରି ଅନେକ ଅକଥାରହିଛି ମଣିଷର ଜୀବନରେ ତଥା ସାମାଜିକ ଜୀବନରେ ଯାହାର ମୂଳକଥାଟି ହେଉଛି ଅଶିକ୍ଷା । ଶିକ୍ଷା ବାଟ ଦେଖାଏ, ଜୀବନକୁ ମୂଲ୍ୟ ଦିଏ, ଜଗତକୁ ବୁଝିବାକୁ ଶକ୍ତି ଦିଏ,ଜୀବନ ପଥରେ ଚାଲିବାକୁ ଶକ୍ତି, ସାହସ ଓ ସଚେତନତା ପ୍ରଦାନ କରେ । ଶିକ୍ଷା କହିଲେ ସମ୍ବାଦ ସଂଗ୍ରହ କେବଳ ନୁହେଁ । ଏହା ସହିତ ଚରିତ୍ର ଗଠନ କଥାଟି ମଧ୍ୟ ସଂଯୁକ୍ତ । ସ୍ଥାନ, କାଳପାତ୍ର ଅନୁସାରେ ବ୍ୟବହାର କରିବା ଓ କଥା କହିବାର କଳା ଶିଖିବା ଏକାନ୍ତ ଆବଶ୍ୟକ । ଶିକ୍ଷାମାର୍ଜିତ କରେ ଚିନ୍ତା ଓ ଚେତନାକୁ । ଜୀବନର ସାର୍ଥକତା ଆଣିବା ଦିଗରେ ଜନଜୀବନକୁ ପ୍ରେରଣା ଦିଏ ଓ ଶକ୍ତି ଦିଏ ।

ଆଜିକାଲି ଅସଲି ଶିକ୍ଷା ଉପରେ ଗୁରୁତ୍ୱ ନାହିଁ । ଶିକ୍ଷାର ବାହାର ବ୍ୟବସ୍ଥା ଗୁଡ଼ିକୁ ବଢ଼ାଇଦେଲେ ଯଥେଷ୍ଟ ନୁହେଁ, ଏହାସହିତ ପିଲାଟିର ଚାରିତ୍ରିକ ମହତ୍ତ୍ୱର ସମନ୍ୱୟ ଏକାନ୍ତ ଜରୁରୀ । ଶିକ୍ଷା ହେଉଛି ମେରୁଦଣ୍ଡ ସ୍ୱରୂପ । ଶିକ୍ଷାର ପଦ୍ଧତିର ପରିବର୍ତ୍ତନଠାରୁ ଶିକ୍ଷାର ଗୁଣାତ୍ମକ ମୂଲ୍ୟ ବୃଦ୍ଧି ଏକାନ୍ତ ଆବଶ୍ୟକ । ଡିଗ୍ରୀ ଡିପ୍ଲୋମା ପ୍ରକୃତରେ ଶିକ୍ଷାର ମହତ୍ତ୍ୱର ମାପକାଠି ନୁହେଁ । ଡିଗ୍ରୀ ଡିପ୍ଲୋମା ରହୁ ମାତ୍ର ଏହା ସହିତ ରହୁ ମୂଲ୍ୟବୋଧର ଶିକ୍ଷା, ସଂସ୍କୃତିର ଶିକ୍ଷା, ଦେଶାତ୍ମବୋଧର ଶିକ୍ଷା ଇତ୍ୟାଦିଇତ୍ୟାଦି ।

ଧନ ହୋଇଛି ବର୍ତ୍ତମାନ ମଣିଷର ପ୍ରଭୁ, କ୍ଷମତା ହୋଇଛି ମଣିଷର ପ୍ରଭୁ । ଧନ ରହୁ ମାତ୍ର ମଣିଷର ପ୍ରଭୁ ନହେଉ, କ୍ଷମତା ରହୁ, ମାତ୍ର ତାହା ମଣିଷର ପ୍ରଭୁ ନହେଉ । ବାହାର ଜୀବନ ସହିତ ଭିତର ଜୀବନ ଅର୍ଥାତ ମଣିଷ ପଣିଆର ଜୀବନର ମିଶ୍ରଣ ହେଉ, ଏହାହିଁ ସାଂପ୍ରତିକ ଅନୁଚିନ୍ତା ।

❑❑

# ସେତୁବନ୍ଧ ପୂର୍ଣ୍ଣ ହେବ

ଆମ ଜୀବନରେ ଯେତେକଥା ଅଛି ତାହାର ଏକ ଅସ୍ତିଦିଗ ଅଛି ପୁଣି ଏକ ନାସ୍ତିଦିଗ ରହିଛି । ତା'ର କାରଣ ହେଉଛି ଦ୍ୱୈତତତ୍ତ୍ୱ ଦ୍ୱାରା ଜୀବନ ନିୟନ୍ତ୍ରିତ, ମଣିଷର ମନ ନିର୍ମିତ । ଦୁଇଟି କଥା ଯଥା-ସୁଖ ଓ ଦୁଃଖ, ସୁବିଧା ଓ ଅସୁବିଧା, ଭଲ ଓ ମନ୍ଦ ଲାଭ ଓ କ୍ଷତି, ଶାନ୍ତି ଓ ଅଶାନ୍ତି,ଜ୍ଞାନ ଓ ଅଜ୍ଞାନ, ଭୁଲ ଓ ଠିକ୍ ଇତ୍ୟାଦି ଇତ୍ୟାଦି କଥାକୁ ନେଇ ଜୀବନ ପରିଚାଳିତ ହେଉଛି ।

କେବଳ ଭଗବାନ ଏକ ଅଦ୍ୱିତୀୟ । ସେ କେବଳ ଶାନ୍ତିର ପ୍ରତୀକ, ଆନନ୍ଦର ପ୍ରତୀକ, ଆଲୋକର ପ୍ରତୀକ, ସର୍ବୋପରି ପୂର୍ଣ୍ଣତାର ପ୍ରତୀକ । ତାଙ୍କ ଭିତରେ ଅଶାନ୍ତି, ଦୁଃଖ, ଅନ୍ଧାର ଅଥବା ଅପୂର୍ଣ୍ଣତା ନାହିଁ । ସବୁ ତାଙ୍କର ସୁଧାମୟ ଓ ମଧୁମୟ । ସେ ଅସ୍ତିର ପ୍ରତୀକ,ନାସ୍ତିର ନୁହେଁ । ସେ ମଧୁରତାର ପ୍ରତୀକ, ରୁକ୍ଷତାର ନୁହେଁ, ସେ ଜ୍ଞାନର ପ୍ରତୀକ, ଅଜ୍ଞାନତାର ନୁହେଁ ।

ଆମ ଜୀବନର ପ୍ରତ୍ୟେକ କଥାର ଭଲ ଦିଗ ରହିଛି ପୁଣି ମନ୍ଦ ଦିଗ ମଧ୍ୟ ରହିଛି । ଉଦାହରଣ ସ୍ୱରୂପ ଧନର କଥା ଦେଖାଯାଉ । ଧନ ଏକାନ୍ତ ଆବଶ୍ୟକ, ଏହା ଏକ ଶକ୍ତି, ପାର୍ଥିବ ଜୀବନ ପାଇଁ ତାହା ଅତ୍ୟନ୍ତ ମୂଲ୍ୟବାନ । ମାତ୍ର ଏହାର ଆଧିକ୍ୟ ଅସୁବିଧାରେ ପକାଏ, ଏହାର ଅପବ୍ୟବହାର ଆମକୁ ବାଟବାଉଳା କରେ । ଅଧିକ ହେଲେ ଆହୁରି ଅଧିକ ଲୋଭ ବଢେ, କାମନାର ଅଗ୍ନିଶିଖା ଅଧିକ ଉଚ୍ଚତାକୁ ଉଠେ । ନିଜକୁ ଅନ୍ୟଠାରୁ ବଡ଼ ବୋଲି ଓ ଭିନ୍ନ ବୋଲି ମନେ ହୁଏ । ଧନ ବଢ଼ିଲେ କ୍ଷମତା ପାଇବାର ଲାଳସା ବଢ଼େ । ଅହଂକାର ବଢ଼େ ଓ ଅନ୍ୟମାନଙ୍କୁ ହୀନ ଦୃଷ୍ଟିରେ ଦେଖିବାକୁ ବେଳେବେଳେ

ଇଚ୍ଛା ହୁଏ । ଏହା ଧନର ପ୍ରଭାବ ନୁହେଁ, ମନର ପ୍ରଭାବ । ଧନ ଆଦୌ କ୍ଷତିକାରକ ନୁହେଁ, ଧନର ଅପବ୍ୟବହାର ହିଁ ଯଥାର୍ଥରେ କ୍ଷତିକାରକ । ଧନ ସହିତ ଜ୍ଞାନ ଥିଲେ ଏପରି ଅବସ୍ଥା ଆସେ ନାହିଁ, ଜ୍ଞାନ ନଥିଲେ ଏପରି ଅବସ୍ଥା ହିଁ ଆସିଥାଏ ।

କ୍ଷମତା ମଧ୍ୟ ଧନ ପରି ଏକ ବିଶିଷ୍ଟ ଉପାଦାନ । କ୍ଷମତା ବଳରେ ଜଣେ ଆତ୍ମସଚେତନ ହୋଇପାରେ । କ୍ଷମତା ଦାୟିତ୍ୱ ସଂପନ୍ନ କରାଏ, କର୍ତ୍ତବ୍ୟ ସଚେତନ କରାଏ । ଅନ୍ୟର କଲ୍ୟାଣ ନିମନ୍ତେ କ୍ଷମତା ଲାଗିପାରେ, ଅନ୍ୟର କ୍ଷତି ପାଇଁ ମଧ୍ୟ ପ୍ରଯୁକ୍ତ ହୋଇପାରେ । ସବୁ ନିର୍ଭର କରେ ଆମର ବ୍ୟବହାର ବିଧି ଉପରେ । ସମାଜର କିଛି ଉନ୍ନତିକର କାର୍ଯ୍ୟରେ ଏହା ଲାଗିଲେ ଯଥାର୍ଥ ହୁଏ । ନିଜର ସୁଖ ସୁବିଧାପାଇଁ କ୍ଷମତା ଲାଗିଲେ ତାହା କ୍ଷମତାର ଅପବ୍ୟବହାରରେ ଗଣା ହୁଏ । ଅନ୍ୟର କ୍ଷତିକଳ୍ପେ କ୍ଷମତା ଲାଗିଲେ ତାହା ପୂତିଗନ୍ଧମୟ ହୋଇଯାଏ । ବ୍ୟବହାର କରି ଜାଣିଲେ କ୍ଷମତା ବଳରେ ଅନ୍ୟମାନଙ୍କ ପାଇଁ ବହୁତ କିଛି ସୁବଧା କରାଯାଇପାରେ ମାତ୍ର ବ୍ୟବହାର କରି ନ ଜାଣିଲେ ସର୍ବନାଶ । ଯଶ ଓ ପ୍ରଶଂସାର କଥା ସେହିପରି । ଯଶ ପ୍ରଶଂସାର ଅସଲ ଅର୍ଥଟି ହେଉଛି ଅନ୍ୟର ଶ୍ରଦ୍ଧାଶୀଳ ସ୍ୱୀକୃତି । ତାହା ଆମକୁ ଶୃଙ୍ଖଳିତ ଓ ମାର୍ଜ୍ଜିତ କରେ, ସମାଜରେ ଆଦର୍ଶ ସ୍ଥାନୀୟ ବ୍ୟକ୍ତି ବୋଲି ଚିହ୍ନିତ କରେ । ଆତ୍ମସମ୍ମାନ ସେତେବେଳେ ସବୁଠାରୁ ବଡ଼କଥା ବୋଲି ବୁଝିହୁଏ । ଅଲିଖିତ ଭାବରେ ସାମାଜିକ ଜୀବନର ଜଣେ ବିଶିଷ୍ଟ ବ୍ୟକ୍ତି ବୋଲି ଭାବନା ଆସେ । ଅନ୍ୟ ପକ୍ଷରେ ଯଶ ପ୍ରଶଂସାର ଅପବ୍ୟବହାର ଦ୍ୱାରା ଜଣେ ନିଜକୁ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ବୋଲି ବିଚାରେ ଏବଂ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବି କରେ । ସମାଜରେ ଉଚ୍ଚ ଆସନ ପାଇବାକୁ ଲାଳାୟିତ ହୁଏ । ଫଳତଃ ସେ ବଡ଼ ନହୋଇ ସାନ ହୋଇଥାଏ । ଏହା ଯଶ ପ୍ରଶଂସାର କ୍ରିୟା ନୁହେଁ, ଏହା ଅହଂକାରର କ୍ରିୟା । ଭଲ କଥାକୁ ମନ୍ଦ ବାଟରେ ନେବା ହିଁ ଅହଂକାରର କାର୍ଯ୍ୟ ।

ବର୍ତ୍ତମାନ ବିଦ୍ୟାର କଥା ଦେଖାଯାଉ । ବିଦ୍ୟା ଆଣେ ବିନୟ । ଏହା ଶାସ୍ତ୍ରମାନଙ୍କରେ କୁହାଯାଇଛି । ବିଦ୍ୟା ଯୋଗୁଁ ମନୁଷ୍ୟର ମହତ୍ତ୍ୱ ବଢ଼େ । ବିଦ୍ୱାନ ସର୍ବତ୍ର ପୂଜାପାଏ, ଦେଶ ବିଦେଶରେ ସମ୍ମାନିତ ହୁଏ । ବିଦ୍ୟା ବଢ଼ାଏ ଚେତନା, ଜୀବନ ଓ ଜଗତ ସମ୍ବନ୍ଧରେ ଦିଏ ଯଥାର୍ଥ ଦୃଷ୍ଟିଭଂଗୀ । ବିଦ୍ୟାବଳରେ ଜଣେ ସମାଜକୁ କିଛି କଥା ଦେଇ ଦେବାକୁ ମନ ବଳାଏ । ବିଦ୍ୟାଯୋଗୁଁ ସମାଜର ପ୍ରତି ଦିଗ ସମୃଦ୍ଧ ହୁଏ । ପୁଣି ଏହି ବିଦ୍ୟା ହୁଏ ଅତ୍ୟନ୍ତ କ୍ଷତିକାରୀ ଯଦି ଏହାର ଅପବ୍ୟବହାର କରାଯାଏ । ଗର୍ବ ଅହଂକାର ତଥା ଔଦ୍ଧତ୍ୟ ଆସିଲେ ବିଦ୍ୟାର କାର୍ଯ୍ୟକାରିତା ନଷ୍ଟ ହୋଇଯାଏ । ଅମୃତ ହାଣ୍ଡିରେ ଟୋପାଏ ବିଷପଡ଼ି ତାକୁ ବିଷାକ୍ତ କରି ଦେଲାପରି ସବୁ ବିଷାକ୍ତ ହୋଇଯାଏ ।

ବୁଦ୍ଧି କ୍ଷେତ୍ରରେ ମଧ୍ୟ କଥାଟି ସେହିପରି । ବୁଦ୍ଧି ବଳରେ ବୈଜ୍ଞାନିକ ଉଦ୍ଭାବନ, ଆବିଷ୍କାର ଘଟିଥାଏ । ବୁଦ୍ଧିର ବିକାଶ ଓ ବିକଶିତ ବୁଦ୍ଧିର ପ୍ରୟୋଗ ହିଁ ମାନବ ପ୍ରଗତିର ମୂଳ ହେତୁ । ବୁଦ୍ଧି ଆଣେ ଜିଜ୍ଞାସା, ଜିଜ୍ଞାସାରୁ କଳ୍ପନା, କଳ୍ପନାରୁ ବାସ୍ତବତା ଓ ବାସ୍ତବତାରୁ ସମୃଦ୍ଧି । ବୁଦ୍ଧି ମଣିଷକୁ ପକ୍ଷୀପରି ଆକାଶରେ ଉଡ଼ାଇପାରିଛି, ପାଣିରେ ମାଛ ପରି ପହଁରିବାର ସୁଯୋଗ ଦେଇଛି । ବୁଦ୍ଧି ପୁଣି ସାରା ପୃଥିବୀର ଦୂରତା କମାଇ ଦେଇଛି । ନିଜ ଘରେ ସାରା ପୃଥିବୀକୁ ଆଣି ରଖି ଦେଇଛି । ଦୂର ଆତ୍ମୀୟର ଇଚ୍ଛା ମାତ୍ରକେ ଦର୍ଶନ କରାଇଛି । ଏହି ବୁଦ୍ଧି ପୁଣି ନକାରାତ୍ମକ ବାଟରେ ଯାଇ ପ୍ରଳୟଙ୍କରୀ ହୋଇପାରୁଛି । ଘଡ଼ି କରେ ସ୍ୱର୍ଣ୍ଣ ଲଙ୍କା ଧ୍ୱଂସ କରି ଦେଉଛି ଏହି ବୁଦ୍ଧିର ଅସଦ୍‌ବ୍ୟବହାର । ଆତଙ୍କବାଦୀର ବୋମାମାଡ଼ ହେଉ ଅଥବା କପଟ କୂଟ ବୁଦ୍ଧିର ପ୍ରୟୋଗ ହେଉ ତହିଁରେ ରହିଛି ବୁଦ୍ଧିର ନକାରାତ୍ମକ ଦିଗ ।

ଜୀବନରେ ଦୁଃଖର କଥା ବିଚାରକୁ ନେଲେ ଜଣାଯାଏ ଯେ ଦୁଖ କେତେ କେତେ ମଣିଷଙ୍କୁ ଭାଙ୍ଗିଦିଏ ଆଉ କେତେ କେତେ ମଣିଷଙ୍କୁ ଟାଣ କରିଦିଏ । ସହନଶକ୍ତି ବଢ଼ାଏ, ମଣିଷକୁ ନିଜକୁ ନିଜେ ଅତିକ୍ରମ କରିବାକୁ ସାହସ ଦିଏ । ଜୀବନକୁ ବୁଝିବାକୁ, ଜଗତକୁ ଜାଣିବାକୁ ଶକ୍ତି ଦିଏ ଦୁଃଖ, ଅନୁଭୂତି ସଂପନ୍ନ କରେ ଦୁଃଖ । ଦୁଃଖ ତ ସମସ୍ତଙ୍କର ଅଛି, ଏମିତି କେହି ନାହିଁ ଯାହାର ଆଦୌ ଦୁଃଖ ନାହିଁ । କାହା ଦୁଃଖ କିପରି ଓ କାହିଁକି, ତାହା ଭିନ୍ନ କଥା । ସୁନା ସହିତ ଖାଦ ନ ମିଶିଲେ ଅଳଙ୍କାର ଗଢ଼ି ହୁଏ ନାହିଁ । ଯେପରି ସୁନା ସହିତ ଖାଦ ମିଶି ଅଳଙ୍କାର ଗଢ଼ାହୁଏ, ସେପରି ସୁଖ ସହିତ ଦୁଃଖ ମିଶି ଜୀବନ ଗଢ଼ା ହୁଏ । ମନେ ପଡ଼େ ଜଣେ ମାଆଠାରୁ ମୃତ ପୁତ୍ରଙ୍କୁ ବଞ୍ଚାଇ ଦେବାର ବାରମ୍ବାର ଅନୁରୋଧ ଶୁଣି ବୁଦ୍ଧଦେବ କହିଲେ 'ମାଆ, ମୁଁ ପୁତ୍ରକୁ ବଞ୍ଚାଇ ଦେବି ଯଦି ତୁମେ ମୁଠାଏ ସୋରିଷ ଆଣିଦେବ ତାହାଙ୍କ ଘରୁ ଯାହାଙ୍କ ଘରୁ କେହି କେବେ ମୃତ୍ୟୁବରଣ କରିନଥିବେ ।' ଦାରୁଣ ଦୁଃଖରେ ଭାଙ୍ଗି ପଡିଥିବା ମାଆ ଯାଇ ଦୁଆର ଦୁଆର ବୁଲି ଶେଷରେ ହତାଶରେ ଫେରି ଆସିଲେ, ସର୍ତ୍ତ ଅନୁସାରେ ମୁଠାଏ ସୋରିଷ ପାଇଲେ ନାହିଁ । ଠିକ୍ ସେହିପରି ଏପରି ଜଣେ କେହି ନାହିଁ ଯାହାର ଜୀବନରେ କିଛି ହେଲେ ଦୁଃଖ ନାହିଁ । ଆମକୁ ତାହା ଜଣାପଡ଼େ ନାହିଁ କାରଣ ଆମେ ନିଜକୁ ଛାଡ଼ି ଅନ୍ୟ ସମସ୍ତଙ୍କୁ ସୁଖୀ ବୋଲି ଭାବୁ । ମାତ୍ର ସେହି ମଣିଷ ନିଦା ଯିଏ ଦୁଃଖର ଲହରୀକୁ ଭାଙ୍ଗି ଆଗକୁ ଯାଇଛନ୍ତି । ତାଙ୍କର ଚିନ୍ତାଶକ୍ତି ଭିନ୍ନ ଯାହାଙ୍କଠାରୁ ଉପଦେଶ ଓ ଦିଗ୍‌ଦର୍ଶନ ଅଭିନନ୍ଦନୀୟ । ତାଙ୍କୁ ଲୋକେ ଦୁଃଖୀ ବୋଲି କହିପାରନ୍ତି, ସେ ମଧ୍ୟ ନିଜକୁ ଦୁଃଖୀ ବୋଲି ମନେ କରିପାରନ୍ତି, ମାତ୍ର ସେମାନେ ଅନ୍ୟମାନଙ୍କ ମଧ୍ୟରେ ଅନନ୍ୟ, ସେମାନେ ହେଲେ ନିଦାମଣିଷ । ସେମାନେ ଏକପ୍ରକାର ଚିନ୍ତାସିଦ୍ଧ ଓ ବାକ୍‌ସିଦ୍ଧ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏକଥା ସତ୍ୟ ଯେ ଯେଉଁକଥା ପ୍ରାଣ ଦିଏ, ସେହି କଥା ପ୍ରାଣ ମଧ୍ୟ ନେଇପାରେ । ଚିକିତ୍ସାବିଜ୍ଞାନ କ୍ଷେତ୍ରରେ ବିଶେଷତଃ ଔଷଧ ପ୍ରୟୋଗ କ୍ଷେତ୍ରରେ ଏକଥାର ମହତ୍ତ୍ୱକୁ ଅଧିକ ବୁଝାଇପାରେ । ଯେଉଁ ଔଷଧ ପ୍ରାଣରକ୍ଷା କରେ, ସେହି ଔଷଧର ଅପବ୍ୟବହାର ଅଥବା ମାତ୍ରାଧିକ ବ୍ୟବହାର ଜୀବନ ହାନି ଘଟାଇଥାଏ । ବାହ୍ୟଜଗତରେ ମଧ୍ୟ ଏପରି କଥା ଦେଖିବାକୁ ମିଳେ । ପାଣି ନହେଲେ ପଦ୍ମଫୁଲ ଫୁଟେ ନାହିଁ, ପୁଣି ସେହି ପାଣି ଅଧିକ ହେଲେ ପଦ୍ମବନ ସଢ଼ିଯାଏ । ସେହି ପାଣି ପୁଣି ଶିଶିର ଆକାରରେ ପଡ଼ି ପଦ୍ମଫୁଲକୁ ପୋଡ଼ିଦିଏ । ଏହା ଯେପରି ବାହ୍ୟ ପ୍ରକୃତି ପାଇଁ ସତ୍ୟ, ସେପରି ମଣିଷ ପ୍ରକୃତି ପାଇଁ ସତ୍ୟ । କାରଣ ମଣିଷ ହେଉଛି ପ୍ରକୃତିର ଅଂଶ, ଏକ ବିଶିଷ୍ଟ ବିଭବ । ବାହାର ପ୍ରକୃତିରୁ ଏବଂ ନିଜର ଅଭିଜ୍ଞତାରୁ ତାକୁ ବହୁକଥା ଶିଖିବାକୁ ରହିଛି । ଆମେ ଚାହିଁଲେ ଆମ ଭିତରେ ଥିବା ମନ୍ଦ ଗୁଣକୁ ଆମେ ବଦଳାଇ ପାରିବା । ବିବର୍ତ୍ତନ ଧାରାରେ ଚେତନାର ଅଗ୍ରଗତି ଘଟିଚାଲିଛି । କାଲି ଯାହା ଅସମ୍ଭବ ଲାଗୁଥିଲା, ଆଜି ତାହା ସମ୍ଭବ ହୋଇଛି । ଆଜି ଯାହା ଅସମ୍ଭବ ଲାଗୁଛି, କାଲି ତାହା ସମ୍ଭବ ହେବ । ପରଦାର ଅନ୍ତରାଳରେ ଥିବା ବିଶ୍ୱଶକ୍ତି ତାହା କରିବ । ସେହି ଶକ୍ତି ଆଗାମୀ ଦିନରେ ମଣିଷକୁ ଦିଗ୍‌ଦର୍ଶନ ଦେବ, ଏ ପୃଥିବୀକୁ ନୂଆ ବାଗରେ ସଜାଡ଼ି ଦେବ । ସେତେବେଳେ ଧନ, କ୍ଷମତା, ଯଶ, ବିଦ୍ୟା, ବୁଦ୍ଧି ଏବଂ ଜୀବନର ଅଭିଜ୍ଞତାର ସଦ୍‌ବ୍ୟବହାର ହେବ । ଫଳରେ ଏ ପୃଥିବୀ ହେବ ସ୍ୱର୍ଗଠାରୁ ଅଧିକ ଶୋଭନ ସୁନ୍ଦର ଓ ଲଳିତଲାବଣ୍ୟଯୁକ୍ତ । ମନୁଷ୍ୟର ଜୀବନ ହେବ ଦିବ୍ୟ ଆନନ୍ଦର ଅମୃତଉଚ୍ଛୁଳା ସୁବର୍ଣ୍ଣ କଳସ, ସୁଷମାର ସୁରଞ୍ଜିତ ସୌମ୍ୟମଧୁମାସ । ସେହି ସମୟ ଶୀଘ୍ର ଆସୁ, ଏହା ଆମେ ଆଶା କରିବା ଏବଂ ଗୁଣ୍ଡୁଚି ମୂଷା ହେଲେ ମଧ୍ୟ ବିଶ୍ୱଶକ୍ତିର ସେତୁବନ୍ଧରୁ ଟିକିଏ ବାଲିରେଣୁ ଝାଡ଼ିଦେବା । ସେହି ବାଲିରେଣୁର ସଂଯୋଗରେ ସେତୁବନ୍ଧ ପୂର୍ଣ୍ଣ ହେବ ।

□□

# ଗତି ସହ ପ୍ରଗତି ରହୁ

ସାରା ପୃଥିବୀରେ ଆଜିର ମଣିଷ ବହୁ ପ୍ରକାର ଯନ୍ତ୍ରର ପ୍ରଭାବରେ ଯାନ୍ତ୍ରିକ ହୋଇଯାଉଛି । ଏପରି ପ୍ରଭାବିତ ହୋଇଯାଉଛି ଯେ ଯନ୍ତ୍ର ହୋଇଯାଇଛି ତା'ର ପ୍ରଭୁ, ସେ ହୋଇଯାଇଛି ଯନ୍ତ୍ରର ଦାସ । ପ୍ରକୃତରେ ଯନ୍ତ୍ର ହୁଅନ୍ତା ଦାସ, ମଣିଷ ହୁଅନ୍ତା ତା'ର ପ୍ରଭୁ । ତେବେ ମଣିଷ ମନରେ ଭାରସାମ୍ୟ ରହନ୍ତା, ଜୀବନରେ ସଂହତି, ସଂପ୍ରୀତିର ଚନ୍ଦନ ସୁବାସ ଭରି ଯାଆନ୍ତା । ମଣିଷ ମଣିଷ ଭିତରେ ସହଯୋଗ ରହନ୍ତା, ସହାନୁଭୂତି ରହନ୍ତା । କଥାଟି ହେଉଛି ଯନ୍ତ୍ର ରହୁ, ମାତ୍ର ମଣିଷ ସେହି ଯନ୍ତ୍ରର ଦାସ ନ ହେଉ ।

ଏଇ ଦେଖିବା ମୋବାଇଲ କଥା, ମୋବଇଲ ଫୋନ ଘରେ ବାହାରେ ସମସ୍ତଙ୍କୁ ଅଭିଭୂତ କରି ରଖିଛି । ଜଣେ ବନ୍ଧୁ କହିଲେ ଅଭିଭୂତ ନୁହେଁ ଭୂତ ଲଗାଇ ଦେଇଛି । ସେ କେଉଁ ମନ୍ତ୍ର ଦେଇଛି କେଜାଣି ମନ୍ତ୍ରମୁଗ୍ଧ କରି ରଖିଛି । ଏପରି ଆଚ୍ଛନ୍ନ କରି ରଖିଛି ଯେ ପୃଥିବୀ ଭିତରେ ଆଉ ଗୋଟିଏ ପୃଥିବୀ ତିଆରି କରି ଦେଉଛି ଯୁବ ମାନସରେ । ତହିଁରେ ଏପରି ମଜ୍ଜିଯାଇଛି ପିଲାଟିଏ ଯେ ଘରକୁ ବନ୍ଧୁକୁଣିଆ ଆସିଲେ ମଧ୍ୟ ସେ ଜାଣି ପାରୁନାହିଁ, ଜାଣିଲେ ମଧ୍ୟ ଯାଇପାରୁ ନାହିଁ ତାଙ୍କୁ ଟିକିଏ ଦେଖା କରିବାପାଇଁ, ପ୍ରଣାମ ବା ନମସ୍କାର ତ ଦୂରର କଥା । ଚିହ୍ନାଇବାକୁ ପଡୁଛି ବନ୍ଧୁବାନ୍ଧବଙ୍କୁ ଯେ ଇଏ ପିଉସୀପୁଅ ଭାଇ ଅଥବା ମାଉସୀ ଝିଅ ଭଉଣୀ । ପୁଣି ବୟସରେ ବଡ଼ ହୋଇଥିଲେ ତାଙ୍କୁ ନମସ୍କାର ହେବାକୁ କହିବାକୁ ପଡୁଛି । ପାଣିଚିଆ ନମସ୍କାରଟିଏ ତାଙ୍କୁ ଏକହାତିଆ ମିଳୁଛି, କାରଣ ଆର ହାତରେ କାନରେ ମୋବାଇଲ ଲାଗିଛି । କଥାଟି 'ମାଗି ଓଳଗି, ଯାଚି କଲ୍ୟାଣ' ପରି ହେଉଛି । କହିବାର କିଛି ନାହିଁ, କହିଲେ କିଛି ଲାଭ ନାହିଁ, ମୋବାଇଲର ମୋହିନୀ

ମାୟାରୁ ସତେ ଅବା ନିସ୍ତାର ନାହିଁ । ଏଥିରେ ମୋବାଇଲର ଦୋଷ ନାହିଁ, ଦୋଷଗୁଣ ଯାହା ଯେତେ ଆମର, କହିବାରେ ବାଧା ଅଛି ମାତ୍ର ଦ୍ୱିଧା ନାହିଁ ।

ଅତ୍ୟାଧୁନିକ ଯାନବାହନ, ଗାଡ଼ିମଟର ବିଜ୍ଞାନର ଅବଦାନ, ମହନୀୟ ଅବଦାନ, ଏଥିରେ ସନ୍ଦେହ ନାହିଁ । ସମୟ ବଞ୍ଚାଇ ଅଧିକ କାର୍ଯ୍ୟ କରାଇବା ଏହାର ଲକ୍ଷ୍ୟ । ଅଳ୍ପ ସମୟରେ ଗନ୍ତବ୍ୟ ସ୍ଥାନରେ ପହଞ୍ଚାଇବା ଏହାର ଆଭିମୁଖ୍ୟ । ଅଧିକରୁ ଅଧିକ କର୍ମ କରିବା, ଜୀବନର ସାର୍ଥକତା- ଏହି ସାରକଥାକୁ ସାକାର କରିବାରେ ସହାୟତା କରେ ଆଧୁନିକ ଯାନବାହନ । ଯାନବାହନ ଚାହେଁ ନାହିଁ ତା'ର ଅପବ୍ୟବହାର ଅର୍ଥାତ ଦ୍ରୁତ ଚାଳନା ଅଥବା ଅନିୟନ୍ତ୍ରିତ ପରିଚାଳନା । ଚାଳକର ବେପରୁଆ ଲଗାମହୀନ ମନୋଭାବ ତା'ର ପସନ୍ଦ ନୁହେଁ । ସେ ଚାହେଁ ନା, ତାହାଦ୍ୱାରା ଦୁର୍ଘଟଣା ଘଟୁ, ପଥଚାରୀ ବା ଅନ୍ୟ ଗାଡ଼ିଚାଳକଙ୍କର କ୍ଷତି ହେଉ । ମାତ୍ର ତାହା ଘଟୁଛି କିପରି ? ଆମର ସଚେତନତାର ଅଭାବ ପୁଣି ବେଳେବେଳେ ବାହାଦୁରୀର ପ୍ରଭାବ ଯୋଗୁଁ ଏପରି ଘଟୁଛି । ନିଜେ କ୍ଷତିଗ୍ରସ୍ତ ହେବା ସହିତ ଅନ୍ୟମାନଙ୍କର ଅଶେଷ କ୍ଷତି ଘଟୁଛି । ସେ କ୍ଷତି ପ୍ରାଣପୀଡ଼ାରେ ସୀମିତ ନରହି ଜୀବନ ହାନି ପର୍ଯ୍ୟନ୍ତ ଲମ୍ବିଯାଉଛି । କିଏ କହିବ, କାହାକୁ କହିବ ? କିଏ ବା ଶୁଣିବ ? କହିବା ଶୁଣିବା ବା ନ କହିବା ନ ଶୁଣିବା ପର୍ଯ୍ୟନ୍ତ କଥା ଗଲେ କ'ଣ ଚଳନ୍ତାନି ! ଆତ୍ମସଚେତନତା ପାଇଁ କ'ଣ ନିର୍ମମ ଅଙ୍କୁଶ ବା ଡ଼ିଗ୍ରୀ ଡିପ୍ଲୋମା କ'ଣ ଏକାନ୍ତ ଜରୁରୀ । ବେତାରଯନ୍ତ୍ର ପୃଥିବୀକୁ ଚାରିପଟୁ ଗୋଟାଇ ଆଣିଥିଲା, ମାତ୍ର ଦୂରଦର୍ଶନ ହାତ ମୁଠାରେ ରଖି ଦେଇଛି ତାର ସ୍ୱରୂପକୁ ରଙ୍ଗରୂପକୁ । ସତେ, ସାରାପୃଥିବୀ ତାହା ମାଧ୍ୟମରେ ଏ କୋଠରୀରୁ ଆରକୋଠରୀ ପରି ହୋଇଯାଇଛି । ଏକପକ୍ଷରେ ଆମପୃଥିବୀ ସମ୍ବନ୍ଧରେ ଆମେ ସବୁ କିଛି ଜାଣିବାର ଅଧିକାର ଆମକୁ ଦେଇଛି ଦୂରଦର୍ଶନ । କେବଳ ଖବର ଅନ୍ତର ନୁହେଁ ବହୁ ତତ୍ତ୍ୱ ଓ ତଥ୍ୟ ମଧ୍ୟ ଜାଣିବାର ସୁଯୋଗ ଦେଇଛି । ଗୋଟିଏ ବାକ୍ୟରେ କୁହାଯାଇପାରିବ ଯେ ବିଶ୍ୱନାଗରିକତ୍ୱକୁ ଚେତନାସ୍ତରରେ ଆଣିବାର କିଛି କିଛି ସୁଯୋଗ ଓ ସୁବିଧା ଦେଇଛି । ସମଗ୍ର ବିଶ୍ୱବାସୀଙ୍କ ମଧ୍ୟରେ ମୁଁ ଜଣେ, ଏମିତି ପ୍ରଶସ୍ତ ମନୋଭାବ ଆଣିଦେବାରେ ସହଯୋଗ କରୁଛି । ବିଶ୍ୱସଚେତନତାର ଜାଗ୍ରତ ପ୍ରହରୀ ଭାବରେ ଦୂରଦର୍ଶନର ଅବଦାନ ଅଭିନନ୍ଦନୀୟ । ଏଥି ସହିତ ଆଉ କିଛି କଥା ମଧ୍ୟ ଏହାର ପରିସରର ଅନ୍ତର୍ଭୁକ୍ତ । ଯଥା- ଜନଚେତନାର ଜାଗରଣ ଓ ବିକାଶ । ଅନ୍ଧାର ଓ ଆଲୁଅର ଛାଇ ଆଲୁଅ ଖେଳରେ ଜୀବନର ସ୍ଥିତି ମାତ୍ର ଆଲୋକର ଜୟଗାନ ହେଉଛି ଜୀବନର ଗତି । ନକାରାତ୍ମକତାରୁ ସକାରାତ୍ମକତା ଆଡ଼କୁ ଯିବାର ଅନ୍ୟନାମ ଚେତନାର ବିକାଶ । ଏ ଦିଗରେ ଗଣମାଧ୍ୟମମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଯଥାର୍ଥ ଦିଗ୍‌ଦର୍ଶନ ଦେବାର କ୍ଷମତା ନୁହେଁ ଯୋଗ୍ୟତା

କେତେକାଂଶରେ ସେମାନଙ୍କର ରହିଛି । ମାତ୍ର ତାହା କେତେ ପରିମାଣରେ ସଂଗଠିତ ହେଉଛି, ତାହା ବିଚାର୍ଯ୍ୟ ବିଷୟ ।

ଆମେ କିପ୍ରକାର କାର୍ଯ୍ୟକ୍ରମ ପ୍ରସାର ଓ ପ୍ରସାର କରିବା ତାହା ଯନ୍ତ୍ର ଉପରେ ନୁହେଁ, ଆମ ଉପରେ ନିର୍ଭର କରେ । ଯନ୍ତ୍ର ଚାହେଁ 'ବହୁ ଜନସୁଖାୟ, ବହୁଜନ ହିତାୟ ।' ଆମେ ମଧ୍ୟ ଏହା ଚାହିଁବା କଥା । ଆମେ ନଚାହିଁଲେ କିଏ ଆମକୁ ବାଧ୍ୟ କରିପାରିବ ଚାହିଁବା ପାଇଁ । ଯନ୍ତ୍ରକୁ ଦୋଷ ଦେଇ ଲାଭ ବା କ'ଣ ? ଯନ୍ତ୍ର ତ ମାଧ୍ୟମ, ଯନ୍ତ୍ରର ସଦ୍‌ବ୍ୟବହାର ଆମ ହାତରେ ପୁଣି ଅସଦ୍ ବ୍ୟବହାର ମଧ୍ୟ ଆମ ହାତରେ । ଆମର ମନୋବୃତ୍ତି ହିଁ ମୂଳକଥା । ମନେପଡ଼େ ଶ୍ରୀରାମକୃଷ୍ଣ ପରମହଂସଙ୍କର ସେଇ ଦିବ୍ୟବଚନ- ''ମଣିଷର ମନ ସଫା ଧଳାଲୁଗା ପରି, ତାକୁ ଯେଉଁ ରଙ୍ଗରେ ବୁଡ଼ାଇ ଦେବ, ତାହା ସେହି ରଙ୍ଗରେ ରଞ୍ଜିତ ହୋଇଯିବ ।''

କେବଳ ଦୂରଦର୍ଶନ ନୁହେଁ ସମସ୍ତ ଗଣମାଧମ କେତେବଡ଼ ପବିତ୍ର ଦାୟିତ୍ୱ ବହନ କରନ୍ତି, ତାହା ଅବିସମ୍ବାଦିତ । ସେମାନେ ଏକପ୍ରକାର ଦିଗ୍‌ଦର୍ଶକର ଭୂମିକାରେ ଥାଆନ୍ତି । ଆମେ ଗଣମାଧମକୁ କିପରି ପରିଚାଳନା କରିବା, ତାହା ଆମ ଉପରେ ନିର୍ଭର କରେ । ନକାରାତ୍ମକତା ତ ସମାଜରେ ଅଛି । ସେପରି ଘଟଣାକୁ ସମ୍ବାଦ ଆକାରରେ ତ ପରିବେଷଣ କରାଯିବ, ମାତ୍ର ଅନ୍ୟାନ୍ୟ ଗଠନମୂଳକ ଘଟଣା ଆଡ଼କୁ ଟିକିଏ ଅଧିକ ମୁହାଁଇ ଦେଲେ ତାହା ଅସୁସ୍ଥତା ନ ଆସିବା ଦିଗରେ ପ୍ରତିଷେଧକ ପରି କାମଦେବ ବୋଲି ଆଶା କରି ହେବ ।

ଏଥରକ ଘରକରଣା କଥା ଦେଖିବା । ଘରେ ଯେଉଁ ଦିଗକୁ ଚାହିଁଲେ ଦିଶିବ ଅନେକ ଯନ୍ତ୍ରର ମେଳନ । ଲୁଗାସଫା ମେସିନ୍‌ଠାରୁ ମସଲାବଟା ମେସିନ୍ ପର୍ଯ୍ୟନ୍ତ କେତେ ମେସିନ୍‌ର ମେଳାରେ ଘର ଗହଳ । ଚାଳିଶୀପଞ୍ଚାଳିଶୀ ବର୍ଷ ଆଗରୁ ଘରେ ଘରେ ଏତେ ମେସିନ୍ ନଥିଲା । ଶିଳରେ ବାଟିବାଠାରୁ ଆରମ୍ଭକରି ଚକିରେ ପେଷିବା ପର୍ଯ୍ୟନ୍ତ ସବୁ କାମ ହାତରେ କରିବାକୁ ପଡୁଥିଲା । ଏପରିକି ଗାଁଗହଳରେ ଘରେ ଘରେ ପ୍ରେସର କୁକୁର ମଧ୍ୟ ନଥିଲା । ପଚିଶବର୍ଷ ତଳେ ଗାଁ କେତେ ଗହଳରେ ବିଜୁଳି ବ୍ୟବସ୍ଥା ନଥିଲା । ତେଣୁ ବିଦ୍ୟୁତ ଚାଳିତ ଯନ୍ତ୍ରପାତିର ବ୍ୟବହାର ନଥିଲା । କହିବାର କଥା ହେଉଛି ଏହି ଯେ ସେତେବେଳେ ଗୋଟିଏ ଗୋଟିଏ ଘରକାମ ପାଇଁ ଯଥେଷ୍ଟ ଅଧିକ ସମୟ ଦରକାର ପଡୁଥିଲା, ଏପରିକି ରୋଷେଇ ପାଇଁ ମଧ୍ୟ । ଆଜିକାଲି ସେହି ସେହି କାମ ପାଇଁ ଏତେ ସମୟ ଦରକାର ପଡୁ ନାହିଁ । ମେସିନ ଆଦୌ ଭୁଲ କଥା ନୁହେଁ, ଆମେ ମେସିନ୍ ବ୍ୟବହାର କରିବା ମଧ୍ୟ ଭୁଲ କଥା ନୁହେଁ । କଥା ଏହି ଯେ ଯେତିକି ସମୟ ମିଳୁଛି ଆମକୁ ତାହାର ସଦ୍‌ବ୍ୟବହାର ଆମେ କରୁଛୁ କି ? ସେହି ସମୟରେ ଭଲ ବହିଟିଏ

ଆମେ ପଢୁଛୁ କି ? ଭଲ ଆଲୋଚନାଟିଏ ନିଜ ନିଜ ଭିତରେ ବସି କରୁଛୁ କି ? ଭଲ ଆଲୋଚନାଟିଏ ଶୁଣୁଛୁ କି ? ନା ଏଣୁ ତେଣୁ ବାଜେ ଗପରେ ସମୟ ନଷ୍ଟ କରୁଛୁ ?

ନିଜକୁ ନିଜେ କର୍ମଚଞ୍ଚଳ ରଖିବା ହିଁ ଜୀବନର ବଡ଼ ସାର୍ଥକତା । କର୍ମଚଞ୍ଚଳ କହିଲେ ବୁଝିବା ନାହିଁ, କେବଳ ଶାରୀରିକ ଶ୍ରମରେ ଅହରହ ଧାଇଁବା । କର୍ମଚଞ୍ଚଳତା କହିଲେ ନିଜ ପରିବେଶର ସୁରକ୍ଷା ଓ ସମୃଦ୍ଧି, ନିଜ ପରିବାରର ସମୃଦ୍ଧି ସର୍ବୋପରି ନିଜର ଓ ଅନ୍ୟର ଚେତନାର ସମୃଦ୍ଧି ପାଇଁ ପ୍ରୟାସ ଓ ପ୍ରଚେଷ୍ଟାକୁ ବୁଝିବା ।

ସବୁଠାରୁ ବଡ଼କଥା ହେଲା ସଚେତନତା । ଯିଏ ଯେଉଁ କାମରେ ନିଯୁକ୍ତ ଥାଆନ୍ତୁ ପଛକେ ନିଜ ପ୍ରତି ଓ ଅନ୍ୟମାନଙ୍କ ପ୍ରତି ସଚେତନ ରହିପାରିବା ହିଁ ପ୍ରକୃତ ଜୀବନର ସାର୍ଥକତା । ସମୟ ପ୍ରତି ସଚେତନତା, ସ୍ଥାନ କାଳ ପାତ୍ର ପ୍ରତି ସଚେତନତା, ବସ୍ତୁ ପ୍ରତି ସଚେତନତା, ସତେ ଏକାନ୍ତ ଜରୁରୀ । ଏସବୁ କଥାକୁ ମିଶାଇଲେ ଆତ୍ମସଚେତନତା ଆସିବ ବୋଲି କହିଲେ ବିଶେଷ ଭୁଲ ହେବ ନାହିଁ ।

ବିଜ୍ଞାନର ଅଗ୍ରଗତି ସଂଗେ ସଂଗେ ଚେତନାର ଅଗ୍ରଗତି ହେଉ । ତାହାଲେ ଅଗ୍ରଗତି ପୂର୍ଣ୍ଣ ହେବ । ନହେଲେ ଅଗ୍ରଗତି ଭାରସାମ୍ୟ ବିହୀନ ହୋଇଯିବ ଯାହା ଆଜି ଏକପ୍ରକାର ଘଟିଛି କହିଲେ ଅତ୍ୟୁକ୍ତି ହେବ ନାହିଁ, ଗତି ରହୁ ଏବଂ ଗତି ସଂଗେ ସଂଗେ ପ୍ରଗତି ରହୁ । ଖାଲି ଗତି ଯଥେଷ୍ଟ ନୁହେଁ, ଏଥିସହିତ ପ୍ରଗତି ସମନ୍ୱିତ ହୋଇ ରହୁ । ଏହାହିଁ ଆଜିର ମୌଳିକ ଆବଶ୍ୟକତା ।



# ନୂଆଜୀବନର ନକ୍ସା

ଆଜି ଘରେ ବାହାରେ ଚାରିଆଡ଼େ ଖାଲି ଲାଭକ୍ଷତିର ଅଙ୍କକଷା । କାମନାର ତତଲା ପବନରେ ପ୍ରାୟ ସମସ୍ତେ ଜର୍ଜରିତ ଓ ବ୍ୟତିବ୍ୟସ୍ତ । କଥା କହିବା ପୂର୍ବରୁ ଭାବିବାର ଅବକାଶ ନାହିଁ । କିଛି ନିଷ୍ପତ୍ତି ନେବା ପୂର୍ବରୁ ଆଉ ଥରେ ଭାବିବାର ନାହିଁ । ଜୀବନ ହୋଇଛି ଭୋଗ ସର୍ବସ୍ୱ । ଭୋଗର କାମନା, କାମନାରେ ଟିକିଏ ବାଧା ଉପୁଜିଲେ କ୍ରୋଧ, କ୍ରୋଧରୁ ବୁଦ୍ଧିନାଶ, ବୁଦ୍ଧିନାଶରୁ ହିଂସ୍ରତା ଇତ୍ୟାଦି ଇତ୍ୟାଦି । ହିଂସ୍ରତାର ଏକାବେଳକେ ଚରମସୀମା, ଉତ୍କଟ ହିଂସ୍ରତା ।

କ'ଣ ହୋଇଛି ଏ ମଣିଷ ? କିମ୍ଭୂତକିମାକାର ଚେତନାରେ ଅଛି– ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି । କ'ଣ କହୁଛି ଜାଣୁ ନାହିଁ, କ'ଣ କରୁଛି ଜାଣୁ ନାହିଁ, କହୁକହୁ କହୁଛି, କରୁକରୁ କ'ଣ କ'ଣ ଅକାର୍ଯ୍ୟ କରିବସୁଛି । ଲଗାମବିହୀନ ହୋଇ ମାଡ଼ି ଚାଲିଛି ଅମଡ଼ା ମଡ଼ା । କେହି କହିପାରୁନାହାନ୍ତି ଯେ ଲଗାମ ନାହିଁ ବୋଲି । ବେହୋସ ଅନ୍ୟମାନଙ୍କ ଭିତରେ ହୋସ୍‌ରେ ରହିବା ଲୋକଟି ଦୋଷୀ କାରଣ ସେ ହୋସ୍‌ରେ ଅଛି । ତେଣୁ ସେ ଅପରାଧୀ ହେବା ଭୟରେ ନୀରବ ରହିବାକୁ ବାଧ୍ୟ । ବର୍ଷା ଦିନେ କୋଇଲି ତ ନୀରବ ହେବାକୁ ବାଧ୍ୟ କାରଣ ଶୁଣିବାକୁ କେହି ନଥାନ୍ତି । ଶ୍ରୋତା ବକ୍ତା କେହି ନାହାଁ/ରୋଦନ କରୁ କାହିଁ ପାଇଁ ।

ନ ଶୁଣିଲେ ତ ନାହିଁ, ଘୋଡ଼ା ପାଇଁ ଲଗାମ ଦରକାର–ଏତିକି କହିବା ମଧ୍ୟ ଘୋର ଅପରାଧ । ସମସ୍ତେ ସ୍ୱାଧୀନ, ସମସ୍ତଙ୍କ ଭିତରେ ଘୋଡ଼ା ମଧ୍ୟ ସ୍ୱାଧୀନ, ଲଗାମ ତା' ପାଇଁ କ'ଣ ଦରକାର ? 'ସେ କ'ଣ ସମସ୍ତଙ୍କ ଭିତରେ ଜଣେ ନୁହେଁ ? ଲଗାମହୀନ ହୋଇ ଏଆଡ଼େ ସେଆଡ଼େ ମାଡ଼ିଯିବାର ଅଧିକାର କ'ଣ ତା'ର ନାହିଁ ? ସ୍ୱାଧୀନ ହେଲାପରେ

କେହି କାହାର ଅଧିକାରକୁ ଛଡ଼େଇ ନେବାର ଅଧିକାରୀ ନୁହନ୍ତି ।'ମୋ' ଇଚ୍ଛା' ହିଁ ସବୁଠାରୁ ଶ୍ରେଷ୍ଠ ଇଚ୍ଛା, ଶ୍ରେଷ୍ଠ ବାକ୍ୟ ଓ ପ୍ରକୃଷ୍ଟ ବିଚାର ।

ଘୋଡ଼ା ସହିତ ଲଗାମ ନାହିଁ, ହାତୀ ସହିତ ଅଙ୍କୁଶ ନାହିଁ । ସମାଜରେ ପ୍ରସନ୍ନତା ଓ ପ୍ରଫୁଲ୍ଲତା ଆସିବ କେଉଁଠୁ ? ସବୁ ବିପର୍ଯ୍ୟସ୍ତ ଓ ଅସ୍ତବ୍ୟସ୍ତ କାରଣ ନୈତିକତାର ଲଗାମ ନାହିଁ । କିଏ ଶୃଙ୍ଖଳିତ କରିବ ଅଶ୍ୱକୁ ? ଅଶ୍ୱର ଗତିଅଛି ମାତ୍ର ତାହା ପ୍ରଗତି ଠାରୁ ଦୁର୍ଗତିଆଡ଼କୁ ଅଧିକ ଅଛି । ଗଢ଼ିବାଠାରୁ ଭାଙ୍ଗିବା ଆଡ଼କୁ ଅଧିକ ଯାଉଛି । ନୈତିକତା ଶବ୍ଦର ଅର୍ଥ ଅଧିକାଂଶ ଲୋକ ଜାଣନ୍ତି ନାହିଁ । ନୈତିକତାମାନେ ବୁଝନ୍ତି ସକାଳୁ ସ୍ନାନ କରିବା, ସଂକ୍ରାନ୍ତିରେ ମନ୍ଦିର ଯିବା, ଆମିଷ ନ ଖାଇବା ଇତ୍ୟାଦି ଇତ୍ୟାଦି । ମାତ୍ର ସେମାନେ ଜାଣନ୍ତି ନାହିଁ ଯେ ନୈତିକତା ହେଉଛି ମାନବିକତା । ମଣିଷର ଚଳିବା ପାଇଁ ଯେଉଁ ନୀତିନିୟମ, ବିବେକବିଚାର ଅର୍ଥାତ୍ ଯେଉଁ ମଣିଷପଣିଆ ଆବଶ୍ୟକ ତାହା ହେଉଛି ନୈତିକତା । ତାହା କେତେ ଦିଗରୁ ମିଳେ । ଘରୁ ଅର୍ଥାତ୍ ପରିବାରରୁ ମିଳେ, ଶିକ୍ଷାନୁଷ୍ଠାନରୁ ମିଳେ, ଶାସ୍ତ୍ରପୁରାଣରୁ ମିଳେ, ଆତ୍ମବିଶ୍ଳେଷଣରୁ ମିଳେ, ଅନୁଭୂତିରୁ ମିଳେ ଇତ୍ୟାଦି ଇତ୍ୟାଦି ।

ଆଜିକାଲି ଏସବୁ ଉତ୍ସରୁ ପ୍ରାୟତଃ ନୈତିକତା ସଂପର୍କରେ ଜାଣିବାକୁ ମିଳୁ ନାହିଁ, ଘରେ ତ ନାହିଁ । ଲାଞ୍ଚ ନେଉଥିବା, ଦେଶ ଧନକୁ କାଗଜପତ୍ର ସଜାଡ଼ି କରାୟତ୍ତ କରୁଥିବା, କୁବୁଦ୍ଧି ପ୍ରୟୋଗ କରି ଅନ୍ୟମାନଙ୍କୁ ଅସୁବିଧାରେ ପକାଉଥିବା ଅଭିଭାବକଙ୍କଠାରୁ ନୈତିକତା ଶିଖିବା ଆକାଶକୁସୁମ ତୋଳିବାସହ ସମାନ । ଅବଶ୍ୟ ଏହା ସବୁ ଘରର କଥା ନୁହେଁ ।

ଶିକ୍ଷାନୁଷ୍ଠାନରେ ନମ୍ବର ରଖିବା ପାଠ ସହିତ ଚରିତ୍ର ଗଠଭିତ୍ତିକ ପାଠପଢ଼ା ହେବାର ଆବଶ୍ୟକତା ରହିଛି । ଶିକ୍ଷା ସଂପର୍କରେ ସ୍ୱାମୀବିବେକାନନ୍ଦ କହନ୍ତି ଯେ ଶିକ୍ଷାର ଲକ୍ଷ୍ୟ ହେଉଛି ବ୍ୟକ୍ତି ଚରିତ୍ରଗଠନ ପୂର୍ବକ ଜାତି ନିର୍ମାଣ । ଶ୍ରୀମା କହନ୍ତି-''ଜୀବନକୁ ଜାଣିବା, ଜଗତକୁ ଜାଣିବା ସର୍ବୋପରି ଜୀବନକୁ ଓ ଜଗତକୁ ଅନୁଭବ କରିବା ହେଉଛି ଶିକ୍ଷାର ମୁଖ୍ୟ ଲକ୍ଷ୍ୟ ।'' Carreer, Success and money ଆଡ଼କୁ ସବୁଯାକ ସଚେତନତା ନଯାଇ ବଞ୍ଚିବାର କଳା, ନିଜକୁ ଜାଣିବା, ଜଗତକୁ ଜାଣିବା ଆଡ଼କୁ କିଛି ସଚେତନତା ଗତି କରିବା ଦରକାର ।

ଶିକ୍ଷକ ଏଇ ନୈତିକତାର କଥା କେବଳ ନ କହି ନିଜେ ଉଦାହରଣ ହେବା ଆବଶ୍ୟକ । ତେଣୁ ଶିକ୍ଷକତା ଏତେ ସହଜ କଥା ନୁହେଁ । କେବଳ ବହି ପଢ଼ି ପଢ଼ାଇ ଦେବା ଶିକ୍ଷକତା ନୁହେଁ । ନିଜକୁ ନିଜ ନିୟନ୍ତ୍ରଣରେ ରଖି ଅନ୍ୟ ନିକଟରେ ଉଦାହରଣ ହେବା ହିଁ ଯଥାର୍ଥ ଶିକ୍ଷକତା । କାରଣ ଉପଦେଶଠାରୁ ଉଦାହରଣ ଶତ ଗୁଣରେ ଶ୍ରେୟସ୍କର । ତାହା ଆଜିକାଲି କମି ଗଲାଣି । ଅତଏବ ଶିକ୍ଷାନୁଷ୍ଠାନରୁ ବଞ୍ଚିବାର କଳା ସଂପର୍କରେ ଜାଣିବା ସହଜ ହେଉ ନାହିଁ । ପୁନଶ୍ଚ ଯଦି କେଉଁ ଶିକ୍ଷକ ମୂଲ୍ୟବୋଧ, ନୈତିକତା ଏବଂ ମାନବିକତାର କଥା ଶିଖାଇବାକୁ ଚାହାନ୍ତି ତେବେ ସେ ମଧ୍ୟ ଗୃହୀତ ହେବେ ନାହିଁ, କାରଣ ପିତାମାତାଙ୍କର ଦରକାର ପିଲାଟି କେବଳ ଯେତେ ଅଧିକ ସମ୍ଭବ ନମ୍ବର ରଖୁ ।

ଅଧିକ ନମ୍ବର ନରଖୁ ବୋଲି କେହି କହୁ ନାହିଁ । ମାତ୍ର ନମ୍ବର ରଖିବା ସହିତ କଥା କହିବାର କଳାଶିଖୁ, କାହାକୁ କିପରି ବ୍ୟବହାର କରାଯିବ ତାହା ଶିଖୁ, ନିଜେ ଖୁସି ରହିବା ଶିଖୁ, ଟିକିଏ ବିଫଳତାରେ ବିଚଳିତ ହୋଇନଯାଉ, ଜୀବନରେ ବାସ୍ତବତାର ସମ୍ମୁଖୀନ ହେବା ପାଇଁ ପ୍ରସ୍ତୁତ ରହୁ ଇତ୍ୟାଦି ଇତ୍ୟାଦି ।

ଏବେ ମଧ୍ୟ ବହୁ ଅଭିଭାବକଙ୍କର ବଦ୍ଧମୂଳ ଧାରଣା ଯେ ନୈତିକତା ତାଙ୍କ ପିଲାଙ୍କୁ କାଳେ ବାବାଜୀ କରିଦେବ । ସେମାନେ ସ୍ମାର୍ଟ ହୁଅନ୍ତୁ । ଯାହା ଇଚ୍ଛା ତାହା କରନ୍ତୁ ପଛେ ସ୍ମାର୍ଟ ହୁଅନ୍ତୁ । ମାତ୍ର ଏକଥା ବୁଝିବା ଉଚିତ୍ ଯେ ସ୍ମାର୍ଟ ହେବା ଅର୍ଥ ନୁହେଁ ଯାହା ଇଚ୍ଛା ତାହା କରିବା । ଅଭିଭାବକଙ୍କର ଅଙ୍କୁଶ ଥିଲେ ଯୁବଶକ୍ତି ବୋଧହୁଏ ଏତେ ବିଶୃଙ୍ଖଳିତ ହୋଇ ନିଜର କ୍ଷତି ଘଟାନ୍ତେ ନାହିଁ ।

ପୁରାଣଶାସ୍ତ୍ରରୁ ବିଶେଷ କିଛି ଶିଖିବାର ନାହିଁ ବୋଲି ଆମର ଧାରଣା । କିନ୍ତୁ ଶାସ୍ତ୍ରମାନଙ୍କରେ ଥିବା ତତ୍ତ୍ୱରେ ବହୁ ଶିକ୍ଷଣୀୟ କଥା ରହିଛି, ବହୁ ନୈତିକତାର କଥା ରହିଛି । ଏହାର ଉପଯୁକ୍ତ ବିଶ୍ଳେଷଣ ହେଉ ନାହିଁ । ଯାହା ବା ହେଉଛି ଶୁଣିଲେ ଆମର ମନେ ହେଉଛି ତହିଁରେ କଳଙ୍କି ଲାଗି ଗଲାଣି । ଶାସ୍ତ୍ରମାନଙ୍କୁ ଖୋଲି ଦେଲେ ଆମକୁ କେମିତି ଗୋଟାଏ ଚେମେଣିଆ ଗନ୍ଧ ଆସୁଛି । ଘରେ ରଖିଲେ ମଧ୍ୟ ଗନ୍ଧ ହେଉଛି, କାଗଜବାଲାକୁ ବହି ଦରରେ ବିକିଦେଲେ ତ୍ରାହି । ଓହୋ, କେଡ଼େ ହାଲ୍‌କା ଲାଗୁଛି ।

ଯୁବଶକ୍ତିର ଧାରଣା ଯେ ଆମର କିଛି ଦରକାର ନାହିଁ । ଠାକୁରଦେବତା, ଗୁରୁଗୁରୁଜନ, ପାଠଶାଠ, ଉପଦେଶ ଉଦାହରଣ ଆମର କିଛି ଲୋଡ଼ା ନାହିଁ । ଆମର କେବଳ ଦରକାର ଫେସ୍‌ବୁକ୍, ନେଟ୍, ହ୍ୱାଟସ୍‌ଆପ, ସ୍କାଇପ୍, ଇମେଲ ଇତ୍ୟାଦି ଇତ୍ୟାଦି କଥା ।

ଶେଷରେ ଏତିକି କଥା ଯଥାର୍ଥ ଯେ ଆମର ସବୁକିଛି ପ୍ରକୃତରେ ଦରକାର । ଆମର ସୋସିଆଲ ମିଡ଼ିଆ ଦରକାର, ଦରକାର ଲାପଟପ୍, ଦରକାର ନେଟ୍ ବ୍ୟବସ୍ଥା ଏବଂ ଏଥି ସହିତ ମଧ୍ୟ ଦରକାର ଶାସ୍ତ୍ରପୁରାଣ, ଉପଦେଶ ଉଦାହରଣ, ପିତାମାତାଙ୍କର ମାର୍ଗଦର୍ଶନ, ନୈତିକତା ସର୍ବୋପରି ମାନବିକତା । ସର୍ବୋପରି ଆମର ଦରକାର ପରିପୂର୍ଣ୍ଣତା । ପ୍ରତିଦେଶର ଏକ ଏକ ମର୍ମବାଣୀ ରହିଛି । ଆମ ଦେଶର ମର୍ମବାଣୀ ହେଉଛି ସମସ୍ତଙ୍କର ଶୁଭକାମନା ଏବଂ ସର୍ବତ୍ର ଶାନ୍ତି ପ୍ରତିଷ୍ଠାର ପ୍ରୟାସ । ଗଗନପବନ ବନ ଉପବନ ସସାଗରାଧରା ସବୁଠାରେ ଶାନ୍ତି ପ୍ରତିଷ୍ଠିତ ହେଉ-ଏହା ଯେଉଁ ଦେଶର ମର୍ମକଥା, ସେ ଦେଶର ଆଜିର ଅବସ୍ଥା ଭାବି ହେଉ ନାହିଁ । ବିଶ୍ୱସ୍ତରୀୟ ସର୍ବେକ୍ଷଣରୁ ଜଣାଯାଇଛି ଯେ ଭାରତରେ ଅଶାନ୍ତି, ହତାଶ ଓ ଅସନ୍ତୋଷ ଅଧିକରୁ ଅଧିକ ବଢ଼ିଚାଲିଛି । କାରଣ ଖୋଜିଲେ ବଡ଼ କାରଣଟିଏ ନିଶ୍ଚୟ ମିଳିବ- ତାହା ହେଉଛି ଅଶିକ୍ଷା । ବହୁ ପଦ୍ଧତି ଓ ବହୁ ପ୍ରକାର ଶିକ୍ଷାନୀତି ପ୍ରଣୀତ ହେଉଛି, ମାତ୍ର ଉଚିତ ଅର୍ଥରେ ଶିକ୍ଷା ନାହିଁ । ଅଶିକ୍ଷାର ରାଜତ୍ୱ ପ୍ରବଳ ବେଗରେ ଚାଲିଛି ।



# କଳି ଭାଙ୍ଗି ସତ୍ୟ ହେବ

ଚାଳଘରେ ନିଆଁ ଲାଗି ହୁତହୁତ ହୋଇ ଜଳିଲା ବେଳେ ନିଆଁ ଖଣ୍ଡମାନ ଦଲକାଏ ଦଲକାଏ ହୋଇ ଖସେ । ସେହିପରି ବର୍ତ୍ତମାନ କଳିର ପ୍ରଭାବ ଖଣ୍ଡଖଣ୍ଡ ନିଆଁପିଣ୍ଡୁଳା ହୋଇ ଖସୁଛି ଗଛପତ୍ର ଉପରେ, ପଶୁପକ୍ଷୀଙ୍କ ଉପରେ ପୁଣି ମଣିଷମାନଙ୍କ ଉପରେ । ପାଣି ପବନ, ପାହାଡ଼ ପର୍ବତ ଓ ନଦୀ ସମୁଦ୍ର କେହି ଏଥିରୁ ରକ୍ଷା ପାଇପାରୁ ନାହାନ୍ତି । ସମସ୍ତେ ଭୟଭୀତ ଅଜଣା ଆଶଙ୍କାରେ କେତେବେଳେ ଯେ କ'ଣ ଘଟିବ ତାହା ନିର୍ଣ୍ଣୟ କରିବା ତ ଦୂରର କଥା, ଅନୁମାନ ମଧ୍ୟ କରି ହେଉନାହିଁ । ରାଜସିକତା ଓ ତାମସିକତା ଦୂରର କଥା ଅନୁମାନ ମଧ୍ୟ କରି ହେଉ ନାହିଁ । ରାଜସିକତା ଓ ତାମସିକତା ଉଭୟେ ମିଶି ମହାମେଣ୍ଟ କରି ସାତ୍ତ୍ୱିକତାକୁ ପଦଦଳିତ କରି ରଖିବାର ଏହିସବୁ ହେଉଛି ଫଳାଫଳ । ମହାମେଣ୍ଟରେ ପୁଣି ତାମସିକତାର ସିଂହ ଭାଗ ଅର୍ଥାତ୍ ରାଜଭାଗ । ତାମସିକତାରେ ଲୋଭ ଓ କ୍ରୋଧର ସ୍ଥାନ ସ୍ୱତନ୍ତ୍ର । ହିଂସା, ଈର୍ଷା, ଠକାମି, ଛଳନା ପ୍ରଭୃତିର ପ୍ରଭାବ ତ ପ୍ରବଳ ରହିଛି । ଏମାନେ ଏକ ଏକ ସୈନିକ । ଏମାନଙ୍କ ସହିତ ଆଉ କେତେ ସୈନିକଙ୍କୁ ନେଇ ଗଠିତ ସେନାବାହିନୀର ସେନାପତି ହେଉଛନ୍ତି ତାମସିକ ଅହଂକାର । ଏଇ ସୈନିକମାନେ ଅନ୍ୟର ସର୍ବନାଶ କରିବା ସହିତ ନିଜର ମଧ୍ୟ ସର୍ବନାଶ କରିଥାନ୍ତି । ଏମାନେ କାହାର ଉପକାର କରିପାରନ୍ତି ନାହିଁ, କ୍ଷତି କେବଳ କରିଥାନ୍ତି । ଏମାନେ କାହାକୁ ଫୁଲଟିଏ ଶ୍ରଦ୍ଧାରେ ଦେଇପାରନ୍ତି ନାହିଁ, ଅନ୍ୟ ଉପରେ ଗୁଳିବର୍ଷଣ କରିପାରନ୍ତି । ଏମାନେ କାହାର ନିଜର ନୁହନ୍ତି ଅଥବା ନିଜେ ନିଜର ନୁହନ୍ତି । ବିଚିତ୍ର ଏମାନଙ୍କର ସ୍ଥିତି, ବିଚିତ୍ର ଏମାନଙ୍କର ଗତି । ସାନସାନ ଲକ୍ଷ୍ୟ ବ୍ୟତୀତ ବଡ଼ ଲକ୍ଷ୍ୟ ହେଉଛି ଧନର

ଲାଳସା, କାମଭାବର ପୂରଣର ଆଶୁଲାଳସା, କ୍ଷମତା ହାସଲର ଲାଳସା ଇତ୍ୟାଦି ଇତ୍ୟାଦି । ଘନୀଭୂତ ତାମସିକତାର ଫଳସ୍ୱରୂପ ନୂଆ ନୂଆ ଦୃଶ୍ୟ ସବୁ ଦେଖିବାକୁ ମିଳୁଛି ଏବଂ ନୂଆ ନୂଆ କଥାସବୁ ଶୁଣିବାକୁ ମିଳୁଛି । ଅଘଟଣମାନ ହୋଇଯାଉଛି ଘଟଣା, ଅକଥାମାନ ହୋଇଯାଉଛି କଥା । ବୀଭତ୍ସତା ହୋଇଯାଉଛି ବାସ୍ତବତା ପୁଣି ଲୁଣ୍ଠନ ହୋଇଯାଉଛି ପ୍ରତ୍ୟୁତ୍ପନ୍ନମତିତା । ଏ ଲୁଣ୍ଠନ ବ୍ୟକ୍ତିଠାରୁ ହୋଇପାରେ ଅଥବା ଦେଶରୁ ମଧ୍ୟ ହୋଇପାରେ । କେଉଁଠାରୁ ଆସୁଛି ଏଭଳି ମନୋବୃତ୍ତି ବୁଝି ହେଉ ନାହିଁ । ତେବେ ଏତିକି ବୁଝି ହେଉଛି ଯେ ଏହାସବୁ ଭିତରେ ରହିଥିଲା, ପାଣିପାଗ ପାଇବାରୁ ଗଜୁରି ଉଠିଲା । ପାଣିପାଗ ବିଭିନ୍ନ ଉତ୍ସରୁ ମିଳିଲା । ଦେଖି ଦେଖି ବହୁ ଅକଥା ଶିଖି ହୋଇଗଲା ଏବଂ ଏଥି ସହିତ ନିଜର ଭାବନାକୁ ମିଶାଇ ଦେବାରୁ ଅକଥାର ମାର୍ଗ ଟିକିଏ ଅଧିକ ପ୍ରଶସ୍ତ ହୋଇଗଲା । ବାହ୍ୟ ବିଳାସ ବାଟ ବାଉଳା କଲା, ସ୍ୱେଚ୍ଛାଧୀନତା ବୁଝାଇ ଦେଲା ଯେ ଜୀବନର ଲକ୍ଷ୍ୟ ହେଉଛି ଇନ୍ଦ୍ରିୟତୃପ୍ତି । ବତେଇ ଦେଲା ଯେ ଜୀବନର ଅନ୍ୟ ନାମ ଉପଭୋଗ ଏବଂ ଉପଭୋଗ ହିଁ ଜୀବନ ।

ଉପଭୋଗ ପାଇଁ ଯେଉଁ କଥାଟି ଅଧିକ ଆବଶ୍ୟକ ତାହା ହେଉଛି ଧନ । ଅର୍ଥ ରୋଜଗାର ପାଇଁ ଦରକାର ପରିଶ୍ରମ, ସମୟ, ଧୈର୍ଯ୍ୟ ତଥା ଉପଯୁକ୍ତ ଶିକ୍ଷା । ଏତେ କଥା ମାନସିକତା ନାହିଁ । କମ୍ ପରିଶ୍ରମରେ କମ୍ ସମୟରେ କିପରି ଅଧିକ ଅର୍ଥ ମିଳିବ ତାହା ହିଁ ମନକୁ ଆସୁଛି । ଆଦୌ ପରିଶ୍ରମ ନ କରି ଅଳ୍ପ ସମୟ ମଧ୍ୟରେ ଅଧିକ ଅର୍ଥ ପ୍ରାପ୍ତି ହିଁ ଅସଲ ଚତୁରତାରେ ଗଣା ହେଉଛି । ଏ ଚତୁରତା ଆଗରେ ଅନ୍ୟର କ୍ଷତି ଏବଂ ଦେଶର କ୍ଷତି ମ୍ଳାନ ପଡ଼ିଯାଉଛି । ଏଥିରେ ପିତାମାତା ଓ ଅଭିଭାବକ ଦୁଃଖିତ ଏବଂ ମର୍ମାହତ ହେଲେ ହେଁ ସେମାନଙ୍କ ଆୟତ୍ତରେ କିଛି ରହୁ ନାହିଁ । ସେମାନଙ୍କ ଉପଦେଶ ପାଣି ଫାଟି ଯାଉଛି ପିଲାମାନଙ୍କ ପାଖରେ ।

ଆମ ଦେଶରେ ଭୋଗ କଥାଟି ଆଗରୁ ଥିଲା, ମାତ୍ର ତାହା ଥିଲା ଅନ୍ୟ ପ୍ରକାରର । 'ତେନ ତ୍ୟକ୍ତେନ ଭୁଞ୍ଜିଥା'–ଏହାର ଥିଲା ମୂଳ ସ୍ୱର । ତ୍ୟାଗରେ ଭୋଗ ଏବଂ ଭୋଗରେ ତ୍ୟାଗ, ଆମ ସଂସ୍କୃତିର ମୌଳିକ ନିର୍ଯ୍ୟାସ । ଅତୀତରେ କେତେଜଣ ତଥାକଥିତ ବିଦେଶୀ ଗବେଷକ ଆମ ସଂସ୍କୃତିର ମହତ୍ତ୍ୱକୁ ବୁଝିନପାରି ଭାରତବର୍ଷକୁ 'ଅମାର୍ଜିତ ଚେତନାର ଦେଶ', 'ବୈରାଗୀ ବାବାଜୀ'ଙ୍କର ଦେଶ ବୋଲି କହି ବିଶ୍ୱଦରବାରରେ ନିନ୍ଦିତ କରିଥିଲେ । ସେମାନଙ୍କ ମତରେ ଭାରତରେ ନଥିଲା ସମାଜ ବ୍ୟବସ୍ଥା, ଆଇନ୍, ବିଜ୍ଞାନର ନାନା ଶାଖା, ତଥା ପ୍ରଜାତନ୍ତ୍ର ସମେତ ଅନେକ କଥା । ବିଦେଶୀ ଗବେଷକମାନଙ୍କର ବିଶେଷତଃ ଉଇଲିୟମ ଆର୍ଚ୍ଚରଙ୍କର ମନ୍ତବ୍ୟମାନ ସଂପୂର୍ଣ୍ଣ ଭ୍ରାମାତ୍ମକ । ଭାରତରେ ଏସବୁ କଥା ସହିତ ବାଣିଜ୍ୟ, ଶିଳ୍ପ, ସାହିତ୍ୟ, କଳା, ଭାସ୍କର୍ଯ୍ୟ, ସଂଗୀତ ପ୍ରଭୃତି ବହୁ ବିଭବ

ଥିଲା । ମାତ୍ର ଏସବୁ ଥିଲା ଭଗବତ ପ୍ରାପ୍ତି ପାଇଁ ଅଭିପ୍ରେତ । ଅନ୍ୟ ଭାଷାରେ କୁହାଯାଇପାରେ ଯେ ଧର୍ମ, ଅର୍ଥ, କାମ, ମୋକ୍ଷ' ହିଁ ଭାରତୀୟ ଜୀବନର ଅସଲ ମହତ୍ତ୍ୱ ଓ ଚରମ ପୁରୁଷାର୍ଥ । ଅର୍ଥାତ୍ ଗୋଟିଏ ହାତ ପଡ଼ିଥିଲା ସଂସାର ଉପରେ ଏବଂ ଅନ୍ୟ ହାତଟି ପଡ଼ିଥିଲା ଈଶ୍ୱରଙ୍କ ପାଦରେ । ନୌକାରେ ପାଣି ନ ଥିଲା, ପାଣିରେ ନୌକା ଥିଲା, ଆଉ ସେ ନୌକା ଚାଲୁଥିଲା ଉଚିତ୍ ଗତିରେ । ଏ ପରିପ୍ରେକ୍ଷୀରେ ଶ୍ରୀଅରବିନ୍ଦ ସ୍ୱରଚିତ 'ଭାରତୀୟ ସଂସ୍କୃତିର ଆଧାର' ଗ୍ରନ୍ଥରେ କହିଛନ୍ତି, ''ଜୀବନର ସକଳ ବିଷୟରେ ଭାରତ ପୁଙ୍ଖାନୁପୁଙ୍ଖ ରୂପେ ଗଭୀର ଭାବରେ ଚିନ୍ତା କରିଛି ଏବଂ ତାହାକୁ ଉତ୍ତମ ରୂପେ ବୁଝିବା ପରେ ପାରଙ୍ଗମତା ସହ ପ୍ରକାଶ କରିଛି ।''

ଅତୀତରେ ହିଂସ୍ରତା ଥିଲା ଘୃଣାର ବିଷୟ । ବିଚାର ଆଲୋଚନା ମାଧ୍ୟମରେ ବହୁ ସମସ୍ୟାର ସମାଧାନ ହେଉଥିଲା । ଶିକ୍ଷା ଥିଲା ଜୀବନ ଧର୍ମୀ । ଯଥାମାନ୍ୟ ମିଳୁଥିଲା ଗୁରୁ ଗୁରୁଜନଙ୍କୁ ଏବଂ ଯଥାଯଥଭାବରେ ଶ୍ରଦ୍ଧା ଓ କଲ୍ୟାଣ ମିଳୁଥିଲା ଲଘୁଜନମାନଙ୍କୁ । ଗୁଣୀଜ୍ଞାନୀ, ସାଧୁସନ୍ନ୍ୟାସୀ, ପିତାମାତା ତଥା ଶୁଭଚିନ୍ତକଙ୍କୁ ମିଳୁଥିଲା ଯଥାର୍ଥ ମର୍ଯ୍ୟାଦା । 'ପଞ୍ଚମୁଖେ ହରି' - ନ୍ୟାୟରେ ବିଚାର ମିଳୁଥିଲା ଏବଂ ଦୁଃଖସୁଖ ବଣ୍ଟା ହେଉଥିଲା । ଶାନ୍ତି ଥିଲା, ସହାନୁଭୂତି ଥିଲା, ସହଯୋଗର ହାତ ଲମ୍ୱି ଆସୁଥିଲା ଅନ୍ୟର ବିପଦ ଆପଦ ବେଳେ । ଘରଥିଲା ମର୍ତ୍ତ୍ୟର ବୈକୁଣ୍ଠ ଆଉ ସମାଜ ଥିଲା ଶୈଶବର ଶିଶୁଶଯ୍ୟା, ଯୌବନର ଉପବନ ପୁଣି ବାର୍ଦ୍ଧକ୍ୟର ବାରାଣସୀ । ଆକାଶରେ ଚକାଜହ୍ନ ଦେଖି ମନ ଛନ୍ନଛନ୍ନ ହେଉଥିଲା । ସଂପ୍ରତି ସେଇ ଚକାଜହ୍ନ ଅଛି ଯେ ଛନ୍ନଛନ୍ନ ହେଲାପରି ମନଟିଏ ନାହିଁ । ରୁପାଜହ୍ନଟି ଟିଣର ଜହ୍ନ ପରି ଲାଗୁଛି ।

ତଥାପି ଆଶା ଛାଡ଼ିବା ନାହିଁ । ଆଶା ଛାଡ଼ି ଦେଲେ ସର୍ବନାଶ ହୋଇଯିବ । ଆଶାର ଶକ୍ତି ଅଛି, ବିଶ୍ୱାସର ସାମର୍ଥ୍ୟ ଅଛି ଏବଂ ଭରସାର ଅମୋଘ କ୍ରିୟାଶୀଳତା ଅଛି । ରାତି ବଢ଼ିଗଲେ ସକାଳର ଆସିବା ସମୟ ପାଖେଇ ଆସେ, ପ୍ରବୃତ୍ତି ବଢ଼ିଗଲେ ନିବୃତ୍ତି ବେଶୀ ଦୂରରେ ରହିପାରେ ନାହିଁ । ଏହା କଥାର କଥା ନୁହେଁ, ଭାଷାର ଅଳଙ୍କାର ନୁହେଁ, ଜଗତର ଅଲଂଘ୍ୟ ନିୟମ । ସମୟ ଲାଗିବ, ଆମ ମାପରେ ନୁହେଁ ତା'ର ନିଜର ମାପରେ । ସମୟର ଗୋଟିଏ ମାପକାଠି ନିଜର ଅଛି ।

ସମାଜର ଅବସ୍ଥା ବଦଳିବ, ସେତେବେଳେ ଏଇ ବେହୋସ ଅବସ୍ଥା ଆଉ ରହିବ ନାହିଁ, ହୋସ୍ ଫେରିବ । ନୂଆ ଜୀବନ ଆସିବ । ସେ ଜୀବନ 'ମୁଁ'ରୁ 'ଆମେ' ପର୍ଯ୍ୟନ୍ତ ଲମ୍ୱିଯିବ ଏବଂ ବିଶ୍ୱସାରା ପରିବ୍ୟାପ୍ତ ହୋଇଯିବ । ସେତେବେଳେ ବସ୍ତୁ ସହିତ ଚେତନା ମିଶି କରି ରହିବ । ବିଜ୍ଞାନ ସହିତ ଦର୍ଶନ ମିଶିବ, ବାହାର ଜୀବନ ସହିତ ଭିତର ଜୀବନ ମିଶି ଏକାକାର ହେବ । ଜୀବନ ଓ ଜଗତକୁ ଏକସଂଗେ ଅନୁଭବ

କରିହେବ । ପ୍ରାଚ୍ୟ ଚେତନା ସହିତ ପାଶ୍ଚାତ୍ୟର ଚେତନା ସମନ୍ୱିତ ହୋଇ ଗଠିତ ହେବ ନୂତନ ଏକ ବିଶ୍ୱଚେତନା, ଉଭୟ ସଂସ୍କୃତିର ଶ୍ୟାମଳ ସାରାଂଶ ମିଶି ଗଠିତ ହେବ ନୂତନ ଏକ ବିଶ୍ୱସଂସ୍କୃତି । ଏଇ ବିଶ୍ୱଚେତନା ତଥା ବିଶ୍ୱସଂସ୍କୃତିରେ ଚାଲଣି ଅଲଗା ଅଲଗା ରହିଲେ ମଧ୍ୟ ତାହା ବାଧକ ହେବ ନାହିଁ । ନୂଆ ପ୍ରକାରର ଏକାତ୍ମତା ଆସିବ । ପ୍ରକୃତ ବିଶ୍ୱଗ୍ରାମ ସେଦିନ ପ୍ରତିଷ୍ଠିତ ହେବ । ବିଶ୍ୱପରିବାର ଗଠନର ସ୍ୱପ୍ନ ସେଦିନ ସାକାର ହେବ । ଜଗତୀକରଣର ପୂର୍ଣ୍ଣତା ସେଦିନ ଆସିବ । ସଚେତନ ବ୍ୟକ୍ତିମାନଙ୍କ ଭିତରେ ଏକ ବିଶ୍ୱସ୍ତରୀୟ ଗଭୀର ଅନୁଭୂତି ଆସିବ । ମନ ପ୍ରଶସ୍ତ ହେବ, ଭାବନା ଆହୁରି ପରିବ୍ୟାପ୍ତ ହେବ । ଭାବନା ସହିତ ଭାବର ମିଶ୍ରଣରେ ମଣିକାଞ୍ଚନର ସଂଯୋଗ ଘଟିବ ।

ପ୍ରତ୍ୟେକଙ୍କୁ ନିଜ ମାଟିରେ ଦମ୍ଭରେ ପାଦରଖି ଚାରି ଦିଗରୁ ଭଲ ଭଲ କଥାମାନ ସଂଗ୍ରହ ପୂର୍ବକ ନିଜକୁ ସମୃଦ୍ଧ କରିବା ସେତେବେଳେ ପୂର୍ଣ୍ଣ ଭାବରେ ସମ୍ଭବ ହେବ । ସେତେବେଳେ ସମଗ୍ର ବିଶ୍ୱ ହେବ ଆନନ୍ଦର ଗନ୍ତାଘର, ମୂଲ୍ୟବୋଧର ମଧୁଚକ୍ର । ଚିନ୍ତା ଓ ଚେତନାରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ ଘଟିବ ଏବଂ ବିଶ୍ୱ ନାଗରିକତ୍ୱର ପ୍ରାଣପ୍ରତିଷ୍ଠା ଘଟିବ । ପୋଡ଼ି ଯାଇଥିବା ଚାଳଘର ଭୂମିକମ୍ପରେ ଅବିଚଳିତ କୋଠାଘରରେ ରୂପାନ୍ତରିତ ହେବ । ସେଦିନ ସନ୍ଥକବି ଭୀମଭୋଇଙ୍କ ବଚନ ସାର୍ଥକ ହେବ–''କଳି ଭାଙ୍ଗି ସତ୍ୟ ହେବ, ବଚନ ନିର୍ଣ୍ଣୟ ଧ୍ରୁବ...'' ସେଦିନକୁ କେବଳ ଅପେକ୍ଷା କରିବା ନୁହେଁ, ଉତ୍ତର ପୀଢ଼ିକୁ ଯଥାର୍ଥ ଦିଗ୍‌ଦର୍ଶନ ଦେବା ମାଧ୍ୟମରେ ଆବାହନ କରିବା ଆମର ପ୍ରମୁଖ ଦାୟିତ୍ୱ ଓ ଏକାନ୍ତ କର୍ତ୍ତବ୍ୟ ।



# ବିକାଶ ଓ ପରିବେଶ

ସମାଜ-ଜୀବନରେ ବେଳେବେଳେ କେତେଗୋଟି କଥା ପରସ୍ପରର ପରିପୂରକ ନହୋଇ ପରସ୍ପରର ପରିପନ୍ଥୀ ହୋଇଥାନ୍ତି । ଏଇ ଯେମିତି ବିକାଶ ଓ ପରିବେଶ । ବିକାଶ କହିଲେ ଆମେ ବିଶେଷତଃ ଭୌତିକ ବିକାଶକୁ ଏଠାରେ ବୁଝିବା । ବିକାଶ ଅଧିକ ହେଲେ ପରିବେଶ ଯେ ଅଧିକ ସୁରକ୍ଷିତ ହୋଇ ରହିବ, ଏପରି ନୁହେଁ । ବିକାଶ ଅଳ୍ପ ହୋଇ ପରିବେଶ ଅଧିକ କ୍ଷତିଗ୍ରସ୍ତ ହୋଇପାରେ ପୁଣି ବିକାଶ ଅଧିକ ହୋଇ ପରିବେଶ କମ୍ କ୍ଷତିଗ୍ରସ୍ତ ହୋଇପାରେ । ଲାଭଠାରୁ କ୍ଷତି ଅଧିକ ହେଲେ ତାହାକୁ କ୍ଷତି କୁହାଯାଏ ଏବଂ କ୍ଷତିଠାରୁ ଲାଭ ଅଧିକ ହେଲେ ତାହାକୁ ଲାଭ କହିବା ଅତ୍ୟୁକ୍ତି ହୁଏ ନାହିଁ । ବିକାଶ ହେବ ହିଁ ହେବ, ବିକାଶକୁ ରୋକି ହେବ ନାହିଁ, ସଭ୍ୟତାର ଅଗ୍ରଗତି ସହ ବିକାଶ ଓତଃପ୍ରୋତ ଭାବରେ ଜଡିତ । କିଛି ଲାଭ ପାଇବାକୁ ହେଲେ ସାଧାରଣ ସ୍ତରରେ ହେଉ ଅଥବା ଅସାଧାରଣ ସ୍ତରରେ ହେଉ କିଛି ନା କିଛି କ୍ଷତି ସହିବାକୁ ପଡ଼େ । ଏହି କ୍ଷତି ଯେତେ କମ୍ ହେବ ସେତେ ଭଲ, ତାହାହିଁ ବାଞ୍ଛନୀୟ ।

ଏଇ ଯେମିତି ରାସ୍ତାର ପ୍ରଶସ୍ତିକରଣ ପାଇଁ ଗଛ କାଟିବାକୁ ପଡ଼େ । ରାସ୍ତା ଚଉଡ଼ା ହେବା ଏକ ଆବଶ୍ୟକତା, ଏଥିରେ ସନ୍ଦେହ ନାହିଁ । ଜନସଂଖ୍ୟା ବୃଦ୍ଧି ସହିତ ଯାନବାହନର ବୃଦ୍ଧି ହେତୁ ଗମନାଗମନର ସୁବିଧା ନିମନ୍ତେ ରାସ୍ତା ଓସାରିଆ ହେବା ଆବଶ୍ୟକ । ରାସ୍ତା ଓସାରିଆ ହେବା ଯେମିତି ଆବଶ୍ୟକ ଗଛ ରହିବା ସେମିତି ଆବଶ୍ୟକ । ତେବେ ଗଛଗୁଡ଼ିକୁ ମୂଳରୁ କାଟି ନ ଦେଇ ଯେଉଁ ଯେଉଁ ଗଛକୁ ମୂଳପିଣ୍ଡ ସହ ଉଠାଇ ନେଇ ଅନ୍ୟତ୍ର ପହଞ୍ଚାଇହେବ ଏବଂ ପୋତାଯାଇପାରିବ, ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ପାଶ୍ଚାତ୍ୟ

ଦେଶମାନଙ୍କରେ ଏପରି ପ୍ରଣାଳୀ ଅନୁସୃତ ହେବାଫଳରେ ବହୁଗଛ ପୁନଃରୋପିତ ହୋଇପାରୁଛି । ଗଛଟିଏ ଯଦି ଗୋଟିଏ ସ୍ଥାନରୁ ଉଠାଯାଇ ଅନ୍ୟସ୍ଥାନରେ ଲଗାଯାଇ ପାରିଲା, ତେବେ ପରିବେଶ ପ୍ରତି ଅନ୍ୟାୟ କରାଗଲା ନାହିଁ ବୋଲି କହିବାକୁ ପଡ଼ିବ । ପରିବେଶର ସୁରକ୍ଷା ଓ ସମୃଦ୍ଧି ପାଇଁ ଅମ୍ଳଜାନ ଏକାନ୍ତ ଜରୁରୀ ଯାହା ଗଛଠାରୁ ମିଳିଥାଏ । ଶୀତଳ ଛାୟା ପ୍ରଦାନ ସହିତ ପକ୍ଷୀମାନଙ୍କୁ ଫଳ ଖାଦ୍ୟ ରୂପେ ଦେବା ସହିତ ଗଛ ଆଶ୍ରୟ ପ୍ରଦାନ କରିଥାଏ । କେତେପ୍ରକାର ଔଷଧୀୟ ଉପାଦାନ ଏହି ଗଛମାନଙ୍କରୁ ମିଳିଥାଏ । କେତେ ପଶୁ ଗଛର ଫଳ ଓ ପତ୍ରଖାଇ ଜୀବନଧାରଣ କରିଥାନ୍ତି । ପଶୁପକ୍ଷୀମାନେ ଆମ ପରିବେଶର ଏକ ବିଶିଷ୍ଟ ଅଙ୍ଗବିଶେଷ । ସେମାନଙ୍କ ସଂଖ୍ୟା ଆବଶ୍ୟକତାଠାରୁ ହ୍ରାସ ପାଇଗଲେ ତାହା ପରିବେଶକୁ କ୍ଷତି ପହଞ୍ଚାଇଥାଏ । ମଣିଷମାନେ ଅଧିକ କ୍ଷତିଗ୍ରସ୍ତ ହୁଅନ୍ତି । ଗଛ କମିଗଲେ ବର୍ଷାର ପରିମାଣ କମିଯାଏ, ଫଳଫୁଲ କମିଯାଏ, ମାଟିର ଜଳଧାରଣ ଶକ୍ତି କମିଯାଏ ।

ଶୀତଳ ଛାୟା ଓ ପବନ ଦୁର୍ଲ୍ଲଭ ହୋଇପଡ଼େ । ଭୂମିରୁ ଜଳସ୍ତରର କ୍ରମଶଃ କମିବାକୁ ଲାଗେ ଯାହାର ପ୍ରଭାବ ମଣିଷ ସଭ୍ୟତା ଉପରେ ପଡ଼େ । ଗଛର ଅଭାବରୁ ଏମିତି ସମସ୍ୟା ବିଶେଷତଃ ସ୍ୱାସ୍ଥ୍ୟର ସମସ୍ୟା ବୃଦ୍ଧିପାଏ । ସେତେବେଳେ ହାତମୁଠାରୁ ସମସ୍ୟାମାନ ଖସିଯାଇ ଜଟିଳ ଅବସ୍ଥା ସୃଷ୍ଟି କରିଥାଏ ।

ଜଳ ପରିମାଣ ହ୍ରାସ ସହିତ ନଦୀମାନଙ୍କରେ ଯେତିକି ଜଳଅଛି ତାହା ମଧ୍ୟ ନାଳନର୍ଦ୍ଦମା ପାଣିରେ ଦୂଷିତ ହୋଇଯାଉଛି । ସହରର ଯେତେ ନାଳନର୍ଦ୍ଦମାର ପାଣି ନିକଟସ୍ଥ ନଦୀକୁ ଛାଡ଼ି ଦେବାରୁ ନଦୀ ଜଳ ଦୂଷିତ ହେବା ସହିତ ବିଷାକ୍ତ ହୋଇଯାଉଛି । ତାହା ଅନେକ ସମୟରେ ପଶୁମାନଙ୍କପାଇଁ ପୁଣି ମଣିଷ ପାଇଁ ବ୍ୟବହାର ଅନୁପଯୋଗୀ ହୋଇଯାଇଛି । କଳାକାରଖାନାରୁ ନିର୍ଗତ ବିଷାକ୍ତ ରାସାୟନିକ ପଦାର୍ଥ ପାଣି ସହିତ ମିଶି ନଦୀ ଓ ସମୁଦ୍ରଜଳକୁ କ୍ଷତିଗ୍ରସ୍ତ କରାଉଛି । ସେହି ପାଣି ଅନେକ ରୋଗର କାରଣ ହେଉଛି । ଏହି ସମସ୍ୟା ସବୁର ସମାଧାନ ପାଇଁ ଚେଷ୍ଟା କରିବା ଆଗରୁ ସମସ୍ୟା ନହେବାପାଇଁ ଚେଷ୍ଟା କରିବା ଅତ୍ୟନ୍ତ ଆବଶ୍ୟକ । ଏଦିଗରେ କେବଳ ସରକାରୀ ସ୍ତରରେ ସଚେତନତା ଯେ ଦରକାର ତାହା ନୁହେଁ, ସରକାରୀସ୍ତର ସହିତ ବ୍ୟକ୍ତିଗତ ସ୍ତରରେ ମଧ୍ୟ ସଚେତନତା ଆବଶ୍ୟକ ।

ଆମ ଦେଶର କେତେ ସ୍ଥାନରେ ବର୍ଷାଜଳକୁ ଭୂତଳକୁ ଛାଡ଼ିବାର ବ୍ୟବସ୍ଥା କରାଯାଉଛି । ଏହାଫଳରେ ଭୂତଳର ଜଳସ୍ତରର ଉନ୍ନତି ଘଟିବ । ଭୂତଳର ସ୍ତର ବୃଦ୍ଧି ପ୍ରାପ୍ତ ହେଲେ ଜଳାଭାବ ଜନିତ ଉତ୍କଟ ସମସ୍ୟାର ସମାଧାନ କେତେକାଂଶରେ ହୋଇପାରିବ । ଏତଦ୍‌ବ୍ୟତୀତ ବର୍ଷାଜଳକୁ କିଛି ଜମିର ଖାଲୁଆ ଅଂଚଳରେ ସଞ୍ଚୟ କରି

ରଖିବାର ଆବଶ୍ୟକତା ଅନୁଭୂତ ହେଲାଣି । ଏହା ଫଳରେ କୃଷି ପାଇଁ ଜଳାଭାବ ଜନିତ ସମସ୍ୟା କେତେକାଂଶରେ ଦୂର ହୋଇପାରିବ । ଏ ଦିଗରେ ବ୍ୟକ୍ତି ସଚେତନତା ଏକାନ୍ତ ଜରୁରୀ ।

ପାନୀୟ ଜଳର ସମସ୍ୟା ଉତ୍କଟରୁ ଉତ୍କଟତର ହେଲାଣି ବିଭିନ୍ନ ସ୍ଥାନରେ । ବିଶେଷତଃ ମହାରାଷ୍ଟ୍ର ଓ ତାମିଲ ନାଡୁରେ ଏ ସମସ୍ୟାର ଉତ୍କଟତା ଅଧିକରୁ ଅଧିକ ଉପଲବ୍ଧ ହେଉଛି । ମହାରାଷ୍ଟ୍ରର କେତେକ ଅଞ୍ଚଳରେ ଲୋକମାନେ ଗରାବାଲଟି ଧରି ମାଇଲମାଇଲ ବାଟ ଯାଉଛନ୍ତି ଜଳଟିକିଏ ଆଣିବା ନିମନ୍ତେ । ତାମିଲନାଡୁର ଚେନ୍ନାଇରେ କେତେକ ସ୍ଥାନରେ ଜଳାଭାବ ହେତୁ କେତେକ ହୋଟେଲ ବନ୍ଦ ହୋଇଯାଇଛି ।

ନୀତି ଆୟୋଗର ରିପୋର୍ଟ ଅନୁସାରେ ଚବିଶ ଗୋଟି ରାଜ୍ୟର ଭୂତଳ ଜଳର ସ୍ଥିତି ନିମ୍ନଗାମୀ ହେବାରେ ଲାଗିଛି । ଏହିପରି ହେଲେ କିଛି ମାସ ଭିତରେ ପ୍ରାୟ ଷାଠିଏ କୋଟି ଲୋକ ଜଳକଷ୍ଟର ସମ୍ମୁଖୀନ ହେବେ । ରିପୋର୍ଟରୁ ଜଣାଯାଇଛି ୨୦/୨୧ ମସିହା ସୁଦ୍ଧା ଏକୋଇଶ ଗୋଟି ବଡ଼ବଡ଼ ସହରରେ ଘୋର ଜଳାଭାବ ଦେଖାଦେବ । ଏହାର କେତେକ କାରଣ ଭିତରୁ ଗୋଟିଏ କାରଣ ହେଉଛି ବନୀକରଣ ପ୍ରତିଦୃଷ୍ଟିର ଅଭାବ । ଅନ୍ୟ ଏକ କାରଣ ହେଉଛି ପ୍ରବଳ ଜଙ୍ଗଲ କ୍ଷୟ । ଅନ୍ୟତମ କାରଣ ଶିଳ୍ପାୟନର ବହୁଳତା । ଜଳସ୍ତରର ହ୍ରାସ ଯୋଗୁଁ ବିଭିନ୍ନ ସ୍ଥାନର ନଦୀ, ଝରଣା, କୂଅ ପୋଖରୀ ପ୍ରାୟ ଖରାଦିନେ ଶୁଷ୍କ ହୋଇଯାଉଛି ।

ବାୟୁ ପ୍ରଦୂଷଣ ଆଜିର ଅନ୍ୟ ଏକ ଉତ୍କଟ ସମସ୍ୟା ରୂପେ ଦେଖାଦେଇଛି । ଏ ଦିଗରେ ପୃଥିବୀରେ ଭାରତର ସ୍ଥାନ ତିନିଗୋଟି ଦେଶ ଭିତରେ ତାଲିକାରେ ରହିଛି । କଳକାରଖାନାରୁ ନିର୍ଗତ ଧୂଆଁ, ବହୁ ସଂଖ୍ୟାରେ ଗାଡ଼ିମଟର ଚଳାଚଳ ଜନିତ ଧୂଆଁ, ବର୍ଜ୍ୟବସ୍ତୁକୁ ଏଣେତେଣେ ପକାଇବାର ପରିଣାମ, ମୃତ ପଶୁଙ୍କୁ ରାସ୍ତାକଡ଼ରେ ପକାଇବାଦ୍ୱାରା ବାୟୁ ଅଧିକରୁ ଅଧିକ ପ୍ରଦୂଷିତ ହେଉଛି । ଏ ଦିଗରେ ଆଇନଗତ ବ୍ୟବସ୍ଥା ଯେତିକି ଜରୁରୀ, ବ୍ୟକ୍ତି ସଚେତନତା ମଧ୍ୟ ସେତିକି ଜରୁରୀ । ବ୍ୟକ୍ତି ସଚେତନ ହେଲେ ବର୍ଜ୍ୟବସ୍ତୁକୁ ମାଟିରେ ପୋତିଦେଲେ ପରିବେଶ ପ୍ରଦୂଷିତ ହୁଅନ୍ତା ନାହିଁ । ମୃତ ପଶୁମାନଙ୍କୁ ମାଟିରେ ପୋତି ଦେଲେ ପରିବେଶ ଅର୍ଥାତ ବାୟୁମଣ୍ଡଳ ଏତେ କ୍ଷତିଗ୍ରସ୍ତ ହୁଅନ୍ତା ନାହିଁ ।

ଆମ ଦେଶର କେତେକ ସ୍ଥାନରେ ବିଶେଷତଃ ଦିଲ୍ଲୀରେ ଧୂଳିଧୂଆଁର ପ୍ରଭାବରେ ବାୟୁମଣ୍ଡଳ ଅଧିକ କ୍ଷତିଗ୍ରସ୍ତ ହେଉଛି । ଏପରି ହେଉଛି ଯେ ବେଳେବେଳେ ଅବସ୍ଥା ଅତ୍ୟନ୍ତ ଭୟଙ୍କର ହେଉଛି । ଏହି ଭୟଙ୍କର ଅବସ୍ଥାରୁ ରକ୍ଷାପାଇବା ନିମନ୍ତେ କେତେ ନୀତିନିୟମ ପ୍ରଣୟନ କରାଯାଇଛି । ଏପରିକି ଗାଡ଼ିମଟରର ବହୁଳ ବ୍ୟବହାରକୁ ହ୍ରାସ କରିବାପାଇଁ ଅନୁରୋଧ କରାଯାଉଛି ।

ବାସ୍ତବରେ କଳକାରଖାନାରୁ ନିର୍ଗତ ଧୂଆଁରୁ ଯଦି ଅଙ୍ଗାରକାମ୍ଳବାଷ୍ପକୁ ଅଲଗା କରି ଦିଆଯାଆନ୍ତା ତେବେ ପରିବେଶ ଏତେ ପ୍ରଦୂଷିତ ହୁଅନ୍ତା ନାହିଁ । ଅଗ୍ନିଦଗ୍ଧ କୋଇଲାରୁ ବିଦ୍ୟୁତଶକ୍ତି ବାହାରିଲାପରେ ସେହି ପାଉଁଶକୁ ଯଦି ଆଉ କିଛି ଆବଶ୍ୟକୀୟ ବସ୍ତୁରେ ରୂପାନ୍ତରିତ କରାଯାଆନ୍ତା, ତେବେ ପାଉଁଶ ଯୋଗୁଁ ପରିବେଶ କ୍ଷତିଗ୍ରସ୍ତ ହୁଅନ୍ତା ନାହିଁ ।

କେବଳ ଆମ ଦେଶର କଥା ନୁହେଁ ସମଗ୍ର ପୃଥିବୀର ବାୟୁମଣ୍ଡଳ ଏକ ପ୍ରକାର ପ୍ରଦୂଷିତ ହେଲାଣି । ଦେଶ ଦେଶ ଭିତରେ ଭିନ୍ନ ଭିନ୍ନ ଅସ୍ତ୍ରର ପରୀକ୍ଷା ନିରୀକ୍ଷାର ଧୂମକୁଣ୍ଡଳୀ ବାୟୁମଣ୍ଡଳକୁ କେବଳ ଦୂଷିତ ନୁହେଁ ବିଷାକ୍ତ ମଧ କରି ଦେଇଛି । ପରିବେଶର ସୁରକ୍ଷା ନିମନ୍ତେ ବିଶ୍ୱର ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ସମୟରେ ସମ୍ମିଳନୀମାନ ଅନୁଷ୍ଠିତ ହେଉଛି । ଏହାର ଏତେ ବେଶୀ ସୁଫଳ ମିଳୁଛି ବୋଲି କହି ହେଉ ନାହିଁ । ଆତ୍ମ ସୁରକ୍ଷା ନାମରେ ଏତେ ବେଶୀ ପରୀକ୍ଷା ନିରୀକ୍ଷା ଆଦୌ ସ୍ପୃହଣୀୟ ନୁହେଁ ।

ପୃଥିବୀର ପରିବେଶକୁ ପ୍ରଦୂଷିତ କରୁଛି ଆଉ ଏକ କଥା । ତାହା ହେଉଛି ଶବ୍ଦ ପ୍ରଦୂଷଣ । କଳକାରଖାନାର ଶବ୍ଦଠାରୁ ଆରମ୍ଭ କରି ଗାଡ଼ିମଟରର ଶବ୍ଦ ପର୍ଯ୍ୟନ୍ତ ଏହି ପ୍ରଦୂଷଣ ନିମନ୍ତେ କେତେକାଂଶରେ ଦାୟୀ । ଏ ପୃଥିବୀ ଅତ୍ୟଧିକ ଶବ୍ଦର ପ୍ରଭାବରେ ବଧିର ହୋଇଗଲାଣି, କହିଲେ ଭୁଲ ହେବ ନାହିଁ । ପୃଥିବୀର ଅତ୍ୟଧିକ ଶବ୍ଦ କୋଳାହଳ ଯେ ହ୍ରାସ କରିବାକୁ ହେବ, ଏଥିରେ ସନ୍ଦେହ ନାହିଁ । ଏଥି ନିମନ୍ତେ ଆମକୁ ଅର୍ଥାତ ମଣିଷମାନଙ୍କୁ ସଚେତନ ଓ ସହାନୁଭୂତିସଂପନ୍ନ କରାଇବା ଏକାନ୍ତ ଜରୁରୀ ।

ଅତଏବ ଏକଥା ଯଥାର୍ଥ ଯେ ମନୁଷ୍ୟମାନଙ୍କ ଦ୍ୱାରା ହିଁ ବାୟୁମଣ୍ଡଳ କ୍ଷତିଗ୍ରସ୍ତ ତଥା ପ୍ରଦୂଷିତ ହେଉଛି, ଜଳମଧ୍ୟ ପ୍ରଦୂଷିତ ହେଉଛି । ଏଥି ନିମନ୍ତେ ଜାତି ଧର୍ମବର୍ଣ୍ଣ ନିର୍ବିଶେଷରେ ସମଗ୍ର ମାନବ ସମାଜର ସଚେତନତା ଏକାନ୍ତ ଜରୁରୀ । ସଚେତନତା ଆସିଲେ ପରିବେଶ ବହୁଳ ଭାବରେ ସୁରକ୍ଷିତ ହୋଇ ରହିବ, ଏଥିରେ ସନ୍ଦେହ ନାହିଁ । ଏ ପୃଥିବୀ ଆମର, ଆମେ ଏ ପୃଥିବୀର । ଆମେ ଯଦି ପୃଥିବୀର ବାତାବରଣକୁ ସୁରକ୍ଷିତ କରି ନରଖିବା ତେବେ ଆଉ ରଖିବ କିଏ ? ସୃଷ୍ଟିର ଶ୍ରେଷ୍ଠଜୀବ ହିସାବରେ ଏହା ତ ଆମର ପରମ କର୍ତ୍ତବ୍ୟ, ଏଥିରେ ଦ୍ୱିରୁକ୍ତି ନାହିଁ ।

□□

# ଜୀବନକଥା

ଆମେ ଭାରତୀୟମାନେ ଏକ ସଙ୍କଟରେ ପଡ଼ିଯାଇଛୁ । ଏହା ହେଉଛି ଚେତନାର ସଙ୍କଟ । ଏହି ସଙ୍କଟ ହେତୁ ଆମେ ଥୟ କରିପାରୁନାହୁଁ କେଉଁଟି ବଡ଼ ଓ କେଉଁଟି ସାନ । ଧନ ବଡ଼ ଅଥବା ମନ ବଡ଼, ବସ୍ତୁ ବଡ଼ ଅଥବା ଚେତନା ବଡ଼ । ପୁଣି ବୁଦ୍ଧି ବଡ଼ ଅଥବା ଜ୍ଞାନ ବଡ଼ । ଜ୍ଞାନ କହିଲେ ଆମେ ସୂଚନା ସଂଗ୍ରହ ବା ସମ୍ବାଦ ସଂଗ୍ରହକୁ ବୁଝିବା ନାହିଁ । ଏହା ଆଶିଂକ ଜ୍ଞାନ, ପୂର୍ଣ୍ଣଜ୍ଞାନ ହେଉଛି ଜଗତ ବିଷୟରେ ଜ୍ଞାନ ସହିତ ଜୀବନ ବିଷୟରେ ଜ୍ଞାନ ଯାହାକୁ ଆତ୍ମଜ୍ଞାନ ବୋଲି କୁହାଯାଇପାରିବ । ନିଜ ଭିତରର ଗଭୀରତମ ଗଭୀରତାରେ ଥିବା ସତ୍ତା ସମ୍ବନ୍ଧରେ ଜ୍ଞାନ ମଧ୍ୟ ଏଥି ସହିତ ସମ୍ପର୍କିତ । ଦୁଇଟିଯାକ କଥା ଏକାଠି ରହିପାରୁନାହିଁ, ରହିପାରିବ ବୋଲି ମଧ୍ୟ ବିଶ୍ୱାସ କରିହେଉନାହିଁ ।

ଏପରି ସଙ୍କଟ ଆଦୌ ବିସ୍ମୟକର ନୁହେଁ, କାରଣ ପ୍ରତ୍ୟେକ ବିବର୍ତ୍ତନର ମୋଡ଼ରେ ଏପରି ଏକ ସଙ୍କଟ ଆସେ । ତାହାର ସମାଧାନ କରାଯାଏ, ବିବର୍ତ୍ତନ ଧାରାରେ ଗତି ପୁଣି ପ୍ରଗତିରେ ପରିଣତ ହୁଏ । କେତେକେତେ ସଙ୍କଟର ବାଟ ଦେଇ ସେ ଦିନର ମଣିଷ ଆଜିର ମଣିଷରେ ରୂପାନ୍ତରିତ ହୋଇଛି । ଆଲୋଚ୍ୟ ସଙ୍କଟଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ମାତ୍ର ଭୟଙ୍କର ନୁହେଁ କାରଣ ଏହାର ସମାଧାନ ଅତ୍ୟନ୍ତ କଷ୍ଟକର ନୁହେଁ । ପ୍ରଚେଷ୍ଟା ଆଗରୁ ପ୍ରୟାସ ବା ଇଚ୍ଛାଟିଏ ଏକାନ୍ତ ଆବଶ୍ୟକ ହୋଇଥାଏ ।

ଆଗରୁ ବସ୍ତୁ ଆମର ଏ ପୃଥିବୀରେ ଏତେ ନ ଥିଲା, ଆଜି ଯେତେ ପରିମାଣରେ ଅଛି । ଭାରତବର୍ଷରେ ମଧ୍ୟ ଏତେ ବସ୍ତୁ ନ ଥିଲା । ବହୁ ବସ୍ତୁ ହେଉଛି ବିଜ୍ଞାନ ଓ ବୈଜ୍ଞାନିକ କଳାକୌଶଳର ଅବଦାନ । ବସ୍ତୁ ସହିତ ବସ୍ତୁର ବ୍ୟବହାର ବିଧି ମିଶି ଏକ ଭିନ୍ନ ପରିବେଶ

ସୃଷ୍ଟି ହୋଇଛି ସାରା ପୃଥିବୀରେ ତଥା ଭାରତବର୍ଷରେ । ବୈଜ୍ଞାନିକ କୌଶଳରେ ନିର୍ମିତ ବସ୍ତୁମାନ ଆମର ବହୁ ଉପକାର କରୁଛନ୍ତି । ଆମର ସମୟ ବଞ୍ଚାଉଛନ୍ତି, ଶକ୍ତି ମଧ୍ୟ । ଜୀବନକୁ ଅପେକ୍ଷାକୃତ ସହଜ ସରଳ କରିଛନ୍ତି । ସାରା ବିଶ୍ୱର ଖବର ଆମ ପାଖରେ ନିମିଷିକେ ପହଞ୍ଚି ପାରୁଛି, ଆମ ଖବର ମଧ୍ୟ ଦୂରକୁ ଦୂରକୁ ବହୁ ଦୂରକୁ କ୍ଷଣକରେ ପ୍ରସାରିତ ହୋଇଯାଉଛି । ଆତ୍ମୀୟମାନଙ୍କର ଯିବା ଆସିବା, ଖବରଅନ୍ତରର ଉଦ୍‌ବେଗ୍ ସହଜରେ ଦୂର ହୋଇପାରୁଛି । ବସ୍ତୁ ଆମର ଶାରୀରିକ ଶ୍ରମକୁ ଲଘୁ କରୁଛି, ମାନସିକ ଉଦ୍‌ବେଗ ଦୂର କରୁଛି । ସୁଖ ଆଣି ଦେଉଛି । ଆମ ବାପ ଅଜା ନ ପହଞ୍ଚିଥିବା ସ୍ଥାନରେ ଆମକୁ ସହଜରେ ପହଞ୍ଚାଇ ଦେଉଛି, ସେମାନେ ଦେଖିନଥିବା ସ୍ଥାନର ଦୃଶ୍ୟ ଆମକୁ ଦେଖାଇ ଦେଉଛି । ଆତ୍ମୀୟସ୍ୱଜନଙ୍କଠାରୁ ଦୂରରେ ରହି ମଧ୍ୟ ଅତି ନିକଟରେ ରହିବାର ମାନସିକ ଅନୁଭବ ଆଣି ଦେଉଛି । ରୋଷେଇ ଠାରୁ ଗମନାଗମନ, ସମ୍ବାଦ ସଂଗ୍ରହ ଠାରୁ ସମ୍ବାଦ ପ୍ରେରଣ ସବୁ କିଛିକୁ ସହଜ କରିଦେଇଛି ବିଜ୍ଞାନ । ଏଥିପାଇଁ ବିଜ୍ଞାନ ନିକଟରେ ଆମେ ଋଣୀ । ଏହା ପ୍ରତି କୃତଜ୍ଞତା ଜଣାଇବା ଆମର କର୍ତ୍ତବ୍ୟ । ଏହା ଆମ ନିକଟରେ ଅଭିନନ୍ଦନୀୟ । ମାତ୍ର ଏହାର ଅପବ୍ୟବହାର ସର୍ବଥା ନିନ୍ଦନୀୟ । ଉଦାହରଣସ୍ୱରୂପ ଯାନବାହାନ ଆମର ଦରକାର ମାତ୍ର ନିର୍ଦ୍ଧାରିତ ଗତି ଠାରୁ ଦ୍ରୁତ ଗତିରେ ଯାଇ ନିଜର କ୍ଷତି ତଥା ଅନ୍ୟର ସର୍ବନାଶ କରିବା ଅତ୍ୟନ୍ତ ନିନ୍ଦନୀୟ କଥା । ସର୍ପିଳ ଗତିରେ ଯାନ ଚଳାଇ ନିଜର କ୍ଷତି ଓ ଅନ୍ୟ ଅଧିକ କ୍ଷତି କରିବାର ଅଧିକାର ଆମର ଅଛି କି ? ଏ ପ୍ରଶ୍ନ ଆମ ନିଜକୁ ପଚାରିବାର ଅଛି । ଏହା ହିଁ ହେଉଛି ଅପସଂସ୍କୃତିର ଚିହ୍ନ, ସଂସ୍କାରର ଅଭାବ । ବୃଥା ଅହଂକାରର ବ୍ୟର୍ଥ ପ୍ରଭାବ । ଆମେ ଯିବା ବୋଲି କ'ଣ ବାଟରେ ଆଉ କାହାକୁ ଚଲାଇ ଦେବାନାହିଁ ବା ଯାନରେ ଯିବାକୁ ଦେବା ନାହିଁ–ଏହା କ'ଣ ବିଜ୍ଞତା, ବୌଦ୍ଧିକତା ଅଥବା ବିଚାରଶୀଳତା । ଏଥିପାଇଁ କ'ଣ ବଡ଼ ବଡ଼ ଡିଗ୍ରୀ ନିହାତି ଦରକାର ? ବାସ୍ତବରେ ଏହା ହିଁ ଅନଧିକାରତ୍ୱର ଚିହ୍ନ, ଅଜ୍ଞାନତାର ପୂର୍ଣ୍ଣ ପରିଚୟ । ଆମ ନିଜ ପାଇଁ ସତର୍କତା ଯେପରି ଅତ୍ୟନ୍ତ ଜରୁରୀ, ଅନ୍ୟ ପ୍ରତି ସଚେତନତା ମଧ୍ୟ ସେପରି ଜରୁରୀ । ମନେପଡୁଛି ଶ୍ରୀଅରବିନ୍ଦ କହିଥିବା କଥାଟିଏ । କଥାଟି ଏହପରି ଯେ ଧନ ବା ବସ୍ତୁ ଭୋଗ ପାଇଁ ଉଦ୍ଦିଷ୍ଟ ନୁହେଁ, ଆବଶ୍ୟକତାର ପୂରଣ ପାଇଁ ଅଭିପ୍ରେତ । ତାଙ୍କ ମତରେ "ଅର୍ଥଶକ୍ତି ଏବଂ ଏହା ଯେଉଁ ସବୁ ଉପାୟ ଓ ଉପକରଣ ଆଣିଦିଏ, ସେଥିରୁ ବୈରାଗୀ ପରି ସଙ୍କୋଚରେ ମୁଖ ଫେରାଇ ନିଅ ନାହିଁ, ଅନ୍ୟ ଦିଗରେ ପୁଣି ଏସବୁ ଉପରେ କୌଣସି ରାଜସିକ ଆସକ୍ତି ପୋଷଣ କରନାହିଁ ବା ଏହାର ଭୋଗରେ ନିଜକୁ ଛାଡ଼ି ଦେଇ ଏହାର ଏକାନ୍ତ ଦାସ ହୋଇପଡ଼ନାହିଁ ।"

ବିଜ୍ଞାନର ଅପବ୍ୟବହାରକୁ ରୋକିବା ପାଇଁ ଆବଶ୍ୟକ ଟିକିଏ ଆତ୍ମବିଚାର, ଧରାକୁ ସରାଜ୍ଞାନ ନ କରି ଧରାଜ୍ଞାନ କରିବାର ମଣିଷପଣିଆ । ମଣିଷପଣିଆର ତାଲିମ

ପାଇଁ କୌଣସି ଅନୁଷ୍ଠାନ ଥିବା କଥା ଏ ଲେଖକ ଜାଣିନାହିଁ ଅଥବା ମଣିଷପଣିଆର ମାପକାଠି ଭାବରେ କୌଣସି ପ୍ରମାଣପତ୍ର କେଉଁ ଅନୁଷ୍ଠାନରେ ପ୍ରଦତ୍ତ ହେବାର ଏ ଲେଖକଙ୍କୁ ଗୋଚର ନାହିଁ । ଏହା ନିର୍ଭର କରେ ପରିବାରର ଶିକ୍ଷା, ସଂସ୍କାର ଓ ନିଜର ଆତ୍ମଅନୁଶୀଳନ ଉପରେ ।

ବାଟ ବତେଇଦେବା ଓ ବାଟ ଚାଲିବା ଯେପରି ଏକା କଥା ନୁହେଁ, ପଢ଼ାଇଦେବା ଓ ପଢ଼ିବା ସେପରି ଏକା କଥା ନୁହେଁ । ବାଟ ଚାଲିବା ବା ପଢ଼ିବା ଆମ ଉପରେ ନିର୍ଭର କରେ । ବିଶେଷତଃ ଜୀବନ ପାଠ ପଢ଼ିବା ପାଇଁ ନିଜ ଭିତରୁ ଆଗ୍ରହ ସୃଷ୍ଟି ହେବା ଦରକାର ।

ଜୀବନ କେତେ ମୂଲ୍ୟବାନ, ତାହା କ'ଣ ମରୁ ଝରଣା ପରି ବାଲିରେ ଅଳ୍ପ ବାଟ ପରେ ଶୁଖିଯିବାକୁ ଆସିଛି ନା କୁଳୁକୁଳୁ ନାଦରେ ବହୁ ଦୂର ପର୍ଯ୍ୟନ୍ତ ବହିଯିବାକୁ ଆସିଛି, ତାହା ଆଗ ଭାବିବାର କଥା । ହିତାହିତ ଜ୍ଞାନ ହରାଇ ଦେବା ଅର୍ଥ ଭାବନା ଶକ୍ତିକୁ ହରାଇ ଦେବା । ଭାବନା ଶକ୍ତିକୁ ହରାଇ ଦେବା ଅର୍ଥ ସବୁ କିଛିକୁ ହରାଇଦେବା । କିଛି ଟଙ୍କା ହଜିଗଲେ ତାହା ହୁଏତ କେମିତି କେମିତି ପୂରଣ ହୋଇଯିବ, ମାତ୍ର ଭାବନା ଶକ୍ତି ହଜିଗଲେ ଯେଉଁ କ୍ଷତି ହେବ, ତାହା ଅପୂରଣୀୟ ହୋଇ ରହିଯିବ । ଭାବନା ଶକ୍ତି ବା ଭାବିବାର ଶକ୍ତି ହିଁ ଆମକୁ ମଣିଷ ପଦବାଚ୍ୟ କରିଛି । ମନ ହିଁ ଭାବିବାର ସ୍ଥାନ, ମନନ ହିଁ ଚେତନାର ସିଂହାସନ । ସଦ୍‌ଭାବନା ହେଉଛି ଶୁଦ୍ଧ ମନର ନିର୍ମଳ ଅଭିବ୍ୟକ୍ତି ଓ ନିରପେକ୍ଷ ନିଷ୍ପତ୍ତି ।

ଅତଏବ ଆମେ ସମୟୋପଯୋଗୀ ହେବା । ଆମକୁ ବହୁ କଥା ଯାହା ପରସ୍ପରର ବିପରୀତ ଧର୍ମୀ ପରି ମନେ ହେଉଛନ୍ତି, ସେସବୁକୁ ମିଶାଇବାକୁ ପଡ଼ିବ । ଏଇ ଯେପରି ବୌଦ୍ଧିକତା ଓ ହୃଦୟବତ୍ତା, ଧନ ଓ ମନ, ବୁଦ୍ଧି ଓ ଜ୍ଞାନ, ଭାବ ଓ ଭାବନା, ମନ ଓ ମନନର ସମନ୍ୱୟ ଘଟାଇବାକୁ ପଡ଼ିବ । ନ ହେଲେ ଜୀବନ ଏକପାଖିଆ ହୋଇଯିବ, ପୂର୍ଣ୍ଣ ହୋଇପାରିବ ନାହିଁ । ବ୍ୟକ୍ତି ଜୀବନ ପୂର୍ଣ୍ଣ ନ ହେଲେ ବିଶ୍ୱ ଜୀବନ ମଧ୍ୟ ପୂର୍ଣ୍ଣ ହେବ ନାହିଁ, ଅପୂର୍ଣ୍ଣ ହୋଇ ରହିଯିବ । ଅତଏବ ବିଶ୍ୱଜୀବନର ପୂର୍ଣ୍ଣତା ନିର୍ଭର କରେ ଆମ ଜୀବନର ପୂର୍ଣ୍ଣତା ଉପରେ । ଆମେ ବିଶ୍ୱର ପ୍ରତିନିଧି, ଆମ ଜୀବନ ହେଉଛି ବିଶ୍ୱ ଜୀବନର ଏକକ । ଏହି ପୂର୍ଣ୍ଣତା ନିର୍ଭର କରେ ଆମର ମାନସିକତା ଉପରେ ଅର୍ଥାତ୍ ସମନ୍ୱୟର ମାନସିକତା ଉପରେ । ସ୍ୱାମୀ ବିବେକାନନ୍ଦ କହୁଥିଲେ, "ବ୍ୟକ୍ତିର ବୌଦ୍ଧିକତା କେବଳ ଯଥେଷ୍ଟ ନୁହେଁ, ଏହା ସହିତ ହୃଦୟବତ୍ତାର ମିଶ୍ରଣ ଏକାନ୍ତ ଆବଶ୍ୟକ ଯାହାଦ୍ୱାରା ବ୍ୟକ୍ତିର ପୂର୍ଣ୍ଣତା ସମ୍ଭବ ହୋଇଥାଏ ।"

ଅତଏବ ସମୟକୁ ନିନ୍ଦା ନ କରି, ନିଜର ମନ୍ଦଗୁଣକୁ ନିନ୍ଦା କରିବାର ସମୟ ଆସିଛି । ବିବର୍ତ୍ତନକୁ ବିରୋଧ ନ କରି ଆଗେଇ ନେବାରେ ସହାୟକ ହେବାର ସମୟ ଆସିଛି । ନିଜ ପ୍ରତି ସତର୍କ ରହି ଅନ୍ୟ ପ୍ରତି ସଚେତନ ହେବାର ସମୟ ଆସିଛି । ବାହାରେ ବାହାରେ ଭ୍ରମିବା ସହିତ ଭିତରେ ଭିତରେ ସାମର୍ଥ୍ୟ ଅନୁସାରେ ଗମିବାର ସମୟ ଆସିଛି । ସଚ୍ଚା ଭାରତୀୟ ହେବାର ସମୟ ଆସିଛି ଯିଏକି ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଆପଣାର କରିପାରେ ଓ ସମସ୍ତଙ୍କର ଆପଣାର ହୋଇପାରେ । 'ମୁଁ ନୁହେଁ ଆମେ' ବୋଲି କହିବାର ସମୟ ଆସିଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟର ଚେତନାର ସମନ୍ୱୟର ସମୟ ଆସିଛି । ଫଳତଃ ଏକ ବିଶ୍ୱ ସଂସ୍କୃତିର ବିକାଶର ସମୟ ଆସିଛି । ଏହି ସମୟର ସଦ୍‌ବ୍ୟବହାର ଆମେ କରିବା କି ନାହିଁ, ଯଦି କରିବା କିପରି କରିବା ତାହା ବିଚାର କରିବାର ବେଳ ଆସିଛି ।



# ଶୀତ ପରେ ବସନ୍ତ ଆସିବ

ଇଂରେଜ ସାହେବମାନେ ବେପାରୀରୁ ଶାସକ ହୋଇ ଆମକୁ ଅଧୀନସ୍ଥ କରି ଭଲ କରି ବୁଝାଇ ଦେଲେ ଯେ ଆମର କିଛି ନଥିଲା, ନଥିଲା ଶିକ୍ଷା, ନଥିଲା ସଭ୍ୟତା, ନ ଥିଲା ସଂସ୍କୃତି । ଆମେ କୁଆଡ଼େ...ଅନାର୍ଯ୍ୟ ଜାତି । ଆମେ ମଧ୍ୟ ସେତେବେଳେ ପରିସ୍ଥିତି ଚାପରେ ହେଉ ବା ଲାଭ ଲାଳସାରେ ହେଉ ମାନିନେଲୁ ଯେ ଆମର କିଛି ନଥିଲା । ଅବଶ୍ୟ ସେମାନେ ବହୁ ନୂଆ କଥା ଆଣିଲେ ଓ ଦେଲେ । ମାତ୍ର ଆମର କିଛି କଥା ନଥିଲା, ଏପରି ନୁହେଁ । ହଁ, ଆମ ନଦୀରେ ସ୍ଥାୟୀ ପୋଲ ନଥିଲା, ଆମ ସହରରେ ଡାକ ଘର ଓ ତାର ଘର ନଥିଲା, ଡାକ୍ତରଖାନା ନଥିଲା, ଇଂରାଜୀ ଭାଷାର ବିଦ୍ୟାଳୟ ନଥିଲା, ଥାନା କଚେରୀ ନଥିଲା, ଛାପାଖାନା ନଥିଲା, ରେଳଗାଡ଼ି ନଥିଲା, ବସ୍‌ଲରୀ ନଥିଲା, ମାତ୍ର ଥିଲା ମନରେ ବିଭୁଭକ୍ତି, ଶରୀରରେ ଅମାପଶକ୍ତି ଓ ଜୀବନରେ ଅସୀମ ଶାନ୍ତି । ଅବଶ୍ୟ ଇଂରେଜଙ୍କ ଆଗରୁ ମୋଗଲମାନଙ୍କ ଦ୍ୱାରା ଭାରତବର୍ଷ ଅତ୍ୟାଚାରିତ ହୋଇଥିଲା । ବିବେକ ବିଚାର ବୋଲି କଥାଟିଏ ଭାରତୀୟ ଜୀବନ ଧାରାରେ ଥିଲା "ମତେ କେହି...ଠକିବେ ନାହିଁ କି ମୁଁ କାହାକୁ ଠକିବି ନାହିଁ ।" ଏମିତି ଏକ ଭାବଧାରା ସାଧାରଣ ଜୀବନରେ ଥିଲା ।

ସଂଗୀତ,ସାହିତ୍ୟ ନୃତ୍ୟ ପ୍ରତି ଆଦରଥିଲା । ଜୀବନ ଟିକିଏ ଦୂର ଅତୀତରେ ଶାସ୍ତ୍ରାନୁମୋଦିତ ଥିଲା । ଯୋଗଥିଲା, ବ୍ୟାୟାମ ଥିଲା, ଆୟୁର୍ବେଦ ଥିଲା, ଜ୍ୟୋତିର୍ବେଦ ଥିଲା,ବାସ୍ତୁଶାସ୍ତ୍ର, ଯୁଦ୍ଧଶାସ୍ତ୍ର, ଅଶ୍ୱଶାସ୍ତ୍ର, ସଂଗୀତଶାସ୍ତ୍ର, କାମଶାସ୍ତ୍ର ସମତେ ପ୍ରଭୃତ ଧର୍ମ ଶାସ୍ତ୍ର ଥିଲା । କର୍ମ ଅକର୍ମର ବିଚାର ଥିଲା, ଧର୍ମ ଅଧର୍ମର ବିଚାରଥିଲା, ନ୍ୟାୟ ଅନ୍ୟାୟର ବିଚାର

ଥିଲା । ଲୋକେ କଥା କଥାରେ କହୁଥିଲେ ଭାଗବତର ଉକ୍ତି -'ଆପଣା କଲା କର୍ମମାନ/ ଆଗୁଁ ହୋଇବ ସାବଧାନ ।' ପରସ୍ପର ଭିତରେ ଆପୋଷ ଆଲୋଚନା ମାଧ୍ୟମରେ ସମସ୍ୟାମାନଙ୍କର ସମାଧାନ ହେଉଥିଲା । ଏପରି ବ୍ୟବସ୍ଥାଟିକୁ କୁହାଯାଉଥିଲା 'ପଞ୍ଚମୁଖେ ହରି' । ବଡ଼ମାନଙ୍କୁ ସମ୍ମାନ ଥିଲା ବୟସ ଅନୁପାତରେ । ବୟସ ଥିଲା ମାନଦଣ୍ଡ ବଡ଼ସାନ ବିଚାରରେ । ଏଇଥିପାଇଁ ସମ୍ମାନ ଯେ ସେ ମୋଠାରୁ ଆଗରୁ ଏଇ ପୃଥିବୀକୁ ଆସିଛନ୍ତି, ଅତଏବ ମୋଠାରୁ ତାଙ୍କର ଜୀବନ ଓ ଜଗତ ସଂପର୍କରେ ଅଭିଜ୍ଞତା ଅଧିକ । ତେଣୁ ସେ ମୋର ସମ୍ମାନନୀୟ । ବଡ଼ମାନେ ମଧ୍ୟ ସାନମାନଙ୍କୁ ସାଇଭାଇ ଗାଁ ଗଣ୍ଡା ନିର୍ବିଶେଷରେ ଶ୍ରଦ୍ଧା କରୁଥିଲେ । ଶ୍ରଦ୍ଧା ଓ ସମ୍ମାନରେ ପାରିବାରିକ ଓ ସାମାଜିକ ଜୀବନ ବନ୍ଧା ହୋଇଥିଲା । ବଡ଼ମାନଙ୍କୁ ନମ୍ରତାର ସହିତ ନମସ୍କାର କରାଯାଉଥିଲା, କାରଣ ବୁଝିବାକୁ ହୋଇଥିଲା ଯେ ନମସ୍କାର ଆତ୍ମାକୁ କରାଯାଏ ବୋଲି । ଯେ କୌଣସି କାର୍ଯ୍ୟରେ ଆଗେଇଲା ବେଳକୁ ବଡ଼ମାନଙ୍କର ଆଶୀର୍ବାଦ ଦରକାର ପଡୁଥିଲା । ଭାରତବର୍ଷରେ ଆଶୀବାଦ ପରି ମୂଲ୍ୟବାନ କଥା ଆଉ କିଛି ନଥିଲା ବା ନାହିଁ । କିଏ ଆଜି ଏକଥାକୁ ମାନୁ ବି ନ ମାନୁ, କିଛି ଯାଏ ଆସେ ନାହିଁ ମାତ୍ର ଆଶୀର୍ବାଦ ହିଁ ଆଶୀର୍ବାଦ । ସୂର୍ଯ୍ୟ ହିଁ ସୂର୍ଯ୍ୟ । ଆମେ ଗୁରୁତ୍ୱ ଦେଲେ ସେ ସୂର୍ଯ୍ୟ, ନ ଦେଲେ ମଧ୍ୟ ସୂର୍ଯ୍ୟ ।

ବଡ଼ମାନଙ୍କୁ ଆବଶ୍ୟକତା ଅନୁସାରେ ପଚାରିବାକୁ ହେଉଥିଲା, ତାକୁ କୁହାଯାଏ 'ବଡ଼ ଥିଲେ ପଚାରି' ପୁଣି ବଡ଼ମାନେ ଆବଶ୍ୟକତା ଅନୁସାରେ ସାନମାନଙ୍କ ମତାମତ ଲୋଡୁଥିଲେ, ତାହାକୁ କୁହାଯାଏ 'ସାନ ଥିଲେ ବିଚାରି ।'

ପଂକ୍ତି ଭୋଜନ ଆଗରୁ ଗ୍ରାମମାନଙ୍କରେ ଥିଲା, ଏବେ ମଧ୍ୟ ରହିଛି, ତେବେ ପୂର୍ବର ସେଇ ସାବଲୀଳତା, ମଧୁମୟତା କମି ଯାଇଛି । କାହା ଘରୁ କିଏ ପଂକ୍ତି ଭୋଜନକୁ ନ ଆସିଲେ ତାକୁ ପୁନର୍ବାର ଲୋଡ଼ା ଯାଉଥିଲା, ଏଇ ଲୋଡ଼ିଲା ପଣଟି ଆଜି ଆଉ ନାହିଁ ନାହିଁ ଅର୍ଥ ଆମ ଯୋଗୁଁ ନାହଁ, ଆମେ ଚାହିଁଲେ ପୁଣି ଲୋଡ଼ିଲା ପଣ ଆସିବ ।

ଗୋଟିଏ ଏକାଠି ମନୋଭାବ ଥିଲା, ଘରେ ବାହାରେ ଏକାଠି ଚଳିବାର ଭାବଟିଏ ଥିଲା । ବିଦେଶୀ ଶିଖାଇ ଦେଲେ ଏକୁଟିଆ ଭାବ । ଭାଙ୍ଗିଗଲା ଏକାନ୍ନବର୍ତ୍ତୀ ପରିବାର । ଏକୁଟିଆ ରହିବାର ଏକବାଗିଆ ପଣଟିକୁ ବତେଇ ଦେଲେ । ଆଜିକାଲି ସିନା ଗୋଟିଏ ଅନ୍ନରେ ବହୁଲୋକ ବିଶିଷ୍ଟ ପରିବାରଟିଏ ରହିପାରିବ ନାହିଁ । କର୍ମସଂସ୍ଥାନର ସ୍ଥାନ ଭିନ୍ନଭିନ୍ନ ହୋଇଥିବାରୁ ଭିନ୍ନ ଭିନ୍ନ ସ୍ଥାନରେ ରହିବାକୁ ବାଧ ହେବାକୁ ପଡୁଛି । ଅନ୍ନରେ ସିନା ଏକାଠି ରହି ହେଉ ନାହିଁ, ମନରେ ଏକାଠି ରହିବାରେ ଅସୁବିଧା କାହିଁକି ? ବୁଝି ହେଉ ନାହିଁ । ତେବେ ଏତିକି ବୁଝି ହେଉଛି ଯେ ଏକୁଟିଆପଣ ଏହାର ମୂଳକାରଣ । ଏକୁଟିଆପଣର ମୂଳ କାରଣ ହେଉଛି ଏକବାଗିଆପଣ । ଏକ ବାଗିଆ ପଣର ମୂଳଟି ହେଉଛି 'ମୁଁ' କାର ।

'ମୁଁ' କାରର ବଡ଼ ଲକ୍ଷ୍ୟ ହେଉଛି ବଡ଼ ରାଜ୍ୟକୁ ଟୁକୁରା ଟୁକୁରା କରି ଭାଙ୍ଗି ଦେଇ ସେହି ଟୁକୁରା ରାଜ୍ୟରେ ବଡ଼ ରଜା ହେବା । ହେଲେ ପଣତ ତ ଲମ୍ବା ନୁହେଁ, ସେ ଅବା କେଉଁଠିକୁ ପାଏ ? ଲମ୍ବା ପଣତ ସିନା ସବୁଥିକୁ ପାଏ ।

ମଧୁର ହସଟିଏ ଦେଖିବାକୁ ମିଳୁନାହିଁ, ମଣିଷ ଯେତେ ଚତୁର ହେଲା ହସ ତା' ମୁହଁରୁ ସେତେ କମିଗଲା । ଯେଉଁ ହସ ରହିଲା ତାହା ହେଉଛି ସ୍ୱାର୍ଥସିଦ୍ଧି ପାଇଁ ହସ ଅଥବା କାର୍ଯ୍ୟ ଘେନା ପ୍ରୀତିର ହସ । ସେ ହସରେ ଆତ୍ମୀୟତା ନାହିଁ କି ଆନ୍ତରିକତା ନାହିଁ । ଚତୁରପଣରେ କିଛି ନେଇଯିବାପାଇଁ ସେ ହସରେ ଅଛି ବନିଶି କଣ୍ଟାରମାଳ । ସେ ନେବା ଧନ ନେବା ହେଉ, ଯଶ ପ୍ରଶଂସା ନେବା ହେଉ ଅଥବା ଭୋଟ ନେବା ହେଉ, ସ୍ୱାର୍ଥ ନଥିଲେ ହସ ତ ହସ, କାଳେ ଟିକିଏ ଗହିଁବାକୁ ପଡ଼ିବ ବୋଲି ମଣିଷ ଜାଣିଶୁଣି ମୁହଁ ବୁଲାଇ ଦେଉଛି ।

ନବା କଥା ପଡ଼ିଲେ ମଣିଷ ଆଗୁଆ, ଦବା କଥା ପଡ଼ିଲେ ଲୁଚୁଛି । ଧନ କଥା ଛାଡ଼ ଅନ୍ୟ ପାଇଁ ଟିକିଏ ସମୟ ଦେବାକୁ ମଧ ପ୍ରସ୍ତୁତ ନୁହେଁ । ସମୟ ନ ହେଲା ନାହିଁ, ଶୁଭେଚ୍ଛା ପୋଷଣ କରିବାକୁ ମଧ ଆଗ୍ରହ ନାହିଁ । କେବଳ 'ମୁଁ' 'ମୋର' ଶବ୍ଦ ଓ ଅର୍ଥମାନଙ୍କୁ ନେଇ ଜୀବନ । ଏପରି ଜୀବନ ସରୀସୃପ ପରି ଜୀବନ ବୋଲି କେତେକ କହିଥାନ୍ତି । ଏ ଜୀବନର କିଛି ସ୍ୱାଦ ନଥାଏ, ମାତ୍ର ସ୍ୱାଦଥିଲା ପରି ଲାଗେ ।

ମାଗଣା କଥା ଶୁଣିଲେ ମଣିଷ ଧାଉଁଛି, ଅସ୍ତବ୍ୟସ୍ତ ହୋଇ ଧାଉଛି, ପିନ୍ଧାବାସ ଅଧେ ତଳେ ଲୋଟୁଥିଲେ ମଧ ସେ ଆଡ଼କୁ ନିଘା ନାହିଁ । ଆଗପହଞ୍ଚି ମେଞ୍ଚାଏ ଝାମ୍ପି ଆଣିବାର ଲକ୍ଷ୍ୟ ପ୍ରବଳ ରହିଛି । ବିନା ପରିଶ୍ରମରେ ବସି ଖାଇବାର ନିଶା ପ୍ରବଳ । ଅନ୍ୟର କ୍ଷତି ଚିନ୍ତାରେ ସମୟ ଦେବାପାଇଁ ସମୟ ଅଛି । ନିଜର ଉନ୍ନତି ଚିନ୍ତା ଅଥବା ଅନ୍ୟର ଉପକାର ଚିନ୍ତାରେ ଲଗାଇବାପାଇଁ ସମୟ ନାହିଁ । ଅନ୍ୟଠାରୁ ଠକି ନେଇଯିବା ବଡ଼ ବାହାଦୂରି କଥା ବୋଲି ବିଚାର କରାଯାଉଛି ।

ଏମିତି ସମୟରେ ଆମେ ରହିଛୁ, ଏଥିପାଇଁ ଆଉ କେହି ଆମକୁ ଧନ୍ୟବାଦ ଦେଉ କି ନ ଦେଉ ଆମେ ନିଜକୁ ଧନ୍ୟବାଦ ଦେବାର କଥା । ଖାଲି ରହି ନାହୁଁ, ଆଶା ମଧ ରଖିଛୁ ଯେ ଶୀତ ଚାଲିଯିବ ଓ ବସନ୍ତ ଆସିବ, ରାତି ପାହିଯିବ ଓ ସକାଳ ଆସିବ । ଆଶାର ଏକ ଶକ୍ତି ଅଛି, ବିଶ୍ୱାସର ଏକ ଶକ୍ତି ଅଛି । ଆଶା ଓ ବିଶ୍ୱାସ ବୃଥାଯିବ ନାହିଁ । ସକାଳ ଆସିବ, ସୁନେଲି କିରଣରେ ଦିଗ ଉଜ୍ଜ୍ୱଳ ଦିଶିବ । ନୂଆ ଭାଇଚାରାର ବାସ୍ନାରେ ପରିବେଶ ବାସ୍ନାୟିତ ହେବ ।

ㅁㅁ

# କଥା, ଅକଥା ଓ ଅନ୍ଧକଥା

ବହୁକଥା ଶୁଣିବାକୁ ମିଳେ ଯାହା କାନକୁ ପରସ୍ପରର ବିରୋଧୀ ପରି ଲାଗେ । ଏଇ ଯେମିତି 'ଏକଶ୍ଚନ୍ଦ୍ର ତମୋହନ୍ତି' ପୁଣି ଏକ ଆଖି ଆଖି ନୁହେଁ, ଏକ ସାକ୍ଷୀ ସାକ୍ଷୀ ନୁହେଁ । ଏଇ ଯେମିତି 'ଋଷ ତରତର ବଣିଜମଠ' । ଏକଥାକୁ ଯଦି ପରିବା ବେପାରୀଟିଏ ବା ପରିବା ଦୋକାନୀଟିଏ ଅର୍ଥାତ ବଣିଜ ମଠ ବୋଲି ଶତ ପ୍ରତିଶତ ଗ୍ରହଣ କରି ନିଏ, ତେବେ କଥା ସରିଲା । ପୁଣି କୁହାଯାଏ 'ଶୁଭସ୍ୟ ଶୀଘ୍ରମ୍' ତେବେ ତାକୁ କ'ଣ କୁହାଯିବ ? ଜଣେ ଦ୍ୱିତୀୟ କଥାଟିକୁ ଅର୍ଥତ୍ 'ବିଳମ୍ବେ କାର୍ଯ୍ୟସିଦ୍ଧି'କୁ ମାନି ବିଳମ୍ବରେ ଆସି ରେଳଷ୍ଟେସନକୁ ଆସି ରେଳ ନପାଏ ଅଥବା ଏରୋଡ୍ରମକୁ ଆସି ଉଡ଼ାଜାହାଜ ଧରି ନପାରେ ତେବେ ତାହାକୁ କ'ଣ କୁହାଯିବ ? ମହାଜନଙ୍କର ଉପଦେଶ ତ ଜଣେ ମାନିଲା, ମାତ୍ର ଉପଦେଶ ଫଳପ୍ରଦ ହେଲା ନାହିଁ ।

ସତରେ, ଜୀବନରେ ବଞ୍ଚିବାର କଳା ଅତ୍ୟନ୍ତ ସୂକ୍ଷ୍ମ ଓ ଶାଣିତ । ଏହାକୁ ଜୀବନପାଠ ବୋଲି କୁହାଯିବ । ଏଥିପାଇଁ କୌଣସି ଡିଗ୍ରୀ ଡିପ୍ଲୋମା ନାହିଁ । କୌଣସି ବିଦ୍ୟାଳୟ, ମହାବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟରେ ପାଠ୍ୟ ଖସଡ଼ାରେ ଏପରି ଜୀବନପାଠ ସ୍ଥାନିତ ହୋଇଥିବାର ଏ ଲେଖକ ଜାଣେ ନାହିଁ । ବାସ୍ତବରେ ଏହାକୁ ନିଜେ ନିଜେ ବୁଝିଶୁଝି ଶିଖିବାର ଅଛି । ବଡ଼ମାନଙ୍କର ଅଥବା ସାନ ମାନଙ୍କଠାରୁ ବହୁତ କଥା ଶିଖିବାର ଅଛି । ଶିଖିବା ହିଁ ଜୀବନର ଚିହ୍ନ । ନଶିଖିବାର ମନୋଭାବ ହେଉଛି ମୃତ୍ୟୁର ଚିହ୍ନ । ଶିଖିବାକୁ ହେଲେ ଶୁଣିବା, ପଢିବା ଏବଂ ଅଙ୍ଗେଲିଭାଇବାକୁ ପଡ଼ିଥାଏ । ନ ଶୁଣିଲେ ବହୁକଥା ଜାଣି ହୁଏ ନାହିଁ, ତେଣୁ ଶ୍ରବଣ ନିତାନ୍ତ ଉପକାରୀ, ନ ପଢ଼ିଲେ ବହୁ କଥା ଜାଣି ହୁଏ ନାହିଁ, ତେଣୁ ପଢିବା ଏକାନ୍ତ ଆବଶ୍ୟକ । ଜୀବନର ଅଭିଜ୍ଞତାରୁ ବହୁ କଥା ଜାଣିହୁଏ ।

ବିଦଗ୍ଧ ସାହିତ୍ୟରେ ବଞ୍ଚିବାର କଳା ପ୍ରସଙ୍ଗରେ ବହୁକଥା କୁହାଯାଇଛି, ଲୋକସାହିତ୍ୟରେ ମଧ୍ୟ ବହୁକଥା କୁହାଯାଇଛି । ତେବେ ସେ କଥାକୁ ମନେରଖି ଯଥାସ୍ଥାନରେ ଯଥା ସମୟରେ ଏବଂ ଉପଯୁକ୍ତ ପାତ୍ରାପାତ୍ର ଭେଦରେ ପ୍ରୟୋଗ କରିବା ଆବଶ୍ୟକ । ଅସଲ କଥା ହେଉଛି ସ୍ଥାନ କାଳ ଓ ପାତ୍ରର ବିବେଚନା । ଯାହାର ଏଇ ବିବେଚନା ଯେତେ ଅଧିକ ତା'ର ଚଳିବା ସେତେ ସହଜ ହୁଏ । ସମସ୍ୟା ତା' ଜୀବନରେ ଅପେକ୍ଷାକୃତ କମ୍ ଆସେ । ପ୍ରକୃତରେ ଆମ ନିଜକୃତ ସମସ୍ୟା ଆମପାଇଁ ଅଧିକ କଷ୍ଟକର ହୋଇଥାଏ । ଅକଥା କହିବାରେ ଅକାର୍ଯ୍ୟ କରିବାରେ ଆମ ସମସ୍ୟା ବଢ଼ିଯାଏ । ଅକଥା କହିଲେ ଅଶ୍ଳୀଳ କଥା କେବଳ ନୁହେଁ ଭାବିଚିନ୍ତି କଥା ନ କହିବା ମଧ୍ୟ ଅକଥାରେ ଯାଏ । ଅକାର୍ଯ୍ୟ କେବଳ ହିଂସ୍ରତା ନୁହେଁ ଭାବିଚିନ୍ତି କାମ ନକରିବା ମଧ୍ୟ ଅକାର୍ଯ୍ୟର ଅନ୍ତର୍ଭୁକ୍ତ । ପ୍ରକୃତ ସଚେତନତା ହିଁ ଖୁସି ରହିବାର ମୂଳକଥା ଓ ମୌଳିକତା । ଯିଏ ନିଜ ସଂପର୍କରେ, ନିଜ ପରିବେଶ ସଂପର୍କରେ, ନିଜର ଭୂମିକା ସଂପର୍କରେ ଯେତେ ସଚେତନ, ତା'ର ମନସ୍ତାପ ତଥା ପଶ୍ଚାତ୍ତାପ ସେତେ କମ୍ । ଜୀବନର ସବୁ ସ୍ଥାନରେ ସବୁ ସମୟରେ ସମସ୍ତଙ୍କ ପାଖରେ ସବୁକଥା ସମାନ ଭାବରେ ଚଳେ ନାହିଁ । କେଉଁଠି ତରତର ହେବାକୁ ପଡ଼େ ତ ଆଉ କେଉଁଠି ବିଳମ୍ବ କରିବାକୁ ହୁଏ, କେଉଁଠାରୁ ଅପସରି ଯିବାକୁ ହୁଏ ତ ଆଉ କେଉଁଠାରେ ସମ୍ମୁଖ ସଂଗ୍ରାମ କରିବାକୁ ହୁଏ, କେଉଁଠାରେ ନୀରବ ରହିବାକୁ ପଡ଼େ ତ ଆଉ କେଉଁଠାରେ ଫଁ କରିବାକୁ ପଡ଼େ । ଜୀବନର ସବୁ କଥାର ମୂଲ୍ୟ ଅଛି, କିଛି କଥା ମୂଲ୍ୟହୀନ ନୁହେଁ, ମାତ୍ର ସବୁକଥାର ମୂଲ୍ୟାୟନ ସଚେତନତାର ଅନୁପାତରେ ହୋଇଥାଏ ଅର୍ଥାତ ସ୍ଥାନ କାଳ ପାତ୍ରର ବିବେଚନା ଅନୁସାରେ ହୋଇଥାଏ ।

କହିବାର ଅର୍ଥ ହେଉଛି ଜୀବନରେ ସବୁ କଥାକୁ ଆକ୍ଷରିକ ଅର୍ଥରେ ନେଲେ ଚଳେ ନାହିଁ, କେତେ କଥାକୁ ଲାକ୍ଷଣିକ ଅର୍ଥରେ କେତେ କଥାକୁ ବ୍ୟଞ୍ଜନାତ୍ମକ ଅର୍ଥରେ ଆଉ କେତେ କଥାକୁ ପ୍ରତୀକାତ୍ମକ ଅର୍ଥରେ ଗ୍ରହଣ କରିବାକୁ ହୁଏ । ସବୁକଥାକୁ ଆକ୍ଷରିକ ଅର୍ଥରେ ଗ୍ରହଣ କଲେ ବେଳେବେଳେ ଅବସ୍ଥା ଅସମ୍ଭାଳ ହୋଇ ପଡ଼େ । ଏଇ ଯେମିତି ସ୍ୱାମୀ କାର୍ଯ୍ୟକ୍ଷେତ୍ରରେ ବଦଳି ହୋଇ ଦୂର ସ୍ଥାନକୁ ଗଲେ ଓ ଗଲାବେଳେ ସ୍ତ୍ରୀଙ୍କୁ କହି ଦେଇଗଲେ, 'ମାଆ, ଲାଗିଲା, ମାକୁ ପିଲାଙ୍କ ସଙ୍ଗେ ପିଲାପରି ଚଳାଇବ ।' ସ୍ତ୍ରୀ କଥାଟିକୁ ମାନିଲେ ଏବଂ ଅକ୍ଷରେ ଅକ୍ଷରେ ପାଳନ କଲେ । ମା'ଙ୍କୁ ନିଜ ପିଲାଙ୍କ ସହ ପିଲା ପରି ଚଳାଇଲେ । ମାଆକୁ ଆଉ ଥାଳିରେ ଖାଇବାକୁ ନ ଦେଇ ପିଲାଙ୍କ ସଂଗେ ଥାଳିଆରେ ଖାଇବାକୁ ଦେଲେ । ପିଲାଙ୍କୁ ଯେତିକି ଓ ଯେମିତି ଖାଇବାକୁ ଦେଲେ ମାଙ୍କୁ ମଧ୍ୟ ସେତିକି ଓ ସେମିତି ଖାଇବାକୁ ଦେଲେ । କିଛି ଦିନପରେ ମା'ଙ୍କ ଦେହ ଦୁର୍ବଳ ହୋଇପଡ଼ିଲା ଓ ସେ ଅସୁସ୍ଥ ହୋଇ ଶଯ୍ୟାଶାୟୀ ହୋଇଗଲେ । ସ୍ୱାମୀ ଡକା ହୋଇ ଆସିଲେ ଓ ମାଙ୍କ ଏମିତି ଅବସ୍ଥା ଦେଖି ବିଚଳିତ ହୋଇପଡିଲେ । କାରଣ ପଚାରି ଜାଣିଲେ ଯେ ତାଙ୍କ ସ୍ତ୍ରୀ ତାଙ୍କ କଥାକୁ ତଥା

ଉପଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ସେ କ'ଣ କହିବେ, କ'ଣ କରିବେ କିଛି ଭାବି ନପାରି ହତବାକ୍ ହୋଇଗଲେ । ଏଇ କଥା ପଦକ ତାଙ୍କର ମନେ ପଡ଼ିଲା ଯେ, ସେ କହିଥିଲେ 'ମାଆ, ଲାଗିଲା, ମାଆକୁ ପିଲାଙ୍କ ସଂଗେ ପିଲାପରି ଚଳାଇବ ।' ଭିତରେ ପ୍ରତିଧ୍ୱନିତ ହେଲା ଦୋଷ କାହାର, ଦୋଷ କାହାର ଦୋଷ କାହାର... ? ସତରେ କଥା ବୁଝିବା ଓ କଥାର ଅର୍ଥ ବୁଝିବା ବେଳେବେଳେ ଅଲଗା ହୋଇଯାଏ ଆଉ ଅଲଗା ହୋଇଗଲେ ବହୁ ସମସ୍ୟା ସୃଷ୍ଟି ହୁଏ । ଶବ୍ଦର ଅର୍ଥ ବୁଝିବା ଯେତିକି ଦରକାର, ଶବ୍ଦରୁ ଭାବ ବୁଝିବା ତାହାଠାରୁ ଅଧିକ ଦରକାର । ଭାବ ବୁଝିବା ସ୍ଥାନକାଳ ପାତ୍ରାନୁସାରୀ ହେବା ଆବଶ୍ୟକ । ଏଇ ଯେମିତି ସୂର୍ପଣଖା ବୁଝିଲେ ଶ୍ରୀରାମଙ୍କ ପ୍ରଦତ୍ତ ଶବ୍ଦର ଅର୍ଥ ଏବଂ ଲକ୍ଷ୍ମଣ ବୁଝିଲେ ଭାବର ଅର୍ଥ ଯେ 'ବାବୁ ନାକ ଶିରୀ ଦାନ ଯୋଗ୍ୟ ଯୋଷାକୁ ।' ଏକା ଶବ୍ଦର ଭାବାର୍ଥ ସ୍ଥାନ ଅନୁସାରେ, କାଳ ଅନୁସାରେ ଓ ପାତ୍ର ଅନୁସାରେ ବଦଳିଗଲା । ଏଇ ଯେମିତି କଂସଙ୍କର ଦେହାନ୍ତରେ ମାଇଁମାନେ ଛାତି ବାଡ଼େଇ ମଥା ପିଟି କ୍ରନ୍ଦନକରୁଛନ୍ତି, ଭଣଜାକୃଷ୍ଣ ଶୋକାକୁଳ କଣ୍ଠରେ 'କି ଅପୂର୍ବ ଆଦର ସେ କରନ୍ତି ମତେ' ବୋଲି କହୁଛନ୍ତି । 'ଅପୂର୍ବ ଆଦର କହିଲେ 'ଅନାଦର' ଅର୍ଥବୋଧକ ଶବ୍ଦଟିଏ ସୃଷ୍ଟି ହେବ ନାହିଁ କି ?

ସତରେ ଜୀବନ ଜୀଇଁବା ଗୋଟିଏ କଥା ଆଉ ଜୀବନ ବଞ୍ଚିବା ଆଉ ଗୋଟିଏ କଥା । ପ୍ରକୃତରେ ଜୀବନ ଜୀଇଁବା ପାଇଁ ଯେତିକି କଥା ଶିଖିବା ଦରକାର ଜୀବନ ବଞ୍ଚିବା ପାଇଁ ତାହାଠାରୁ ଯଥେଷ୍ଟ ଅଧିକ କଥା ଶିଖିବା ଅଥବା ଜାଣିବା ଦରକାର । ଏଇ ଯେମିତି ଏକାକଥାକୁ ସାଙ୍ଗମାନଙ୍କ ଆଗରେ ଯେମିତି କହିବାକୁ ହେବ, ଗୁରୁଜନଙ୍କ ପାଖରେ ସେପରି କହି ହେବ ନାହିଁ, ସାନମାନଙ୍କ ପାଖରେ ସେପରି କହି ହେବ ନାହିଁ ଶବ୍ଦ ବଦଳିବାକୁ ବାଧ୍ୟ । ବାସ୍ତବରେ କଥା କହି ଜାଣିବା ଏକ କଳା ଯାହା ବଞ୍ଚିବାର କଳାର ଅନ୍ତର୍ଭୁକ୍ତ ଏକ ବିଶିଷ୍ଟ ବିଭବ । ତେଣୁ ତ କୁହାଯାଇଛି– 'କଥା ପୃଥିବୀକୁ ଚଳାଏ', 'କଥା କହି ଜାଣିଲେ ସୁନ୍ଦର', 'ଅଳ୍ପକଥା ଓ ସାରକଥା ହିଁ ବାଗ୍ମିତା' ଇତ୍ୟାଦି ଇତ୍ୟାଦି ।

କଥା କହିବାର କଳା ଓ କଥା ବୁଝିବାର କଳାକୁ ଶିଖିବା ପାଇଁ ଆଗ୍ରହ ଥିବା ଲୋଡ଼ା । ନହେଲେ ଏହା ଶିଖି ହେବ ନାହିଁ । ଆଗ୍ରହ ସହିତ ନିଜର ବିଚାର ବୁଦ୍ଧିକୁ ମିଶାଇବା ଦରକାର । ବେଳେବେଳେ 'ବଡ଼ଥିଲେ ପଚାରି' ଏବଂ 'ସାନଥିଲେ ବିଚାରି' କଥାକୁ ଗୁରୁତ୍ୱ ଦେବାକୁ ପଡ଼େ । ଏହା ସହିତ ନିଜ ଜୀବନର ଅଭିଜ୍ଞତା ସହିତ ମହାଜନ ଅର୍ଥାତ ମହାପୁରୁଷ ମାନଙ୍କର ବାଣୀ ଓ ବାର୍ତ୍ତାକୁ ମିଶାଇବା ଆବଶ୍ୟକ ହୁଏ । ସବ୍‌ଜାନତା ଭାବ ନୁହେଁ ନମନୀୟତାର ଭାବ ରହିଲେ ଗ୍ରହଣଶୀଳତା ବଢ଼େ ଏବଂ ଗ୍ରହଣଶୀଳତା ବଢ଼ିଲେ ଶିଖିବା ସହଜ ହୁଏ । ଜାଣିଲେ ଜଗତ ଜାଣି ହୁଏ । କଥା ପଦକରେ ଅଙ୍ଗୁଳିମାଳା ଦସ୍ୟୁ ପରିଣତ ହୁଏ ବୌଦ୍ଧ ଭିକ୍ଷୁରେ, ଚଣ୍ଡାଶୋକ ପରିଣତ ହୁଅନ୍ତି ଧର୍ମାଶୋକରେ ଆଉ ପୁରାଣର ଦସ୍ୟୁରତ୍ନାକର ମହର୍ଷି ବାଲ୍ମୀକିରେ ପରିଣତ ହୁଅନ୍ତି ।

□□

# ଆତ୍ମଶାନ୍ତି ଓ ଜୀବନଚିନ୍ତା

ଶରୀର, ପ୍ରାଣ, ମନ ଓ ଆତ୍ମାକୁ ନେଇ ମଣିଷର ଜୀବନ ଗଠିତ ହୋଇଛି । ଏହି ଚାରିଗୋଟି ସତ୍ତା ଭିତରୁ ଗୋଟିଏ ମାତ୍ର ଦୃଶ୍ୟ ଓ ଅନୁଭବ୍ୟ । ପ୍ରାଣ ଓ ମନ ଅଦୃଶ୍ୟ ମାତ୍ର ଅନୁଭବ୍ୟ । ପ୍ରାଣର ଅନୁଭବ ଭୋକ ଶୋଷରୁ ଆଉ ମନର ଅନୁଭବ ସୁଖଦୁଃଖରୁ । ଆତ୍ମା ଅଦୃଶ୍ୟ ଆଉ ଆମ ପାଇଁ ଏ ପର୍ଯ୍ୟନ୍ତ ଅନନୁଭବ୍ୟ ହୋଇ ରହିଛି ।

ଏ ଲେଖାରେ ମଣିଷର ମନ ସଂପର୍କରେ କିଛି ଆଲୋଚନା କରିବା । ମନ ଏକ ସୂକ୍ଷ୍ମ ସ୍ଥିତି ଯାହା ଭିତରେ ବହୁ ଉପାଦାନ ଏକତ୍ର ରହିଛି । ବହୁପ୍ରକାର କ୍ରିୟା ଓ ପ୍ରତିକ୍ରିୟା ଏକତ୍ର ରହିଛି । ବହୁ ଦ୍ୱନ୍ଦ୍ୱାତ୍ମକ କଥା ଏକତ୍ର ରହିଛି । ଏଇ ଯେମିତି ଶାନ୍ତି-ଅଶାନ୍ତି, ସନ୍ତୋଷ-ଅସନ୍ତୋଷ, ଭୁଲ-ଠିକ୍, ସୁବିଧା-ଅସୁବିଧା, ଲାଭ-କ୍ଷତି, ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ ଇତ୍ୟାଦି ଇତ୍ୟାଦି । ମନ ସ୍ୱଭାବତଃ ଚଞ୍ଚଳ । ଗତି ତା'ର ଅତି ପ୍ରଖର, କ୍ଷଣକ ଭିତରେ ସମଗ୍ର ବିଶାଳ ବିଶ୍ୱର ପରିକ୍ରମା ସେ କରିପାରେ । କଳ୍ପନା ପ୍ରବଣତା ମନର ଏକ ମୌଳିକ ଉପାଦାନ । ଏହା ମାଧ୍ୟମରେ ସେ ଭଲ କଳ୍ପନା କରିପାରେ, ମନ୍ଦ କଳ୍ପନା ମଧ୍ୟ କରିପାରେ । ମନର ଉଦାରତା, ପ୍ରଶସ୍ତତା ଉପରେ କଳ୍ପନା ନିର୍ଭର କରେ । ମନର ଗଭୀରତା ଉପରେ କଳ୍ପନା ନିର୍ଭର କରେ । ନିଜର କଳ୍ପନାକୁ ନିଜ ଚେତନାର ବିକାଶ ତଥା ଅନ୍ୟମାନଙ୍କର ବିକାଶନିମନ୍ତେ ପ୍ରୟୋଗ କରାଯାଇପାରେ । ଭଲଭଲ କଥାର କଳ୍ପନା କଲେ ମନ ଶାନ୍ତ ଓ ଏକାଗ୍ର ହୁଏ । ଅନ୍ୟର କ୍ଷତି ବା ଅମଙ୍ଗଳର କଳ୍ପନା କଲେ ନିଜ ମନ କଳୁଷିତ ଓ କଳଙ୍କିତ ହେବା ସହିତ ଅନ୍ୟର ମଧ୍ୟ କ୍ଷତି ଘଟେ । ଅନ୍ୟର ମନ୍ଦ ପାଞ୍ଚିଲେ ନିଜର ମନ୍ଦ ହୁଏ ବୋଲି ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି । ଅନ୍ୟର ମନ୍ଦ ପାଞ୍ଚିବା ଅପେକ୍ଷା ଥିବା ସହଜ,

ମାତ୍ର ଅନ୍ୟର ଶୁଭକାମନା ଅତ୍ୟନ୍ତ କଠିନ । ଅନ୍ୟକୁ ନିଜପରି ନ ଦେଖିଲେ ଏହା ସମ୍ଭବ ହୁଏ ନାହିଁ । ଧନ ନ ଦେଲେ ନାହିଁ, ସମୟ ନ ଦେଲେ ନାହିଁ, ଶୁଭେଚ୍ଛା ତ ଦେଇ ହେବ ଯାହା ମନକୁ ଶାନ୍ତ କରିବ, ପ୍ରଶସ୍ତ କରିବ । ଏଇ ମନରେ ରହିଛି ଶ୍ରଦ୍ଧା ଓ ଅଶ୍ରଦ୍ଧାର ଭାବ ।

ଜୀବନ ଓ ଜଗତକୁ ଶ୍ରଦ୍ଧା କରିବା ଏକ ଭଗବତ୍ ସଦ୍‌ଗୁଣ । ଏହା ସମସ୍ତଙ୍କ ପାଖରେ ନଥାଏ । ଏହାକୁ ସଂସ୍କାରର ଏକଦିଗ୍ ବୋଲି କୁହାଯାଇପାରିବ । ଏହା ପ୍ରାୟତଃ ଜନ୍ମଗତ, ତେବେ ଜନ୍ମଗତ ନାହିଁ ବୋଲି ଜଣେ ହତୋତ୍ସାହ ହେବ ନାହିଁ କାରଣ ଏହା ମଧ୍ୟ ଆତ୍ମବିଶ୍ଳେଷଣ, ଲୋକଚରିତ୍ର ଅଧ୍ୟୟନ, ପଠନ, ମନନ ଦ୍ୱାରା ସଂଗଠିତ ହୋଇଥାଏ । ଜୀବନକୁ ସଂସ୍କାର ହିଁ ମୂଲ୍ୟ ଦିଏ । ଅନ୍ୟମାନଙ୍କ ସହିତ ଚଳଣି ଶିଖାଏ ।

ମନରେ ହିଂସା, ଈର୍ଷା, ଛଳନା, କ୍ରୋଧ, କଳହଭାବ, ବିରକ୍ତି ଓ ଘୃଣା ପରି ଅନେକ କଥା ଅପକଥା ଭାବରେ ରହିଛି ଯେଉଁମାନେ କି ଶାନ୍ତି ପରିବର୍ତ୍ତେ ମନରେ ଅଶାନ୍ତି ଭରି ଦିଅନ୍ତି । ସେ ଅଶାନ୍ତି ବହୁଦିନ ଧରି ରହିଗଲେ ଡାଳ, ପତ୍ର, ଶାଖା ମେଲେ । ଆଉ ସହଜରେ ଭିତରୁ ଯାଏ ନାହିଁ । ଅଶାନ୍ତିର ପ୍ରଭାବରେ ସବୁଥାଇ ମଣିଷ ନିଃସ୍ୱ ହୋଇଯାଏ । ସବୁଥିଲେ ମଧ କିଛି ନଥିଲା ପରି ଲାଗେ । ଅଶାନ୍ତି କରିଦିଏ ମଣିଷକୁ ବ୍ୟତିବ୍ୟସ୍ତ ଓ ବିପର୍ଯ୍ୟସ୍ତ । ସେ କାହାକୁ ସବୁ କଥା କହିପାରେନା କି ନିଜେ ମଧ୍ୟ ସହିପାରେନା । ମନ ଗୁମୁରୁଥାଏ ସେଇ ଅଶାନ୍ତିରେ । ଘରିପଟର କିଛିକଥା ଭଲ ଲାଗେ ନାହିଁ ସତେ ଅବା ବେଦରେ ଓଁକାର ନାହିଁ, ପୂର୍ଣ୍ଣଜହ୍ନରେ ଜୋଛନା ନାହିଁ, ସୂର୍ଯ୍ୟରେ ତେଜ ନାହିଁ, ଇତ୍ୟାଦି ଇତ୍ୟାଦି ।

କେତେ କାରଣରୁ ମନରେ ଅଶାନ୍ତି ଆସେ । ଥରେ ସେ ମନକୁ ଆସିଲେ ସହଜରେ ଛାଡି ଯାଏନା । ଅନ୍ୟ ସହିତ ନିଜକୁ ତୁଳନା କରିବାରେ ଅଶାନ୍ତି ଆସେ । ତୁଳନା କଲେ ହୀନମଣ୍ୟତା ସୃଷ୍ଟି ହୁଏ ଏବଂ ତାହା ହୁଏ ଅଶାନ୍ତିର କାରଣ । ଅନ୍ୟର ବସ୍ତୁ ସହିତ ନିଜବସ୍ତୁର ତୁଳନା, ଅନ୍ୟର ପରିବେଶ ସହିତ ନିଜର ପରିବେଶର ତୁଳନା ଅତ୍ୟନ୍ତ ବିପଜ୍ଜନକ । ଧନ ଦରକାର ମାତ୍ର ଧନଜନିତ ସନ୍ତୋଷ ନ ରହିଲେ ସେଇ ଧନ ହୁଏ ଅଶାନ୍ତିର କାରଣ । ଖାଦ୍ୟ, ବସ୍ତ୍ର, ବାସଗୃହ ଆମର ଏକାନ୍ତ ଦରକାର ମାତ୍ର ଏସବୁ ସହିତ ଆତ୍ମସନ୍ତୋଷ ନ ମିଳିଲେ ସବୁ ଦୁଃସହ ହୋଇଉଠେ । ଅତଏବ ଆତ୍ମସନ୍ତୋଷ ଦିଏ ଆତ୍ମଶାନ୍ତି, ଏହା ପ୍ରମାଣିତ ।

ଅଭିଯୋଗ ଆଣେ ଅଶାନ୍ତି, ଅନ୍ୟମାନଙ୍କ ବିରୁଦ୍ଧରେ ଅଭିଯୋଗ (ତାହା ଘରେ ହେଉ ବା ବାହାରେ ହେଉ), ପରିସ୍ଥିତି ବିରୁଦ୍ଧରେ ଅଭିଯୋଗ ମନକୁ ବିକ୍ଷୁବ୍ଧ କରେ । ମନ ବିଚଳିତ ହୁଏ ଏବଂ ଶାନ୍ତି ବଦଳରେ ଅଶାନ୍ତିକୁ ଡାକି ଆଣେ । ଯାହାର ଅଭିଯୋଗ ଯେତେ ଅଧିକ, ତାର ଅଶାନ୍ତି ସେତେ ଅଧିକ । ଅଭିଯୋଗ ଏତେ ଲମ୍ବିଯାଏ ଯେ ତାହା

ଈଶ୍ୱରଙ୍କ ପର୍ଯ୍ୟନ୍ତ ଲମ୍ବିଯାଏ ଅର୍ଥାତ ଈଶ୍ୱରଙ୍କୁ ଜଣେ ଦୋଷୀ ସାବ୍ୟସ୍ତ କରେ । ଏପରି ଅଭିଯୋଗ ଯୋଗୁଁ କୌଣସି ଲାଭ ହୁଏ ନାହିଁ ବରଂ ଅନେକ କ୍ଷତି ହୁଏ । ଅଭିଯୋଗ ଅଧିକ ହୋଇଗଲେ ତାହାର ପ୍ରଭାବ ମନ ବାଟ ଦେଇ ଶରୀର ଉପରେ ପଡ଼େ ଏବଂ ଶରୀର କ୍ଳାନ୍ତ ହୁଏ, ଅବସାଦଗ୍ରସ୍ତ ହୁଏ ତଥା ଅସୁସ୍ଥ ହୁଏ ।

ଶାନ୍ତି ନଥାଏ ବାହାରେ, ଥାଏ ଭିତରେ । ନିଜେ ସେଥିନିମନ୍ତେ ନିଜକୁ ପ୍ରସ୍ତୁତ କରିବାକୁ ପଡ଼େ । ସେହି କଳାକୌଶଳ ଜାଣିବା ଦରକାର । ଯାହାକୁ ବଞ୍ଚିବାର କଳାର ଅନ୍ତର୍ଭୁକ୍ତ ବୋଲି କୁହାଯାଇପାରେ । ଧନଜନଗୋପଲକ୍ଷ୍ମୀ ଦରକାର, ମାତ୍ର ସେମାନଙ୍କୁ ଜୀବନର ଲକ୍ଷ୍ୟ ଭାବରେ ନ ନେଇ ଉପଲକ୍ଷ୍ୟ ଭାବରେନେବା ଦରକାର । ସେମାନଙ୍କୁ ଜୀବନରେ ଛାତ ବୋଲି ନ ଭାବି ସିଡ଼ି ବୋଲି ଭାବିବା ଦରକାର । ତାହାଲେ ସେମାନେ ଶାନ୍ତି ପାଇଁ ସହାୟତା କରିବେ । ଧନ ଆମର ଦରକାର ମାତ୍ର ଜୀବନର ଲକ୍ଷ୍ୟ ହେଉଛି ଧନ ଅର୍ଜନ ବୋଲି ଭାବିଲେ କଥାଟି ଗୋଳମାଳ ଧରିଯାଏ । ଖାଦ୍ୟ ଆମର ଦରକାର ମାତ୍ର ଯଦି ଜଣେ ଭାବେ ଯେ ଭଲମନ୍ଦ ଖାଇବା ହିଁ ଜୀବନର ଲକ୍ଷ୍ୟ, ତାହାଲେ କଥାଟି ଗୋଳମାଳ ଧରିଯାଏ ।

ଅତଏବ ମାନସିକ ଶାନ୍ତି ପାଇବାପାଇଁ ଜୀବନର କର୍ମ ବ୍ୟସ୍ତତା ଭିତରୁ ଟିକିଏ ସମୟକାଢ଼ି ଜୀବନ ସଂପର୍କରେ ଟିକିଏ ଭାବିବା ଦରକାର । ଜୀବନକୁ ବୁଝିବାପାଇଁ ଟିକିଏ ପ୍ରୟାସ ଲୋଡ଼ା । ଶାନ୍ତି ପାଇଁ ଦରକାର ପଡିଲେ ସଂଗ୍ରାମ କରାଯାଇପାରେ, ତାହା ଅଭିନନ୍ଦନୀୟ ମାତ୍ର ସଂଗ୍ରାମ ପାଇଁ ସଂଗ୍ରାମ ହେଉଛି ନକାରାତ୍ମକ ସଂଗ୍ରାମ । ଶେଷରେ ଏତିକି କୁହାଯାଇପାରେ ଯେ ଅଳ୍ପ ସମୟ ପାଇଁ ହେଉ ପଛକେ ଜୀବନରେ ଟିକିଏ ଜୀବନଚିନ୍ତା ଦରକାର । ସେ ଧନୀ ହେଉ ଅଥବା ଗରିବ ହେଉ, ତଥାକଥିତ ପାଠୁଆ ହେଉ ଅବା ଅପାଠୁଆ ହେଉ ଟିକିଏ ଜୀବନ ଚିନ୍ତା ସମସ୍ତଙ୍କ ପାଇଁ ଏକାନ୍ତ ଦରକାର ।

□□

## ଡକ୍ଟର ଶରତ ଚନ୍ଦ୍ର ରଥଙ୍କ ଅନ୍ୟାନ୍ୟ ପ୍ରକାଶିତ ଓ ସଂକଳିତ ପୁସ୍ତକ :

### ପ୍ରବନ୍ଧ ଓ ସମାଲୋଚନା :

୧. ରାଜକବି ଧନଞ୍ଜୟ ଭଞ୍ଜଙ୍କ କୃତି ଓ କୃତିତ୍ୱ
୨. ସମୀକ୍ଷା ସୌରଭ
୩. ସାହିତ୍ୟ ଚିନ୍ତନ
୪. ସମୀକ୍ଷା ସ୍ତବକ
୫. ଆମ ସଂସ୍କୃତି : ଆମ ଜୀବନ
୬. ସମୀକ୍ଷା ପ୍ରବାହ
୭. ପ୍ରବନ୍ଧ ଓ ପ୍ରାବନ୍ଧିକ
୮. ସାମାନ୍ୟ ସୂଚନା
୯. ଆମସଂସ୍କୃତି ଓ ଅନ୍ୟାନ୍ୟ ପ୍ରବନ୍ଧ
୧୦. ବଞ୍ଚିବାର କଳା

### ଗୀତିକବିତା ଓ କବିତା:

୧. ଧୂପବାସ
୨. ନବଚେତନା
୩. ମାଟିମହକ
୪. ଆରାଧନା
୫. ପ୍ରତିଧ୍ୱନି
୬. କାଲି ସକାଳର ସୂର୍ଯ୍ୟ
୭. ବନମାଳା
୮. ଭକ୍ତିଶତକ
୯. ତୁମେ ଓ ମୁଁ

### ସଂକଳନ :

୧. ସାହିତ୍ୟ ସଂପଦ
୨. ସେମାନଙ୍କ ଆତ୍ମଲିପି
୩. ମାତୃକଥାମୃତ
୪. ଶ୍ରୀଅରବିନ୍ଦଙ୍କ ସାବିତ୍ରୀ ଉପାଖ୍ୟାନ
୫. ସର୍ବାଙ୍ଗୀନ ଶିକ୍ଷା ଓ ଜୀବନ
୬. ଅନୁବାଦର ବର୍ଣ୍ଣବିଭା



# ଡକ୍ଟର ଶରତ ଚନ୍ଦ୍ର ରଥ

ଜନ୍ମସ୍ଥାନ : ସାକ୍ଷୀଗୋପାଳ ନିକଟସ୍ଥ ବୀରରାମଚନ୍ଦ୍ରପୁର ଶାସନ ।

ପିତାଙ୍କ ନାମ : ଶ୍ରୀ ନୀଳାଦ୍ରି ବିହାରୀ ରଥ ।

ମାତାଙ୍କ ନାମ : ଶ୍ରୀମତୀ ମନୋରମା ରଥ ।

ଶିକ୍ଷା : ଏମ୍.ଏ., ଏମ୍.ଫିଲ୍, ପିଏଚ୍.ଡି ।
୧୯୭୭ ମସିହାରେ ଓଡ଼ିଆ ଏମ୍.ଏ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମସ୍ଥାନ ଅଧିକାର କରି ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ ଓ ଭକ୍ତକବି ମଧୁସୂଦନ ରାଓ ସ୍ୱର୍ଣ୍ଣପଦକ ଲାଭ ।

ବୃତ୍ତି : ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାରର ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରଫେସର ପଦରୁ ସେବାନିବୃତ୍ତ ହୋଇ ଅବିରତ ସାହିତ୍ୟ ସାଧନାରେ ମଗ୍ନ ।


ISBN 978-81-944198-5-3

**ଜୀବନର ମୂଲ୍ୟ ଓ ମୂଲ୍ୟବୋଧ**

ଡକ୍ଟର ଶରତ ଚନ୍ଦ୍ର ରଥ


KAVYALOKA
Nizigarh Kurukhi, Harirajpur
Jatni, Puri-752050

₹ ୨୫୦/-